# ଶିଶୁପାଳ ବଧ


ସ୍ୱର୍ଣ୍ଣପୁରାଧୀଶ୍ୱର
ମହାରାଜା ଶ୍ରୀ ସାର୍ ଶ୍ରୀ ବୀରମିତ୍ରୋଦୟ ସିଂହ ଦେବ
ଧର୍ମନିଧି ଜ୍ଞାନଗୁଣାକର କେ, ସି, ଆଇ, ଇ,
ଏମ୍, ଆର, ଏ, ଏସ୍, ରୁଲିଂ ଚୀଫ୍,
ସୋନପୁର ଷ୍ଟେଟ୍, ସମ୍ବଲପୁର
ଓଡ଼ିଶାଙ୍କ ଦ୍ୱାରା ଅନୁବାଦିତ
ଓ ପ୍ରକାଶିତ





ଶକାବ୍ଦ ୧୮୪୯
ବିକ୍ରମାବ୍ଦ ୧୯୮୪
ସନ ୧୩୩୫









ମୂଲ୍ୟ ଟ ୧୫ ମାତ୍ର

# ଭୂମିକା

ଏହି ଭାରତବର୍ଷରେ ମହାକବିପ୍ରଣୀତ ହରିବିଜୟ ପ୍ରଭୃତି ଶତ ଶତ କାବ୍ୟ ଥିଲେ ମଧ୍ୟ କାଳିଦାସପ୍ରଣୀତ କାବ୍ୟତ୍ରୟ ଲଘୁତ୍ରୟୀ ନାମରେ ଓ କିରାତାର୍ଜୁନୀୟ ଶିଶୁପାଳବଧ ନୈଷଧୀୟଚରିତ କାବ୍ୟତ୍ରୟ ବୃହତ୍ତ୍ରୟୀ ନାମରେ ପ୍ରସିଦ୍ଧ । ଉକ୍ତ ବୃହତ୍ତ୍ରୟୀ ମଧ୍ୟରେ ଶିଶୁପାଳବଧ ସର୍ବଶ୍ରେଷ୍ଠ ବୋଲି କଥିତ ଅଛି ।

ସେହି ମହାକାବ୍ୟ ପ୍ରଣେତା ଦତ୍ତକଙ୍କର ପୁତ୍ର ମହାକବି ମାଘ-ନାମରେ ଖ୍ୟାତ । ଉପର୍ଯ୍ୟୁକ୍ତ ମହାକବି କେଉଁ ସମୟରେ କେଉଁ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ, ତାହା ନିର୍ଣ୍ଣୟ କରିବା ସହଜସାଧ୍ୟ ନୁହେ, ତଥାପି ଅନେକ ଗ୍ରନ୍ଥ ଅବଲୋକନ କରି ଅନେକଙ୍କ ମତ ସଂଗ୍ରହ କରି ଏକପ୍ରକାର ସିଦ୍ଧାନ୍ତ ପଥରେ ଦଣ୍ଡାୟମାନ ହୋଇଅଛୁଁ ।

ମହାକବି ମାଘ ମାଳବଦେଶୀୟ ଧାରାନଗରୀର ରାଜା ଶ୍ରୀଭୋଜଙ୍କ ସମସାମୟିକ ଥିବାର ଅନୁମିତ ହୁଏ । କାରଣ ବଲ୍ଲାଳ ପଣ୍ଡିତଙ୍କ ସଙ୍କଳିତ ଭୋଜ ପ୍ରବନ୍ଧରେ ଲିଖିତ ଅଛି ଯେ କୌଣସି ସମୟରେ ମହାକବି ମାଘ ଦୁର୍ଭିକ୍ଷ-ପ୍ରପୀଡ଼ିତ ହୋଇ ଧାରାନଗରୀକୁ ଆସି ନଗରୀର ବହିର୍ଭାଗରେ ଅବସ୍ଥାନ କରି ନିଜ ପତ୍ନୀଙ୍କ ହସ୍ତରେ ଶିଶୁପାଳବଧ କାବ୍ୟରୁ ଗୋଟିଏ ଶ୍ଳୋକ ଦେଇ ରାଜାଙ୍କ ନିକଟକୁ ପଠାଇଲେ । ମାଘପତ୍ନୀ ଦ୍ୱାରପାଳକୁ କହିବାରୁ ଦ୍ୱାରପାଳ ରାଜାଙ୍କ ନିକଟରେ ନିବେଦନ କଲା । ଗୁର୍ଜର ଦେଶରୁ ମାଘନାମକ ପଣ୍ଡିତ ଏ ନଗରୀକୁ ଆସି ତାଙ୍କ ପତ୍ନୀଙ୍କି ରାଜସମୀପକୁ ପଠାଇ ଅଛନ୍ତି, ସେ ସିଂହଦ୍ୱାରରେ ଉପସ୍ଥିତ ଅଛନ୍ତି ।

ରାଜା ଶ୍ରବଣ କରି ନିକଟକୁ ଆଣ ବୋଲି ଆଦେଶ କରିବାରୁ ଦ୍ୱାର-ପାଳ ମାଘପତ୍ନୀଙ୍କି ସଙ୍ଗରେ ନେଇ ରାଜାଙ୍କ ନିକଟରେ ସାକ୍ଷାତ୍ କରାଇଲା ମାଘପତ୍ନୀ ସାକ୍ଷାତ୍ କରି ରାଜାଙ୍କ ହସ୍ତରେ ପତ୍ର ଦେବାରୁ ରାଜା ପାଠକଲେ :—

"କୁମୁଦବନମପଶ୍ରି ଶ୍ରୀମଦମ୍ଭୋଜଖଣ୍ଡଂ,
ତ୍ୟଜତି ମୁଦମୁଲୂକଃ ପ୍ରୀତିମାଂଶ୍ଚକ୍ରବାକଃ,
ଉଦୟମହିମରଶ୍ମିର୍ଯାତି ଶୀତାଂଶୁରସ୍ତଂ,
ହତବିଧିଲସିତାନାଂ, ହୀ ବିଚିତ୍ରୋ ବିପାକଃ" ॥
( ଶିଶୁପାଳ ବଧ ୧୧ ଅ: ୬୪ ଶ୍ଳୋ: )

ରାଜା ପ୍ରଭାତ ବର୍ଣ୍ଣନର ଅଦ୍ଭୁତ ଶ୍ଳୋକ ପାଠକରି ମାଘପତ୍ନୀଙ୍କି ତିନିଲକ୍ଷ ମୁଦ୍ରା ଦେଇ କହିଲେ, ମାତଃ ! ଏହା ମୁଁ ଭୋଜନାଦି ଚଳାଇବା ପାଇଁ ପ୍ରଦାନ କରଅଛୁ । ପ୍ରଭାତରେ ପଣ୍ଡିତଙ୍କୁ ନମସ୍କାର କରିବାକୁ ଯିବି ।

ତାହା ଶୁଣି ମାଘପତ୍ନୀ ମୁଦ୍ରା ଗ୍ରହଣ କରି ମାର୍ଗରେ ଯାଚକମାନଙ୍କ ମୁଖରୁ ସ୍ୱସ୍ୱାମିଙ୍କ ଶାରଦଚନ୍ଦ୍ର କିରଣ ଗୌରଗୁଣ ଶ୍ରବଣ କରି ସେମାନଙ୍କୁ ଅର୍ଥଦାନ କରି କରି ଶେଷରେ ଶୂନ୍ୟହସ୍ତରେ ସ୍ୱାମିଙ୍କ ନିକଟରେ ପ୍ରବେଶ କରି ସ୍ୱାମିଙ୍କି ସମସ୍ତ ବିବରଣ କହିବାରୁ ସାଧୁକାର୍ଯ୍ୟ ସମ୍ପାଦନ କରିଅଛ, କିନ୍ତୁ ଅନ୍ୟ ଭିକ୍ଷୁକମାନେ ଆସୁଅଛନ୍ତି, ଏମାନଙ୍କୁ କଣ ଦେବା ବୋଲି ସ୍ୱାମୀ କହିଲେ । ଜଣେ ଭିକ୍ଷୁକ ମାଘ ପଣ୍ଡିତଙ୍କୁ ବସ୍ତ୍ରାବଶେଷମାନ ଦେଖି କହିଲା :—

"ଅଶ୍ୱାସ୍ୟ ପର୍ବତକୁଳଂ ତପନୋଷ୍ଣତପ୍ତ—
ମୁଦ୍ଦାମଦାବବିଧୁରାଣି ଚ କାନନାନି,
ନାନା ନଦୀନଦଶତାନି ଚ ପୂରୟିତ୍ୱା,
ରିକ୍ତୋଽସି ଯଜ୍ଜଲଦ ସୈବ ତବୋତ୍ତମା ଶ୍ରୀଃ" ।

ଭିକ୍ଷୁକ କଥନାନନ୍ତର ମାଘପତ୍ନୀ କହିଲେ :—

"ଅର୍ଥା ନ ସନ୍ତି ନ ଚ ମୁଞ୍ଚତି ମାଂ ଦୁରାଶା,
ତ୍ୟାଗାନ୍ନ ସଙ୍କୁଚତି ଦୁର୍ଲଳିତଂ ମନୋ ମେ,
ଯାଚ୍ଞା ଚ ଲାଘବକରୀ ସ୍ୱବଧେ ଚ ପାପଂ,
ପ୍ରାଣାଃ ସ୍ୱୟଂ ବ୍ରଜତ କିଂ ନୁ ବିଲମ୍ବିତେନ" ।

ତହିଁ ପରେ ମାଘପଣ୍ଡିତ କହିଲେ ଦେବି ! ମୋ ମନରେ ଅର୍ଥହୀନତାର କଷ୍ଟ ଆଦୌ ନାହିଁ, କିନ୍ତୁ ଯାଚକନୈରାଶ୍ୟ ମୋ ମନରେ ପୀଡା ଦେଉଅଛି,-

'ଦାରିଦ୍ର୍ୟାନଳସନ୍ତାପଃ ଶାନ୍ତଃ ସନ୍ତୋଷବାରିଣା,
ଯାଚକାଶାବିଘାତାନ୍ତର୍ଦାହଃ କେନୋପଶାମ୍ୟତି ।'

ତଥାପି—"ନ ଭିକ୍ଷା ଦୁର୍ଭିକ୍ଷେ ପତତି ଦୁରବସ୍ଥାଃ କଥମୃଣଂ,
ଲଭନ୍ତେ କର୍ମାଣି ଦ୍ୱିଜପରିବୃଢ଼ାନ୍ କାରୟତି କଃ,
ଅଦତ୍ତ୍ୱୈବ ଗ୍ରାସଂ ଗ୍ରହପତିରସାବସ୍ତମୟତେ,
କ୍ୱ ଯାମଃ କିଂ କୁର୍ମୋ ଗୃହିଣି ! ଗହନୋ ଜୀବନବିଧିଃ" ।

ମାଘପଣ୍ଡିତଙ୍କର ଏପରି ଅବସ୍ଥା ଦେଖି ଯାଚକମାନେ ନିଜେ ନିଜେ ଗନ୍ତବ୍ୟ ସ୍ଥାନକୁ ଚାଲିଗଲେ । ଯାଚକମାନେ ଗଲାପରେ ମାଘପଣ୍ଡିତ ଦୁଃଖିତ ହୋଇ କହିଲେ,—

"ବ୍ରଜତ ବ୍ରଜତ ପ୍ରାଣା ଅର୍ଥିନି ବ୍ୟର୍ଥତାଂ ଗତେ,
ପଶ୍ଚାଦପିହି ଗନ୍ତବ୍ୟଂ କ୍ୱ ସାର୍ଥଃ ପୁନରୀଦୃଶଃ" ॥

ତତ୍ପରେ ସ୍ୱାମୀ ପରଲୋକ ପ୍ରାପ୍ତ ହେବାରୁ ମାଘପତ୍ନୀ କ୍ରନ୍ଦନ କରି କହିଲେ :—

"ସେବନ୍ତେସ୍ମ ଗୃହଂ ଯସ୍ୟ ଦାସବଦ୍ଭୂଭୁଜଃ ପୁରା,
ହ୍ୱାଦ୍ୟ ଭାର୍ଯ୍ୟାସହାୟୋଽୟଂ ମୃତୋ ବୈ ମାଘପଣ୍ଡିତଃ" ।

ତହିଁପରେ ରାଜା ମାଘପଣ୍ଡିତଙ୍କ ପରଲୋକ ବୃତ୍ତାନ୍ତ ଶ୍ରବଣ କରି ଶତ ବ୍ରାହ୍ମଣଙ୍କଦ୍ୱାରା ପରିବୃତ ହୋଇ ନିଜେ ମୌନୀ ହୋଇ ପାଦଗମନରେ ମାଘପଣ୍ଡିତଙ୍କ ଉପରତ ସ୍ଥାନରେ ପ୍ରବିଷ୍ଟ ହେଲେ ।

ତତ୍ପରେ ମାଘପତ୍ନୀ ରାଜାଙ୍କୁ ଦେଖି କହିଲେ ହେ ରାଜନ୍ ! ପଣ୍ଡିତେ ଆପଣଙ୍କ ଦେଶକୁ ଅସିଲେ ତ ଘରକୁ ଅସିଲେ, ଆପଣ ତାଙ୍କର କାର୍ଯ୍ୟ ସମ୍ପାଦନ କରନ୍ତୁ । ରାଜା ଶୁଣି ମାଘପଣ୍ଡିତଙ୍କ ଗତାସୁ ଶରୀର ନର୍ମଦା ତୀରକୁ ନେଲେ, ମାଘପତ୍ନୀ ମଧ୍ୟ ସ୍ୱାମିସଙ୍ଗେ ବହ୍ନି ପ୍ରବେଶ କଲେ । ରାଜା ମଧ୍ୟ ମାଘଙ୍କ ଉତ୍ତରକ୍ରିୟା ପୁତ୍ରପରି ସମ୍ପାଦନ କଲେ । ତହିଁପରେ ରାଜା ଶୋକାକୁଳିତ ହୋଇ କୃଶତାରେ ପ୍ରତିପଚ୍ଚନ୍ଦ୍ରାକୃତି ଧାରଣ କଲେ ।

୧୩୬୧ ସାଲରେ ଜୈନମେରୁ ତୁଙ୍ଗାଚାର୍ଯ୍ୟଙ୍କଦ୍ୱାରା ପ୍ରଣୀତ ପ୍ରବନ୍ଧ ଚିନ୍ତାମଣିରେ ଉଲ୍ଲିଖିତ ଅଛି ଯେ—ଶ୍ରୀଭୋଜ ମାଘପଣ୍ଡିତଙ୍କ ବଦ୍‌ବସ୍ୱ ଓ ପୁଣ୍ୟବତ୍ତା ସର୍ବଦା ଶ୍ରବଣ କରି ତାଙ୍କୁ ଦେଖିବା ଇଚ୍ଛାରେ ଶ୍ରୀମାଲନାମକ ମାଘ-ପଣ୍ଡିତଙ୍କ ନିବାସ ଗ୍ରାମକୁ ଲୋକ ପଠାଇ ତାଙ୍କୁ ହିମଋତୁରେ ନିଜ ରାଜଧାନୀକି ସମ୍ମାନପୂର୍ବକ ଅଣାଇ ବହୁସମାଦରପୂର୍ବକ ନିଜ ପଲ୍ୟଙ୍କ ସମୀପେ ମାଘଙ୍କ ପଲ୍ୟଙ୍କ ସନ୍ନିବେଶ କରାଇ କାବ୍ୟାଳାପରେ ଅତି ଆନନ୍ଦରେ କିଛିଦିନ ଅତି-ବାହିତ ପରେ ମାଘ ସ୍ୱସ୍ଥାନକୁ ଫେରିଲେ ।

ଏକଦା ଶରଦୃତୁରେ ଶ୍ରୀଭୋଜ ମାଘଙ୍କ ବିଭୂତି ଅବଲୋକନ କରିବା ଇଚ୍ଛାରେ ସ୍ୱସୈନ୍ୟ ଓ ପାରିଷଦ ପରିବେଷ୍ଟିତ ହୋଇ ଅକସ୍ମାତ୍ ଶ୍ରୀମାଲରେ ଉପସ୍ଥିତ ହେଲେ । ମାଘପଣ୍ଡିତ ସମ୍ବାଦ ପାଇ ଶ୍ରୀଭୋଜଙ୍କୁ ନିଜ

ହର୍ମ୍ୟରେ ଓ ପାରିଷଦ, ସୈନ୍ୟଗଣଙ୍କୁ ନିଜଭବନାନ୍ତର୍ଗୃହରେ ଯଥାଯୋଗ୍ୟ ସ୍ଥାନରେ ପାନାହାରରେ ସମ୍ମାନ କରି ରଖାଇଲେ । ଶ୍ରୀଭୋଜ ରାଜୋଚିତ ସମାଦର ପ୍ରାପ୍ତହୋଇ କତିପୟଦିନ ଅବସ୍ଥାନ କରି ମାଘଙ୍କ ମୁଖରୁ କାବ୍ୟଶ୍ରବଣରେ ଅତ୍ୟାନନ୍ଦିତ ହୋଇ ମାଘଙ୍କ ରାଜଯୋଗ୍ୟ ବସ୍ତୁଭବ ସନ୍ଦର୍ଶନ କରି ଅଛନ୍ତି ରାଜା ମାଘ ବୋଲି କହି ପରମାନନ୍ଦରେ ମାଳବ ମଣ୍ଡଳକୁ ପ୍ରସ୍ଥାନ କଲେ ।

* * * * * * * * * * * * *

ମାଘପଣ୍ଡିତଙ୍କ ପରଲୋକ ପରେ ରାଜା ଶ୍ରୀଭୋଜ ନିତାନ୍ତ ଦୁଃଖିତ ହୋଇ ଶ୍ରୀମାଳ ଗ୍ରାମକୁ ଯାଇ ମାଘଙ୍କ ଜ୍ଞାତିମାନଙ୍କୁ ଡକାଇ କହିଲେ, ମାଘ-ପଣ୍ଡିତଙ୍କ ବିନା ଏହି "ଶ୍ରୀମାଳ" ଗ୍ରାମ ଆଜିଠାରୁ "ଭିଲ୍ଲମାଳ' ନାମରେ ଅଭିହିତ ହେଉ । ସେହି ଗ୍ରାମ ଭିଲ୍ଲମାଳ ନାମରେ ବହୁଦିନ କଥିତ ହୋଇ କାଳକ୍ରମରେ "ଭିନ୍ନମାଳ" ଆଖ୍ୟା ଧାରଣ କଲା ।

୧୮୨୭ ବିକ୍ରମାବ୍ଦରେ କାହାଦ୍ୱାରା ଲିଖିତ, ଶିଶୁପାଲବଧ କାବ୍ୟ ପୁସ୍ତକ ସୁରଟ ନଗରରେ ପ୍ରାପ୍ତ ହୋଇଥିଲା ଯେ "ଭିନ୍ନମାଳ ବାସ୍ତବ୍ୟ ଦତ୍ତକ-ସୁନୋର୍ମହାବୈୟାକରଣସ୍ୟ ମାଘସ୍ୟ କୃତ ଶିଶୁପାଳବଧ କାବ୍ୟଂ ଲିଖିତଂ ମୟା," ଏହିପରି ଶେଷରେ ଲେଖାଥିଲା । ବର୍ତ୍ତମାନ ସେ ଗ୍ରାମକୁ "ଭିନ୍‌ମାଲା" ବୋଲି କହୁଅଛନ୍ତି । ପ୍ରୋକ୍ତ ଗ୍ରାମ ଗୁଜରାଟ ଏବଂ ମାରବାଡ ଦେଶର ସୀମାରେ ଅବସ୍ଥିତ ବୋଲି ପ୍ରତ୍ନତତ୍ତ୍ୱବିତ୍‌ମାନେ ନିର୍ଦ୍ଦେଶ କରିଅଛନ୍ତି ।

୧୩୩୪ ବିକ୍ରମାବ୍ଦରେ ଶ୍ରୀ ପ୍ରଭାଚନ୍ଦ୍ରବିରଚିତ ପ୍ରଭାବକଚରିତର ଚତୁର୍ଦ୍ଦଶ ଶୃଙ୍ଗରେ ଲିଖିତ ଅଛି ।—

"ଶ୍ରୀସିଦ୍ଧର୍ଷି ପ୍ରଭୋଃ ପାନ୍ତୁ ବାଚଃ ଧର୍ମପଟେଲିମାଃ,
ଅନାଦ୍ୟବିଦ୍ୟାସଂସ୍କାର ଯଦୁପାସ୍ତେଭିଦେଲିମାଃ ।
ସୁପ୍ରଭଃ ପୂର୍ବଜୋ ଯସ୍ୟ ସୁପ୍ରଭଃ ପ୍ରତିଭାବତାମ୍,
ବନ୍ଧୁର୍ବନ୍ଧୁରଭାଗ୍ୟସ୍ୟ ଯସ୍ୟ ମାଘଃ କବୀଶ୍ୱରଃ" ।

* * * * *

ଅଜର୍ଜର ଶ୍ରିୟାଂଧାମ ବେଶ୍ମାଲକ୍ଷ୍ୟ ଜରଜ୍ଜରଃ,
ଅସ୍ତି ଗୁର୍ଜର ଦେଶୋଽନ୍ୟସଙ୍କରାଜନ୍ୟ ଦୁର୍ଜରଃ ।
ତସ୍ୟାଂ ଶ୍ରୀମାଲମିତ୍ୟସ୍ତି ପୁରଂ ମୁଖମିବ କ୍ଷିତେଃ,
ଚୈତ୍ୟୋପରିସ୍ଥ କୁମ୍ଭାଳି ର୍ଯତ୍ର ଚୂଡ଼ାମଣୀୟତେ ।

    

ନୃପଃ ଶ୍ରୀବର୍ମଲ୍ୱତାଖ୍ୟଃ ଶତ୍ରୁ ମର୍ମଭିଦ୍ୱାକ୍ଷମଃ ।
ତସ୍ୟ ସୁପ୍ରଭ ଦେବୋଽସ୍ତି ମନ୍ତ୍ରୀ ମିତଭାଷଃ କିଲ,
ତସ୍ୟ ପୁତ୍ରାବୁଭୌବଂଶାବିବ ବିଶ୍ୱମ୍ଭର କ୍ଷମୌ ।
ଅଦ୍ୟୋଦତ୍ତଃ ସ୍ମୃତେର୍ବ୍ୟକ୍ତେ ଦ୍ୱିତୀୟସ୍ତୁ ଶୁଭଙ୍କରଃ,
ଦତ୍ତବତ୍ତୋଽନୁଜୀବିଭ୍ୟୋ ଦତ୍ତକାତ୍ତ ସୁଧର୍ମଧୀଃ ।
ତସ୍ୟ ଶ୍ରୀଭୋଜଭୂପାଲୋ ବାଲମିତ୍ରଂ କବୀଶ୍ୱରଃ,
ଶ୍ରୀମାଘୋନନ୍ଦନୋ ବ୍ରାହ୍ମୀସ୍ୟନ୍ଦନଃ ଶୀଲଚନ୍ଦନଃ ।
ଐଦଂ ଯୁଗୀନଲୋକସ୍ୟ ସାରସାରସ୍ୱତାସ୍ମିତଂ,
ଶିଶୁପାଲବଧଂ କାବ୍ୟଂ ପ୍ରଶସ୍ତିର୍ଯସ୍ୟ ଶାଶ୍ୱତୀ ।
ଶ୍ରୀମାଘୋଽସ୍ତ୍ରାଘଧୀଃ ଶ୍ଳାଘ୍ୟଃ ପ୍ରଶଂସ୍ୟଃ କସ୍ୟ ନାଭବତ୍,
ଚିତ୍ରଜାଡ୍ୟହରା ଯସ୍ୟ କାବ୍ୟଗଙ୍ଗୋର୍ମିବିପ୍ରୁଷଃ ।

    

ରମ୍ୟାମୁପମିତଭବ ପ୍ରପଞ୍ଚାଖ୍ୟାଂ ମହାକଥାଂ,
ସୁବୋଧ କବିତାଂ ବଦ୍‌ବଦୁତ୍ତମାଙ୍ଗବଧୂନନାଂ ॥

ଏହି ଲେଖାରୁ ଓ କବିବଂଶବର୍ଣ୍ଣନରୁ ଜଣାଯାଏ ଯେ ଶ୍ରୀବର୍ମଲ-ରାଜାଙ୍କ ମନ୍ତ୍ରୀ ବା ସେନାପତି ସୁପ୍ରଭଦେବ ଥିଲେ, ଓ ତାଙ୍କ ପୁତ୍ର ଦତ୍ତକ-ନାମରେ ପ୍ରସିଦ୍ଧ ଥିଲେ । ଦତ୍ତକଙ୍କ ପୁତ୍ର ମାଘ ଶ୍ରୀଭୋଜ ରାଜାଙ୍କ ସମକାଳୀନ ଥିଲେ । ଏହି ପ୍ରବନ୍ଧ ସମୂହରୁ ଅନୁମିତ ହୁଏ ଯେ ଖ୍ରୀଷ୍ଟାବ୍ଦୀୟ ୧୧୦୦ ବର୍ଷରେ ମାଘକବି ଶ୍ରୀଭୋଜଙ୍କ ସମୟରେ ଥିଲେ । କେହି କେହି କହନ୍ତି ମାଘକବି ଖ୍ରୀଷ୍ଟାବ୍ଦୀୟ ୯୦୦ ବର୍ଷରୁ ଅର୍ବାଚୀନ ନୁହନ୍ତି । କାରଣ କାଶ୍ମୀର ଦେଶର ଶ୍ରୀ ଆନନ୍ଦବର୍ଦ୍ଧନାଚାର୍ଯ୍ୟ ଖ୍ରୀଷ୍ଟାବ୍ଦୀୟ ୯୦୦ ବର୍ଷରେ " ଧ୍ୱନ୍ୟାଲୋକର ଦ୍ୱିତୀୟ ଦ୍ୟୋତରେ " ତ୍ରାସାକୁଲଃ ପରିପତନ୍, ଅ: ୫୨୬ ଶ୍ଳୋ,: କାବ୍ୟ-ମାଳାର ୧୧୪ ପୃଷ୍ଠାରେ "ରମ୍ୟା" କାବ୍ୟମାଳାର ୧୧୫ ପୃଷ୍ଠାରେ ଶିଶୁପାଳବଧ କାବ୍ୟରୁ ଉଦ୍ଧାର କରି ଉଦାହରଣ ଦେଇ ଅଛନ୍ତି ।

ପୁଣି ଶିଶୁପାଳବଧ ୨ସ: ୧୧ ଶ୍ଳୋ: ରେ ମାଘକବି ନ୍ୟାସଗ୍ରନ୍ଥ ସ୍ମରଣ କରିଅଛନ୍ତି, ଏଥିରୁ ଅନୁମାନ କରାଯାଏ ଯେ ନ୍ୟାସ ପ୍ରଣେତା ଜିନେନ୍ଦ୍ର ବୁଦ୍ଧିପାଦାଚାର୍ଯ୍ୟଙ୍କ ପରେ ମାଘାବିର୍ଭାବ ।

ଶିଶୁପାଳବଧ କାବ୍ୟରେ—ଧର୍ମନାଭ, ଧର୍ମନାଥ, ଧର୍ମଲାଭ, ଚର୍ମଲାତ ଘର୍ମଲାତ, ଧର୍ମଦେବ, ବର୍ମଲାଖ୍ୟ, ବର୍ମଲାତ, ବର୍ମନାମ, କର୍ମଲାନ୍ତ, ଏହିପରି ନାନାବିଧ ପାଠ ଉପଲବ୍ଧ ହେବାରୁ ବର୍ମଲ ଟୀକାଙ୍କ ମଧ୍ୟ ନାମ କିବା ଜାଣି ଉଲ୍ଲେଖ କରିଥିବାର ଅନୁମିତ ହୁଏ । ଶିଶୁପାଳବଧ ଭିନ୍ନ କବିଙ୍କର ଅନ୍ୟ-କୌଣସି ଗ୍ରନ୍ଥ ଉପଲବ୍ଧ ହୋଇନାହିଁ । କିନ୍ତୁ ସୁଭାଷିତାବଳୀରେ ଲିଖିତ ହୋଇଥିବା ଶ୍ଳୋକଦୁଇଟି କ୍ଷେମେନ୍ଦ୍ରକବି ମାଘକୃତ ବୋଲି ସ୍ୱଗ୍ରନ୍ଥରେ କହି ଅଛନ୍ତି, ଅତଏବ ମାଘକବିଙ୍କର ଅନ୍ୟଗ୍ରନ୍ଥ ଥିବାର ଅନୁମିତ ହୁଏ ।

"ଶୀଳଂ ଶୈଲତଟାତ୍ ପତତ୍ୱଭିଜନଃ ।
* * *
* * *
* * * ।"

"ନାସ୍ତି କିତମ୍ଭଫଲକେ ପ୍ରତିବଧ୍ୟମାନା,
* * *
* * *
* * * ।"

ଇତ୍ୟାଦି । ବଲ୍ଲଭଦେବ ନିଜ ଔଚିତ୍ୟବିଚାରଚର୍ଚ୍ଚାରେ ସେଥିପାଇଁ ଲେଖି-ଅଛନ୍ତି ଯେ—

"ବୁଭୁକ୍ଷିତୈ ର୍ବ୍ୟାକରଣଂ ନ ଭୁଜ୍ୟତେ,
* * *
* * *
* * * ।" ଇତ୍ୟାଦି ।

କିନ୍ତୁ ଉପମିତିଭବ ପ୍ରପଞ୍ଚକଥାର ସମାପ୍ତିରେ ୯୬୨ ଖ୍ରୀଷ୍ଟଅବ୍ଦରେ ଏହି ଶିଶୁପାଳବଧ ଗ୍ରନ୍ଥ ରଚିତ ହୋଇଥିବାର ଉଲ୍ଲେଖ କରନ୍ତି । ଏହି ବିଷୟକୁ ଅବଲମ୍ବନ କରି ଜର୍ମଣୀ ଦେଶବାସୀ କ୍ଲାଟ୍ ପଣ୍ଡିତ Dr. F. Klatt, ନିର୍ଣ୍ଣୟ କରି ଅଛନ୍ତି ଯେ ମାଘକବି ଖ୍ରୀଷ୍ଟାବ୍ଦୀୟ ଦଶମ ଶତାବ୍ଦୀର ଲୋକ । ତଦ୍ଦେଶବାସୀ ଯାକୋବୀ ପଣ୍ଡିତ ମଧ୍ୟ କହି ଅଛନ୍ତି, Prof. Jacabi. "We therefore cannot Place Magha later than about the middle of sixth century." ଯେ ଖ୍ରୀଷ୍ଟାବ୍ଦୀୟ ୬୦୦ ବର୍ଷ ମଧ୍ୟରୁ ମାଘକବି ଅର୍ବାଚୀନ ନୁହନ୍ତି । ତାରାନାଥ ତର୍କ ବାଚସ୍ପତି ବାଚସ୍ପତ୍ୟ କୋଷରେ ମାଘପଦ ବ୍ୟାଖ୍ୟାନ କାଳରେ—

"ତାବଦ୍ଭା ଭାରବେର୍ଭାତି ଯାବନ୍ମାଘସ୍ୟ ନୋଦୟଃ" ବୋଲି ଯାହା ଉଦ୍ଭଟ କବିତାନ୍ତର୍ଗତରେ ପ୍ରମାଣ କରି ଅଛନ୍ତି । ତହିଁରେ କ୍ଲାଟପଣ୍ଡିତ ଏହି ଶ୍ଲୋକ କୌଣସି ଉଦ୍ଭଟ କବିତା ଗ୍ରନ୍ଥରେ ଉପଲବ୍ଧ ହୋଇନାହିଁ ବୋଲି ତାରାନାଥଙ୍କୁ ଆକ୍ଷେପ କରିଅଛନ୍ତି । କାଶ୍ମୀର ଦେଶବାସୀ ପ୍ରସିଦ୍ଧ ପଣ୍ଡିତ ଜୟାପୀଡଭଟ୍ଟ ମଧ୍ୟ ତାରାନାଥଙ୍କୁ ଆକ୍ଷେପରେ ତ୍ରୁଟି କରି ନାହାନ୍ତି ।

ଏହି ଶିଶୁପାଳବଧ କାବ୍ୟପୁସ୍ତକ ବହୁ ପରିଶ୍ରମରେ ରାଜଗୁରୁ ପର୍ବଣୀକର ଉପାଧ୍ୟାୟ ନାରାୟଣ ଭଟ୍ଟ ୧୨୯୯ ଖ୍ରୀଷ୍ଟଅବ୍ଦରେ ଲିଖିତ ହୋଇଥିବା ହସ୍ତଲେଖା ସଂଗ୍ରହ କରି ଗ୍ରନ୍ଥ ସମ୍ପୂର୍ଣ୍ଣ କରିଥିଲେ ।

ତାରାନାଥଙ୍କ ଭାରବିଙ୍କର, ମାଘୋଦୟ ପ୍ରଭୃତି ଦେଖିବାକୁ ଗଲେ ଭାରବିକବିଙ୍କ କିରାତାର୍ଜୁନୀୟ ଓ ମାଘକବିଙ୍କ ଶିଶୁପାଳବଧ ପ୍ରାୟ ଏକଧରଣର ଚତୁରତା କୁହାଯାଇ ପାରେ । କାରଣ ଭାରବିଙ୍କ କାବ୍ୟର ଆଦ୍ୟରେ ଶ୍ରୀ ଶବ୍ଦର ପ୍ରୟୋଗ, ସର୍ଗ ସମାପ୍ତିରେ ଲକ୍ଷ୍ମୀ ଶବ୍ଦର ପ୍ରୟୋଗ, ଶିଶୁପାଳ ବଧର ଆଦ୍ୟରେ ଶ୍ରୀ ଶବ୍ଦର ପ୍ରୟୋଗ ଓ ସର୍ଗ ସମାପ୍ତିରେ ମଧ୍ୟ ଶ୍ରୀ ଶବ୍ଦର ପ୍ରୟୋଗ । ଉଭୟ କାବ୍ୟ ଭାରତ ଚରିତ । କିନ୍ତୁ କେଉଁ କବି ପ୍ରାଚୀନ ଓ କିଏ ଅର୍ବାଚୀନ ତାହା ଏ ସ୍ଥଳର ସମାଲୋଚ୍ୟ ନୁହେ ।

ଏହି ସ୍ୱର୍ଣ୍ଣପୁରନଗରୀ ଅତି ପ୍ରାଚୀନ ଓ ଇତିହାସ ପୁରାଣାଦିରେ ପ୍ରସିଦ୍ଧ ଅଟେ । ପୂର୍ବକାଳରେ ମହାତ୍ମା ଜାମଦଗ୍ନ୍ୟ ପରଶୁରାମ ଯୁଦ୍ଧରୁ ବିରତ ହୋଇ ଶାନ୍ତଚିତ୍ତରେ ଏଠାରେ ଯଜ୍ଞ ଅନୁଷ୍ଠାନ କରିଥିଲେ । ଅଦ୍ୟାପି ସେହି ଯଜ୍ଞର ପବିତ୍ର କୁଣ୍ଡର ଗର୍ତ୍ତଚିହ୍ନ ବିଦ୍ୟମାନ ଅଛି । ତାଙ୍କର ଜନନୀ ରେଣୁକାଙ୍କ ପ୍ରତି ସେ ଯେଉଁ ଅତ୍ୟାଚାର କରିଥିଲେ ସେହି ଦେବୀ ରେଣୁକାଙ୍କର ସୁରେଶ୍ୱରୀ ନାମକ ପୀଠ ଅଦ୍ୟାପି ରହିଅଛି । ପରଶୁରାମ ନିଜର ବୀରତାବ୍ୟଞ୍ଜକରେଣୁ ଏଠାରେ ପ୍ରୋଥିତ କରି ନିଜର ବୀରଦର୍ପକୁ ସମାହିତ କରି ଅଛନ୍ତି । ଅଦ୍ୟାବଧି ସେହି ଗର୍ତ୍ତର ରେଣୁ ମନୁଷ୍ୟମାନେ ସ୍ପର୍ଶକଲେ ମୂର୍ଚ୍ଛିତ ହେଉଅଛନ୍ତି ।

ପୂର୍ବକାଳରେ ଗୋଶୃଙ୍ଗ ରାଜ୍ୟରୁ ଶ୍ରୀ ସୁବର୍ଣ୍ଣମେରୁ ଏହି ସ୍ଥାନକୁ ଆଗମନ କରିବା ସମୟରେ ଅଢ଼ାଇଦଣ୍ଡ ସ୍ୱର୍ଣ୍ଣବୃଷ୍ଟି ହୋଇଥିବାର ପ୍ରବାଦ ଅଛି । କିନ୍ତୁ ଲୋକମାନେ ଅଦ୍ୟାପି ତାହା ପ୍ରାପ୍ତ ହେଉଥିବାରୁ ପ୍ରବାଦ ନୁହେ ବୋଲି ଅନୁମିତ ହୁଏ । ସେହି ସୁବର୍ଣ୍ଣ ଟଙ୍କାସବୁ ତ୍ରିଶୂଳ ବୃଷ ଚିହ୍ନରେ ଚିହ୍ନିତ ଓ ଅର୍ଦ୍ଧମଶା ପରିମାଣ, ସମସ୍ତ ସମାନ ଅଟେ ।

କଳାପାହାଡ଼ର ଅତ୍ୟାଗ୍ରର ସମୟରେ ଶ୍ରୀ କ୍ଷେତ୍ରର ପଣ୍ଡାମାନେ ଭୀତ ହୋଇ ଶ୍ରୀଜଗନ୍ନାଥାଦି ଶ୍ରୀମୂର୍ତ୍ତିଚତୁଷ୍ଟୟଙ୍କୁ ଘେନିଆସି ଏହି ନଗରର ନିକଟସ୍ଥ କୁଠ-ସୋମଲଇନାମକ ସମୁନ୍ନତ ପର୍ବତର କୁଠରେ (କୁଠସ୍ଥ କନ୍ଦରରେ) ଲୁଚାଇ ରଖି ପରେ ଉପଦ୍ରବ ଶାନ୍ତ ହେଲା ଉତ୍ତାରୁ ଘେନି ଶ୍ରୀକ୍ଷେତ୍ରକୁ ଫେରି ଯାଇଥିଲେ । ପୁଣି ଅଳ୍ପଥରେ ମଧ୍ୟ ଅଣି * ତରଭାନାମକ ଗ୍ରାମରେ ଶ୍ରୀନୀଳାଦ୍ରି-ନାଥଙ୍କୁ ଲୁଚାଇ ରଖି ପରେ ଘେନିଗଲେ । ଅଦ୍ୟାପି ନାନାସ୍ଥାନର ଲୋକେ ଗୁଣ୍ଡିଚାଯାତ୍ରା ସମୟରେ ପୁରୀ ଯାଇ ନପାରିଲେ ଏହି ରାଜ୍ୟସ୍ଥ ତରଭାରେ ରଥ-ଦ୍ୱିତୀୟାରେ ଶ୍ରୀଜଗନ୍ନାଥଙ୍କୁ ରଥରେ ଦର୍ଶନ କରି ନିଜକୁ ପୁଣ୍ୟବାନ୍ ମନେ କରନ୍ତି । ଏ ଁ ସ୍ଥାନର ସମସ୍ତ ପ୍ରାଚୀନ ବିବରଣ ସ୍ୱର୍ଣ୍ଣପୁର ଗୁଣ୍ଡାଦର୍ଶନାମ-ପୁସ୍ତକରେ ସବିଶେଷ ବର୍ଣ୍ଣିତ ଅଛି ।

ନୀଳାଦ୍ରି ମହୋଦୟନାମକ ଅତିପ୍ରାଚୀନ ଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ ମାଳବ-ଅବନ୍ତୀ-ଉଜ୍ଜୟିନୀର ରାଜା ଇନ୍ଦ୍ରଦ୍ୟୁମ୍ନ ସସୈନ୍ୟ ଶ୍ରୀକ୍ଷେତ୍ର ଅଭି-ମୁଖରେ ଯାତ୍ରାକରି ଏହି ରାଜ୍ୟର ମଧ୍ୟ ଦେଇ ଗମନକରି ମହାନଦୀର ଉତ୍ତର ତୀରରେ ସ୍କନ୍ଧାବାର ସ୍ଥାପନକରି ସ୍ନାନଭୋଜନାଦି ସମାପନ ପରେ ନଦୀ ପାର ହୋଇ ଏହି ନଗରରେ ପୂର୍ବଦିଗସ୍ଥ ମହାନଦୀ ଓ ତେଲନଦୀର ସଙ୍ଗମିତ ପବିତ୍ରସ୍ଥାନରେ ପୁଣ୍ୟାଶ୍ରମରେ ଶ୍ରୀରାମେଶ୍ୱର ମହାଦେବଙ୍କ ମନ୍ଦିର ଦର୍ଶନ କରି ପ୍ରୋକ୍ତ ଆଶ୍ରମରେ ନିଜର ସ୍କନ୍ଧାବାର ଓ ଶିବିର ସଂସ୍ଥାପନ କରି ଆନନ୍ଦମନରେ ରାତ୍ରି ଯାପନପୂର୍ବକ ପ୍ରଭାତରେ ପୁଣି ଶ୍ରୀକ୍ଷେତ୍ର ଅଭିମୁଖରେ ପ୍ରସ୍ଥାନ କଲେ । ଯଥା—ନୀଳାଦ୍ରି ମହୋଦୟେ—

"ଅବନ୍ତୀନଗରଚ୍ଛୈନ୍ୟଷ୍ଟ ଚଗୃର ନୀଳଭୂଧରଂ,
ଉତ୍ତରଂ ତୀର ମାସାଦ୍ୟ ମହାନଦ୍ୟା ମନୋରମଂ,
ବିଶ୍ରାମ୍ୟ ଭୋଜନାଦ୍ୟାଂଶ୍ଚ ଚକ୍ରୁଃ ସର୍ବେ ମୁଦାନ୍ୱିତାଃ,
ତତୋ ମହାନଦୀଂ ତୀର୍ତ୍ତ୍ୱା ପୁଣ୍ୟାଶ୍ରମେ ପ୍ରବେଶିତାଃ ।"

* ❀ * ❀

"ପୁଣ୍ୟଂ ପର୍ବତମୋଧ୍ୱଂସି ସ୍ପୃଷ୍ଟମସ୍ତି ମହୀତଳେ,
ଏକସ୍ତୁ ସୁବର୍ଣ୍ଣାଖ୍ୟଃ ଶିବୋଽପ୍ୟସ୍ତି କ୍ଷିତୌମହାନ୍ ।"

ଆଉ ମଧ୍ୟ ନୀଳାଦ୍ରିମହୋଦୟର ଏକସ୍ଥାନରେ ଲିଖିତ ଅଛି ଯେ—

"ପଶ୍ଚିମସ୍ୟାଂ ଦିଶି ଶ୍ରେଷ୍ଠୋ ବନ୍ଧ୍ୟୋ ନାମ ଗିରିର୍ନୃପ ! ,

---

* ସୋନପୁରର ସବ୍‌ଡ଼ିଭିଜନ, ବାଣ୍ଟିଂସ୍ଥାନ ସ୍ଥଳ ।

ବର୍ତ୍ତତେ ଗୃହ ବୈ ବ୍ରହ୍ମା ବସ୍ତ୍ର ପାଦଦ୍ୱୟଂ ପୁରଃ,
ସ୍ଥାପୟିତ୍ୱାର୍ଣ୍ଣପୃଷ୍ଠସ୍ଥାପୂର୍ବତାଳି ର୍ଗତାପ୍ୟସୌ,
ମହାନଦୀତି ବିଖ୍ୟାତା ପୂର୍ବସାଗରଗାମିନୀ,
ବର୍ତ୍ତତେ ପୃଥିବୀନାଥ ! ଗଙ୍ଗେବ ମୁକ୍ତିଦାୟିନୀ,

* * * * *

ତସ୍ମାତ୍ ଶ୍ରୀୟତମାଭୁପ ! ନଦୀ ଚିତ୍ରୋତ୍ପଳାଭିଧା ॥

* * * * *

ତସ୍ୟାସ୍ତୀରେ ସ୍ଥିତା ପୁଣ୍ୟା ସୁବର୍ଣ୍ଣାଖ୍ୟାପୁରୀନୃପ !" ॥

ଏହିପରି ଅଗ୍ନି ପୁରାଣରେ ମଧ୍ୟ ବର୍ଣ୍ଣିତ ଅଛି ଯେ ;—

"ଉତ୍କଳେଷୁ ନଦ୍ୟଃ ପୁଣ୍ୟାଃ ପୁଣ୍ୟା ମାର୍କାରକେଶରୀ,
ସୁବର୍ଣ୍ଣାଖ୍ୟାପୁରୀ ପୁଣ୍ୟା ପୁଣ୍ୟା ଚିତ୍ରୋତ୍ପଳାନଦୀ" ॥

ବୀର ସର୍ବସ୍ୱନାମକ ଅତି ପ୍ରାଚୀନ ଗ୍ରନ୍ଥରେ ମଧ୍ୟ-ପାଣ୍ଡବ ଅର୍ଜୁନଙ୍କଠାରୁ ଏହି ଚୌହାନବଂଶର ଉତ୍ପତ୍ତି ବିଶେଷଭାବରେ ବର୍ଣ୍ଣିତ ଅଛି ।

ଇତିହାସ କହେ ଯେ ଏହା ଦକ୍ଷିଣ କୋଶଳର ରାଜଧାନୀ ଥିଲା । ମୌର୍ଯ୍ୟଅଧିକାରପରେ କଳିଙ୍ଗ ରାଜାମାନେ କୋଶଳର ଆଶ୍ରୟ ନେଇଥିଲେ । ଚୈତ୍ରବଂଶର ରାଜାମାନେ ସେହି କୋଶଳରୁ ଆସିଥିବାରୁ ଖାରବେଳ ପ୍ରଭୃତିଙ୍କ ମହାମେଘବାହନ ଉପାଧି ହୋଇଥିଲା । କୋଶଳର ରାଜଧାନୀ ପ୍ରଥମରେ ଓ୍ୱାଦାନଦୀକୂଳରେ ଥିଲା । ଦକ୍ଷିଣ କୋଶଳରେ ଗୁପ୍ତବଂଶନାମକ ରାଜା ଥିଲେ । ଉକ୍ତ ବଂଶର ରାଜା ଶିବଗୁପ୍ତଙ୍କ ପୁତ୍ର ଜନ୍ମେଜୟ ମହାଭବଗୁପ୍ତ ଉତ୍କଳ ଜୟ କରି ରାଜା ହେଲେ ଏବଂ ତ୍ରିକଳିଙ୍ଗାଧିପତି ବୋଲି ନିଜର ପରିଚୟ ଦେଲେ । ଏମାନେ ପ୍ରଥମରେ ଓ୍ୱାଦାନଦୀକୂଳରୁ ରାଜଧାନୀ ଘୁଞ୍ଚାଇ ଆଣି ଦୁର୍ବଳ ହେବାରୁ ସୋମବଂଶୀ କୋଶଳ ରାଜାମାନେ ଉତ୍କଳ ସିଂହାସନ ଅଧିକାର କଲେ । ସେମାନେ ପରାକ୍ରମୀ ଓ ଉତ୍କଳର ସ୍ୱାଧୀନ ରାଜା ହେବାରୁ ବୀରତ୍ୱସୂଚକ କେଶରୀ ନାମରେ ଅପଣା ବଂଶକୁ ପରିଚୟ କରାଇଲେ । କ୍ରମଶଃ କୋଶଳ ରାଜାମାନେ ନିଜ ରାଜଧାନୀକୁ ରତ୍ନପୁରରୁ ମହାନଦୀ କୂଳ ଶ୍ରୀପୁରକୁ ଘୁଞ୍ଚାଇ ଆଣିଲେ । ବହୁଦିନ ପରେ ମହାବୀର ଚୌହାନକୁଳତିଳକ ପୃଥ୍ୱୀରାଜ ଦିଲ୍ଲୀ ଆଜ୍ମୀର ସିଂହାସନାଧିକାରୀ ସପତ୍ନଦେଶ ଜୟ କରିବାରୁ ତାଙ୍କର

ବଂଶଧରମାନେ ଏହି ରାଜ୍ୟକୁ ଜୟ କରି ଶ୍ରୀପୁରରୁ ଏ ସ୍ଥାନକୁ * ରାଜଧାନୀ ଉଠାଇ ଆଣିଲେ । ଅଦ୍ୟାବଧି ଏହି ନଗରୀ ନିକଟରେ ଶ୍ରୀ କୋଶଳେଶ୍ୱରଙ୍କ ଅତି ପ୍ରାଚୀନ ଶିବମନ୍ଦିର ବିଦ୍ୟମାନ ଅଛି । ତତ୍କାଳରୁ ପ୍ରଶଂସିତ ପ୍ରତାପୀ ଭାରତେଶଙ୍କ ବଂଶଧରମାନଙ୍କ ମସ୍ତକ ଉପରେ ସ୍ୱର୍ଣ୍ଣପୁରର ଧବଳ ରାଜଛତ୍ର ପରିଶୋଭିତ ହୋଇ ଆସୁଅଛି । ସ୍ୱର୍ଣ୍ଣପୁରସ୍ଥ ଅଷ୍ଟଶମ୍ଭୁ ଓ ଅଷ୍ଟଚଣ୍ଡୀଙ୍କ କରୁଣାରୁ ଏହି ରାଜ-ବଂଶର ରାଜାମାନେ ସୁଚାରୁରୂପେ ରାଜ୍ୟ ପରିପାଳନ କରି ଆସୁଅଛନ୍ତି ।

ଆମ୍ଭେ ସର୍ବଦା ରାଜକାର୍ଯ୍ୟରେ ବ୍ୟସ୍ତ ଥିଲେ ସୁଦ୍ଧା ପଣ୍ଡିତମାନଙ୍କ ସଙ୍ଗେ ଅବସରକ୍ରମେ ସାହିତ୍ୟାଦିରେ ଆଳାପ କରି କାଳଯାପନ କରିଥାଉଁ । ସଂସ୍କୃତ ମୌଳିକବିଦ୍ୟା ହେତୁରୁ ଭାରତବାସୀ ହିନ୍ଦୁଙ୍କ ସ୍ନେହର ସମ୍ପଦ ଅଟେ । ଆମ୍ଭେ ମଧ୍ୟ ବାଲ୍ୟକାଳରେ ଯତ୍କିଞ୍ଚିତ୍ ସଂସ୍କୃତ ଅଧ୍ୟୟନ କରିଥିବାରୁ ସଂସ୍କୃତ ଚର୍ଚ୍ଚା ପଣ୍ଡିତମାନଙ୍କ ସହିତରେ ପ୍ରାୟ କରୁଁ । ଓଡ଼ିଆ ଭାଷାରେ କେତେ ଖଣ୍ଡ ପୁସ୍ତକ ରଚନା କରି ଓ କେତେଖଣ୍ଡ ସଂସ୍କୃତ ପୁସ୍ତକର ଅନୁବାଦ କରି ସୁଦ୍ଧା ତୃପ୍ତିଲାଭ କରିନପାରିବାରୁ ମହାକବି ମାଘ ପ୍ରଣୀତ ମହାକାବ୍ୟ ଶିଶୁପାଳ-ବଧର ଅନୁବାଦ କଲୁଁ ।

ଏହା ଗୋଟିଏ ଶ୍ଲୋକକୁ ଗୋଟିଏ ଭାଷା ପଦରେ ଅନୂଦିତ ହୋଇ-ଅଛି । ପ୍ରତ୍ୟେକ ସର୍ଗରେ ଭିନ୍ନ ଭିନ୍ନ ଛନ୍ଦ ଏବଂ ସର୍ଗାନ୍ତରରେ ଭିନ୍ନ ଭିନ୍ନ ଛନ୍ଦରେ ପଦ୍ୟ ସନ୍ନିବେଶିତ ହୋଇଅଛି । ଈଶ୍ୱରଙ୍କ ବ୍ୟତୀତ ନିର୍ଭୁଲ କେହି ନୁହନ୍ତି । ଏ ଅଂଶ ଭିନ୍ନ ଲୋକେ କହନ୍ତି "କାବ୍ୟେଷୁ ମାଘଃ", ମଲ୍ଲିନାଥଙ୍କ ଟୀକାରେ କୁତ୍ରଚିତ୍ ଲେଖାଅଛି ଯେ "ମାଘେ ମେଘେ ଗତଂ ବୟଃ" ଏହାର ତାତ୍ପର୍ଯ୍ୟ ସାହିତ୍ୟିକବର୍ଗଙ୍କୁ ଅବିଦିତ ନାହିଁ । ମହାକବି ମାଘଙ୍କ ବିଷୟରେ ଯେଉଁ ସ୍ଥାନରେ ଯାହା ଲବ୍ଧ ହୋଇଅଛୁଁ ତାହା ଅନୁସନ୍ଧାନ କରି ସନ୍ନିବେଶ କରିଅଛୁଁ । ଗୁଣଗ୍ରାହୀ ସହୃଦୟବର୍ଗ ଗୁଣଭାଗ ଗ୍ରହଣ କରିବେ ବୋଲି ସମ୍ପୂର୍ଣ୍ଣ ଆଶା କରାଯାଏ । ଇତି ।

ମହାରାଜ ଶ୍ରୀ ସାର୍ ଶ୍ରୀ ବୀରମିତ୍ରୋଦୟ ସିଂହ ଦେବ,
ସୋନପୁର ଷ୍ଟେଟ୍ ।

---

* Orissa in the making, Chohan rulers & Sonepur in the Sambalpur Tract ନାମକ ଇତିହାସରେ ଓ ସ୍ୱର୍ଣ୍ଣପୁର ଗୁଣାଦର୍ଶ ନାମକ ପୁସ୍ତକରେ ସୋନପୁରର ସବିଶେଷ ବିବରଣ ବର୍ଣ୍ଣିତ ଅଛି ।

# ବିଷୟାନୁକ୍ରମଣିକା



# ମଙ୍ଗଳାଚରଣ

ଇନ୍ଦୀବରଦଳଶ୍ୟାମମିନ୍ଦିରାନନ୍ଦକନ୍ଦଳମ୍,
ବନ୍ଦାରୁ ଜନମନ୍ଦାରଂ ବନ୍ଦେଽହଂ ଯଦୁନନ୍ଦନମ୍ । ୧ ।

ଦନ୍ତାଞ୍ଚଳେନ ଧରଣୀତଳମୁନ୍ନମଯ୍ୟ,
ପାତାଳକେଳିଷୁ ଧୃତାଦିବରାହଲୀଳମ୍,
ଉଲ୍ଲାଘନୋପଣ୍ଣଫଣାଧର ଗୀୟମାନ,—
କ୍ରୀଡ଼ାବଦାନମିଭବକ୍ତ୍ରମୁଖଂ ନମାମଃ । ୨ ।

ଶାରଦା ଶାରଦାମ୍ଭୋଜବଦନା ବଦନାମ୍ବୁଜେ,
ସର୍ବଦା ସର୍ବଦାସ୍ମାକଂ ସନ୍ନିଧିଂ ସନ୍ନିଧିଂ କ୍ରିୟାତ୍ । ୩ ।

ନେତାସ୍ମିନ୍ ଯଦୁନନ୍ଦନଃ ସ ଭଗବାନ୍ ବୀରଃ ପ୍ରଧାନୋରସଃ,
ଶୃଙ୍ଗାରାଦିଭିରଙ୍ଗବାନ୍ ବିଜୟତେ ପୂର୍ଣ୍ଣା ପୁନର୍ବର୍ଣ୍ଣନା,
ଇନ୍ଦ୍ରପ୍ରସ୍ଥ ଗମାଦ୍ୟୁପାୟବିଷୟଶ୍ଚୈଦ୍ୟାବସାଦଃ ଫଳଂ,
ଧନ୍ୟୋ ମାଘକବିର୍ବୟଂ ତୁ କୃତିନସ୍ତତ୍ସୂକ୍ତିସଂସେବନାତ୍ । ୪ ।

# ଉତ୍ସର୍ଗପତ୍ର



ଅନାଦିମାୟାର ଆଧାର, ସକଳ-ଭୁବନ-ସୃଷ୍ଟି-ପାଳନ-ସଂହାର-
ମହାନାଟକ-ସୂତ୍ରଧାର, ସର୍ବ ଅଦ୍ଭୁତର ନିଧାନ, ପୁରାଣ
ଐନ୍ଦ୍ରଜାଲିକ, ପୁରାଣପୁରୁଷ, ବିଶ୍ୱମ୍ଭରାଭାରୋଦ୍ଧାରଣାର୍ଥ
ଅବତାର-ଗ୍ରହଣକାରୀ, ମହାପ୍ରଳୟରେ ବଟପତ୍ରପୁଟ-
ଶାୟୀ, ଅଣୁରୁ ଅଣୀୟାନ୍ , ମହାନରୁ ମହୀୟାନ୍,
ମହାର୍ଣ୍ଣବମଧ୍ୟସ୍ଥ ଦ୍ୱାରକା—ନଗରୀବିହାରୀ,
ରୈବତକକ୍ରୀଡ଼ାଶୀଳ, ପାଣ୍ଡବପକ୍ଷସମ୍ପାଦକ,
କଂସ ଶିଶୁପାଳାଦି ଦୁର୍ଦ୍ଦାନ୍ତ-ଦମନଦକ୍ଷ,
ରୁକ୍ମିଣୀନାୟକଙ୍କ* ଶ୍ରୀ ଶ୍ରୀକୃଷ୍ଣଚନ୍ଦ୍ରଙ୍କ
ଜଗତ୍ପାବନୀ ସୁରସରିତ୍‌ସମ୍ଭୂତ
ଚରଣାମ୍ଭୋଜଦ୍ୱୟରେ ଏହି
‘ଶିଶୁପାଳବଧ’ ନାମକ
ମହାକାବ୍ୟ ଉତ୍ସୃଷ୍ଟ
ହେଲା ।

ମହାରାଜ ଶ୍ରୀ ସାର୍ ଶ୍ରୀ ବୀରମିତ୍ରୋଦୟ ସିଂହଦେବ,
ସୋନପୁର ଷ୍ଟେଟ୍ ।

* "ଦ୍ୱାପରାନ୍ତେ ଭବେତ୍ ସୀତା ରୁକ୍ମିଣୀ କୃଷ୍ଣବଲ୍ଲଭା" ଇତି ପ୍ରମାଣ ।

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଟାଇଟିଲ୍‌ପେଜ | ୬ | ଅନୁଧତ | ଅନୁଦ୍ଧତ |
| ଭୂମିକା ୪ | ୩-୪ | ଭିନ୍‌ମାଲ | ଭିଲ୍ଲମାଲ |
| „ ୪ | ୫ | ଭିନ୍‌ମାଲ | ଭିଲ୍ଲମାଲ |
| „ ୯ | ୨ | ଦ୍ବ | ଦ୍ବା |
| ୨୨ | ୮ | ଲଙ୍ଗନେ | ଲଂଘନେ |
| ୩୧ | ୬ | ଗମନ | ମଗନ |
| ୩୪ | ୯ | ସଯାବିକ | ସାଯାବିକ |
| ୫୬ | ୬ | ନମିଳତ | ନମୀଳତ |
| ୫୮ | ୯ | ଉଦୀରଣ | ଉଦ୍ଦୀରଣ |
| ୮୨ | ୧୩ | ଅଲକ୍ତବର୍ଗ | ଅଲକ୍ତକବର୍ଗ |
| ୯୯ | ୧୪ | ଚନ୍ଦକଳା | ଚନ୍ଦ୍ରକଳା |
| ୧୦୩ | ୨ | ପୁରସ୍କତ | ପୁରସ୍କୃତ |
| ୧୦୪ | ୫ | ହ୍ଵଏ | ହୁଏ |
| „ | ୧୬ | ସମସ୍ତ୍ରକ | ସମୁସ୍ତ୍ରକ |
| ୧୩୦ | ୫ | ମୂତ୍ତ | ମୂର୍ତ୍ତ |
| ୧୫୦ | ୬ | ଅଙ୍ଗନାସ୍ଙ୍ଗ | ଅଙ୍ଗନାସଙ୍ଗ |
| ୧୭୬ | ୮ | ଉଠସ୍ତ୍ରୀ | ଉଠସ୍ଵୀ |
| ୧୮୫ | ୭ | ମଳନତନ | ମଳନତମ |
| „ | ୧୧ | ବସି | ଅସି |
| ୧୮୬ | ୧୨ | ଭସ୍ନେ | ଭସ୍ମ |
| ୨୦୫ | ୭ | ସ୍ଥଳ | ସ୍ଥୂଳ |
| ୨୪୨ | ୫ | ଶଖର | ଶିଖର |
| ୨୪୭ | ୧ | ପଣଙ୍ଗିତ | ପିଙ୍ଗିତ |
| ୨୫୧ | ୯ | ଅମ୍ବକ | ଅମ୍ବଜ |

ଏତଦ୍ ବ୍ୟତୀତ କେତେକ ସ୍ଥାନରେ ମାତ୍ରା ଭାଙ୍ଗି ଯାଇଅଛି ।





# ଶିଶୁପାଳ ବଧ



## ପ୍ରଥମ ସର୍ଗ



ଜଗତନିବାସ      ବସୁଦେବ ସଦ୍ମେ
ଲୋକଯାଣେ ବାସ କର,
ନଭୁଁ ଅବତରୁ—      ଥିବା, ଋଷିଙ୍କୁ
ଦେଖିଲେ ଶ୍ରୀପତି ହରି । ୧ ।

ପ୍ରଭାକର ଗତି      ତଶ୍ଚୀନେ ଖ୍ୟାତ
ବହ୍ନି ଜ୍ୱାଳ ଉର୍ଦ୍ଧ୍ୱମୁଖେ—
ପ୍ରସାରି କିରଣ      ଅଧୋଗ କି ? ବୋଲି
ଜନେ ଦେଖନ୍ତି ଉନ୍ମୁଖେ । ୨ ।

ଅଦୌ ତେଜଃପୁଞ୍ଜ      ଅନ୍ତରୁ ଦେହୀ
ଅବୟବରୁ ପୁମାନ,
ବନିଷ୍ଟସ୍ଥ କଲେ      ଦେଖି, ହରି, କ୍ରମେ
ସବଧେ ନାରଦ ଜ୍ଞାନ । ୩ ।

ନବାମ୍ବୁଦ ଅଧଃ—      ପ୍ରଦେଶେ ମୁଣ୍ଡିତ
କର୍ପୂର ପାଣ୍ଡୁର ସମ,
ଉତ୍କ୍ଷିପ୍ତ ଗଜେନ୍ଦ୍ର—      ଅଜିନ ତଳରେ
ଭିନ୍ନଲଗ୍ନ ଗିରୋପମ ।   ।

କମଳ କଞ୍ଜଳୁ— ତ୍ରିଭିଧାରୀ ଜଟା
ଶରୀର ଶୁଭ୍ର ଧବଳ,
ହିମବାନ୍ ଶୃଙ୍ଗେ ପିଶଙ୍ଗ ବ୍ରତତି
ଉଠିଅଛି କି ସକଳ । ୫ ।

ମୁଞ୍ଜମେଖଳାରେ କୃଷ୍ଣ ଏଣାଜିନ
ବନ୍ଧି, ନିଜେ ଶୁଭ୍ରକାୟ,
ଅନ୍ତରୀୟବସ୍ତ୍ର* ସ୍ୱର୍ଣ୍ଣସୂତ୍ରେ ବନ୍ଧା
ହେଲୀ ଅନୁକାରୀ ପ୍ରାୟ । ୬ ।

ବୈନତେୟ ଲୋମ— ତୁଲ୍ୟ ଦୀର୍ଘ, ଅବା
ସ୍ୱର୍ଣ୍ଣଭୂମିଜାତ ଲତା,
ଶୁଭ୍ରେ ଯଜ୍ଞସୂତ୍ରେ, ଶାରଦ ତଡିତ-
ସମ ଶୋଭା ବହୁଳତା । ୭ ।

ନିସର୍ଗ ରଚିତ ସୂକ୍ଷ୍ମ ଲୋମ, ଦେହ-
ବସଚ୍ଛେଦ ସମୋଜ୍ଜ୍ୱଳ,
ମୃଗାଜିନଶୋଭୀ— କୁଥଧାରୀ କବା
ଅଇରାବତ ଧବଳ । ୮ ।

ଅଜସ୍ର ବଲ୍ଲକୀ— ବାଦନେ ଅଙ୍ଗୁଷ୍ଠ-
ନଖକ୍ଷତର କାରଣ,
ବିଦ୍ରୁମମିଶ୍ରିତ ସ୍ଫଟିକ ଧବଳ
ବର୍ଣ୍ଣ କରେ ବିକୀରଣ । ୯ ।

ଅନିଳ ତାଡିତ— ତନ୍ତ୍ରୀ ବଧ୍ୱନିତ
ଭିନ୍ନ ଭିନ୍ନ ଶ୍ରୁତିସ୍ୱର,
ଗ୍ରାମ ମୂର୍ଚ୍ଛନାର ପ୍ରକାଶ, ମହତା
ସମାଲୋକନେ ତତ୍ପର । ୧୦ ।

---

* ଅନ୍ତରୀୟ ବସ୍ତ୍ର – ଅଧରାମ୍ବର ।

ଅତୀନ୍ଦ୍ରିୟଜ୍ଞାନୀ          ଅନୁଗମୁନିଙ୍କୁ
    ନିବର୍ତ୍ତାଇ ତୋଷମନେ
ପ୍ରବେଶିଲେ ଯାଇ          ଇନ୍ଦ୍ରାଳୟ ଗୃହ
    କୃଷ୍ଣଙ୍କ ରମ୍ୟଭବନେ । ୧୧ ।

ଦ୍ୟୁତ ସୂର୍ଯ୍ୟୋପମ—          ମୁନି, ଭୂମି ସ୍ପର୍ଶ
    କରିବା ପୂର୍ବରୁ ଅଗ୍ରେ,
ଭୂଧରୁ ବାରିନ୍ଦ୍ର—          ସମ ହରି ଉଚ-
    ଆସନୁ ଉଠିଲେ ବ୍ୟଗ୍ରେ । ୧୨ ।

ଦେବକୀସୁତଙ୍କ          ଅଭିମୁଖେ ରଖି
    ଚରଣ କଲେ ସ୍ଥାପନ,
ମୁନିପଦଭରେ          ନତଫଣ ଫଣୀ
    କଷ୍ଟେ ଭୂପୃଷ୍ଠ ଧାରଣ । ୧୩ ।

ପୁରାଣ ପୁରୁଷ          ଅର୍ଘ୍ୟାଦ ବଧିରେ
    କଲେ ମୁନିଙ୍କ ପୂଜନ,
ଅପୁଣ୍ୟକାରିର          ଗୃହଗମନେଚ୍ଛୁ
    କେବେ ନ ହୁଏ ସଜ୍ଜନ । ୧୪ ।

ତୁଷାର ଅଞ୍ଜନ—          ପର୍ବତ ଉତ୍‌ପ୍ରେକ୍ଷା-
    କରିବା ପୂର୍ବରୁ ଜନେ,
ଚିରନ୍ତନ ମୁନି          ଭକ୍ତିରେ ମୁନିଙ୍କି
    ବସାଇଲେ ଶୁଭାସନେ । ୧୫ ।

ଇନ୍ଦ୍ରନୀଳ କାନ୍ତି—          ହରିଙ୍କ ସମ୍ମୁଖେ
    ମୁନିଙ୍କ ଉପବେଶନ,
ରଜନୀମୁଖରେ          ଉଦୟାଦ୍ରିଶ୍ରିତ
    ଚନ୍ଦ୍ରଙ୍କ ଶୋଭା ହରଣ । ୧୬ ।

ଯଜ୍ୱାଙ୍କର ପ୍ରିୟ          ପ୍ରସନ୍ନ ମୁନିଙ୍କି
    ପୂଜା ହେଲେ ହରଷିତ,
ଆର୍ଯ୍ୟ ପୂଜା ଅଟେ          ମହାତ୍ମାମାନଙ୍କ
    ନିତାନ୍ତ ଅଭିଳଷିତ । ୧୭ ।

ବହୁ ତୀର୍ଥାହୃତ କମଣ୍ଡଳୁ ସ୍ଥିତ
ଋଷି କରେ ଘେନ ଜଳ—
ଅର୍ଘ୍ୟ, ସିଞ୍ଚିଲେ ନତଶିରେ ହର
ଗ୍ରହଣ କଲେ ସକଳ । ୧୮ ।

ମୁନି ଅନୁଜ୍ଞାରେ କାଞ୍ଚନ ଆସନେ
ନବାମ୍ବୁଦବପୁ ହରି—
ବସିଲେ, ଦିଶିଲେ କାଞ୍ଚନଶୃଙ୍ଗରେ
ପକ୍ୱଜମ୍ବୁତରୁ ପରି । ୧୯ ।

କାର୍ତ୍ତସ୍ୱରବର୍ଣ୍ଣ ଭାସ୍ୱର ଅମ୍ବର
ପୂର୍ଣ୍ଣେନ୍ଦୁଲାଞ୍ଛନ କାନ୍ତି,
ବାଡ଼ବଅନଳ ଶିଖାଶ୍ଳିଷ୍ଟ ସମ
ଦୁଗ୍ଧ ଜଳନିଧି ଭ୍ରାନ୍ତି । ୨୦ ।

ରଥାଙ୍ଗଧାରିଙ୍କ ବର୍ଣ୍ଣେ ସମ୍ମିଳିତ
ମୁନି କାନ୍ତି ଶୋଭା ଦିଶେ,
ରଜନୀରେ ତରୁ— ତଳପତ୍ରାନ୍ତରେ
ଉଡୁପତି ଜ୍ୟୋତ୍ସ୍ନା କି, ସେ । ୨୧ ।

ପ୍ରଫୁଲ୍ଲିତା ପିଚ୍ଛ— ନୀଳ, ସପ୍ତପର୍ଣ୍ଣ-
ଧୂଳିଗ ଧବଳକାୟ,
ପରସ୍ପର ବର୍ଣ୍ଣ ମିଶି ପ୍ରକାଶିଲେ
ସ୍ଫଟିକେନ୍ଦ୍ର-ନୀଳ ପ୍ରାୟ । ୨୨ ।

ଯୁଗାନ୍ତ କାଳରେ ଯେଉଁ ହର ଗର୍ଭେ
ସହଜେ ଜଗତ ସ୍ଥିତ,
ମୁନିଙ୍କ ଦର୍ଶନେ ଆନନ୍ଦରେ ପୂର୍ଣ୍ଣ
ଗର୍ଭ ହେଲ ଉଚ୍ଛଳିତ । ୨୩ ।

ସୂର୍ଯ୍ୟ ତେଜୋପମ ମୁନିଙ୍କ ପ୍ରବେଶେ
ମୋଦେ ନେତ୍ର ଉନ୍ମୀଳିତ—
ହେବାରୁ, ସେ ଦନୁ— ହରଙ୍କର ନାମ
ପୁଣ୍ଡରୀକାକ୍ଷ ବଦିତ । ୨୪ ।

ଶୁଭ୍ରସୌଧେ ଚୂର୍ଣ୍ଣ— ଲେପନ ପରାୟେ
ଶୁକ୍ଳବର୍ଣ୍ଣ ମୁନି ଅଙ୍ଗ,
ଦ୍ୱିଗୁଣିତ ଶୁକ୍ଳ— କରି ଦନ୍ତ ତେଜେ
ହାସ୍ୟେ କହିଲେ ଶ୍ରୀରଙ୍ଗ । ୨୫ ।

ହେ ମୁନି ! ଦର୍ଶନେ— ତବ, ପ୍ରାଣିଙ୍କର
ଅଧୁନା ପାପ ବିନାଶ,
ଭାବୀ ଶୁଭ ହେତୁ ପୂର୍ବକୃତ ଶୁଭ
ତ୍ରିକାଳ ପୁଣ୍ୟ ପ୍ରକାଶ । ୨୬ ।

ସହସ୍ର କିରଣେ ଜଗତ ଆଲୋକି
ଯେ ତମକୁ ସୂର୍ଯ୍ୟ ଦୂରି—
କରି ନ ପାରନ୍ତି ଛନ୍ନ ସେହି ତମ
କି କହିଣ ତବ ପୁରଃ । ୨୭ ।

ପ୍ରଜାକ୍ଷେମକାରୀ ବେଧା ଯୋଗ୍ୟପାନେ
ନିଗମ କରି ପ୍ରଦାନ,
ସ୍ରଷ୍ଟା, ଧନ ପରି ବେଦବ୍ୟସ୍ତୀ, ତବ
ଦର୍ଶନ ସୁମୂଲ୍ୟବାନ । ୨୮ ।

ତବ ଦର୍ଶନରେ ହେ ମୁନି ! ନିଷ୍ପାପ
କୃତାର୍ଥ ହେଲି ମୁଁ ଅଦ୍ୟ,
ତଥାପି ଶ୍ରେୟୁରେ ଅର୍ଥବନ୍ତୀ ବାଣୀ
ଶ୍ରବଣେ କେ ତୃପ୍ତି ସଦ୍ୟ । ୨୯ ।

ଗଢ଼ମ୍ମୃ ହ୍ର, ତବ ଆଗମନ ହେତୁ
କହ ବୋଲି ଯେ ଜିଜ୍ଞାସା,
ଋଷି ଆଗମନେ ଧୃଷ୍ଟତା ଗୌରବ
ବର୍ଦ୍ଧିତ ଏ ଶୁଭ ଆଶା । ୩୦ ।

ମୁନି ଶୁଣି ସର୍ବ କହିଲେ ହରିଙ୍କି
ହେ ପୁରୁଷୋତ୍ତମ ଆଜ—
ନ କହ ଏପରି, ତୁମ୍ଭେ ତ ସର୍ବଙ୍କ
ଯୋଗିକଥା ଦୂରେ ଆଜ । ୩୧ ।

ବିଷୟାଭିଳାଷ— ପ୍ରତିରୋଧକାରୀ
ସୁଦୁର୍ଗମ ମୋକ୍ଷ-ପଥ,
ଶୋକ ଜନେ ଶେଷେ ତୁମ୍ଭଙ୍କୁ ପାଆନ୍ତି
ତୁମ୍ଭେ ଅନାବୃତ୍ତି ପଥ । ୩୨ ।

କପିଳାଦି ଯୋଗୀ ସଂଯମ ମାନସେ
ଅଧ୍ୟାତ୍ମଦୃଷ୍ଟିରେ ବଳେ,
ପ୍ରକୃତି ବିକାର— ଭିନ୍ନେ ଲଭିଛନ୍ତି
ଅନାଦି ବୋଲି ସକଳେ । ୩୩ ।

ତିନି ଜଗତର ଏକ ସ୍ୱାମୀ ତୁମ୍ଭେ
ଅନନ୍ତ ଫଣାରେ ନେଇ,
ହେଳାରେ ଧରଣୀ କରିଛ ସ୍ଥାପନ
ଶେଷେ ସୁସମ୍ମାନ ଦେଇ । ୩୪ ।

ସର୍ବୋତ୍ତମ ତବ ପୁରାଣ ମୂରତି
ମହିମା କେ ପାରେ ଜାଣି,
ସଂସାର ନିବୃତ୍ତି— ଗୁଣେ ନରରୂପେ
ଶାନ୍ତ କର ସର୍ବ ପ୍ରାଣୀ । ୩୫ ।

ଭାରାକ୍ରାନ୍ତ ମହୀ ଲଘୁ କରିବାକୁ
ନିଧିବକ୍ଷୁ ଅବତରି,
ଅତି ଭାରବତୀ କର ପୃଥିବୀକୁ
ଉଦରେ ତ୍ରିଲୋକ ଧରି । ୩୬ ।

ଦୁଷ୍ଟଙ୍କ ନିଗ୍ରହେ ମହୀରେ ଯଦି ନ
ଲଭିଥାନ୍ତ ଅବତାର,
ସମାଧିନିଷ୍ଠଙ୍କ ଅଗୃହୀତ, ତୁମ୍ଭେ
ମାଦୃଶ ଏ ଦୃଷ୍ଟି ଗୋଚର । ୩୭ ।
ଦୁଷ୍ଟ ପ୍ରପୀଡ଼ିତ— ବିଶ୍ୱ ତ୍ରାଣେ ଏକା
ତୁମ୍ଭେ ଶକ୍ତ ବିଶ୍ୱମ୍ଭର !
କ୍ଷପା-ତମୋରାଶି ଦୂର କରିବାକୁ
କେ କ୍ଷମ ବିନା ଭାସ୍କର । ୩୮ ।

ହରି ! ମୃଗପରି—  କଂସାଦି ବଧରେ
ଜନେ କରନ୍ତି ଯେ ସ୍ତବ,
ହିରଣ୍ୟାକ୍ଷପୁରି—  ଗଜନାଶି ! ତାହା
ତିରସ୍କାର ଅଟେ ତବ । ୩୯ ।

ଶ୍ରମ ସହି ନିଜେ  ଦୁଷ୍ଟଙ୍କ ଦଳନେ
ଭୂଷିତ କରିଛ ଧରା,
ଜାଣି, ତବାଳାପ—  ଲୁବ୍ଧମନ ମୋତେ
ବାଚାଳ କରୁଛି ପରା । ୪୦ ।

ହେ ଉପେନ୍ଦ୍ର ! ଯାହା  ବଶ୍ୟହିତକାରୀ
ଇନ୍ଦ୍ର ସନ୍ଦେଶ ବଚନ,
ସକଳ କାର୍ଯ୍ୟରେ  ଧୁରନ୍ଧର ଇନ୍ଦ୍ର
ଶୁଣ ତାହା ଦେଇ ମନ । ୪୧ ।

ଶ୍ରୀବଳ୍ଲଭ ଅସୁର  ତ୍ରିଜଗଜ୍ଜନକାରୀ
ସୂର୍ଯ୍ୟତେଜାଦିତସୁତ,
ଇନ୍ଦ୍ରଶବ୍ଦହାରୀ  ହିରଣ୍ୟକଶିପୁ
ସର୍ବ ଦୈତ୍ୟଙ୍କରେ ନୁତ । ୪୨ ।

ଅନ୍ୟ ଶୁଭଦ୍ୱେଷ—  ସହିତ, ଅସୁର-
ନାମ, ପ୍ରଥମରେ ଖ୍ୟାତ,
ଦେବଙ୍କ ମନରେ  ଭୟର ପ୍ରବେଶ
କରାଇଲା ଅଦ୍ୟେ କାତ । ୪୩ ।

ଦିକ୍‌ପତିଙ୍କ ମଧ୍ୟୁ  ଗୁରୁସୁର* ତେଜ
ସମ୍ପଦ ତାକୁ ସେବିଲା,
ସେ ଦନୁ ଦୁର୍ଦ୍ଧର୍ଷ  ଦ୍ରମ୍ପଦ ନାମରେ
ତଳା ବୋଲି ପ୍ରକଟିଲା । ୪୪ ।

* ଗୁରୁସୁର — ଇନ୍ଦ୍ର, ବରୁଣ, ଯମ, କୁବେର, ବାରପ୍ରଦାଗୀ ।

ସେ ଦନୁ ଶଙ୍କିତ— ହୋଇ ଦେବଗଣ
ମୁଖ୍ୟ ପ୍ରୟୋଜନ ଶାଧି,
ପୁର କଲେ ଦୁର୍ଗ ନାଶିଲେ ଅସୁଧି
ବଳ, ଶୂର ବର୍ମ ଆଦ । ୪୫ ।

ଦଗ୍‌ବଜୟ କମେ ଯଦୃଚ୍ଛୟା ଦୈତ୍ୟ
ଭ୍ରମୁଥିଲା ଯେ ଦଗରେ,
ତ୍ରିସନ୍ଧ୍ୟ* କରୁଭ— ଭେଜ ସେ ଦଗକୁ
ପ୍ରଣମୁଥିଲେ ଅମରେ । ୪୬ ।

ସଟାଚ୍ଛଟାଭରେ ଭଗ୍ନ କର ମେଘ
ନୃସିଂହ ତନୁ ଧାରଣ,
କୁଳଶ କଠିନ ଦୈତ୍ୟହୃଦ ନଖେ
କଲ ଦେବ ! ବଦାରଣ । ୪୭ ।

ଦେବ-ରଣେ ମନ ନ ହେବାରୁ ଶାନ୍ତ
ପୁଣି ଜନ୍ମାନ୍ତରେ ଜାତ,
ଭୀମଗାନ, ସ୍ୱର୍ଗ— କ୍ଷତରକ୍ଷାକାରୀ
ରାବଣ ନାମରେ ଖ୍ୟାତ । ୪୮ ।

ତନ ଭୁବନର ପ୍ରଭୁତା ମାନସେ
ଦଶମସ୍ତକ ଚ୍ଛେଦନ—
କର, ମହାଦମ୍ଭୀ ପିନାକ-ବରକୁ
ବଘ୍ନରେ କଲା ଗଣନ । ୪୯ ।

କୈଳାସ ପର୍ବତ କର ଉତ୍ତୋଳନ
ବରଦାନ ଉପକାର,
ହିମାଦ୍ରି ଜାତୟ— ସ୍ୱୟଂଗ୍ରହ* ସୁଖେ
ଶିବଙ୍କ ପ୍ରତ୍ୟୁପକାର । ୫୦ ।

---

* ତ୍ରିସନ୍ଧ୍ୟ—ତିନି ସନ୍ଧ୍ୟା, ସନ୍ଧ୍ୟା ବନ୍ଦନରେ ଦକ୍‌ନାଦୃମ ଧ୍ୟାନ କର ହୃଦୟେ ବଶିଷ୍ଠ ଥିବା ଦିଗକୁ ନମସ୍କାର କରୁଥିବା ।

* ସ୍ୱୟଂଗ୍ରହ—ସ୍ୱାମିପ୍ରାର୍ଥନା ବିନା ନିଜେ ସ୍ୱାମିଙ୍କ ବସ୍ତୁଗ୍ରହଣ ।

ଇନ୍ଦ୍ରେ ବାଦ କରି    ବଳିଷ୍ଠ ରାବଣ
ରୋଧିଲା ଅମରାବତୀ,
ଛେଦିଲା ନନ୍ଦନ୧    ଲୁଣ୍ଠିଲା ରତନ
ହରିଲା ସୁରଯୁବତୀ । ୫୧ ।

ସଂଗ୍ରାମେ ରାବଣ—    ଅନୁଦ୍ରୁତ ଇନ୍ଦ୍ର
ଐରାବତ ଲୀଳାଗତି
ଉଚ୍ଚୈଃଶ୍ରବା ପଦ—    କ୍ରମ, ପ୍ରଶଂସାରେ
ସେକାଳେ ନ ଦେଲେ ମତି । ୫୨ ।

ସୂର୍ଯ୍ୟତେଜା ବୀର—    ଦର୍ଶନ, କୌଶିକ୨
ଭୟରେ ନ ପାରି ସହି,
ହିମାଦ୍ରି ଗୁହାରେ    ଲୁଚି ଦିନ ନେଲେ
ଦୁଃଖେ ହୃଦ ହୁଏ ଦହି । ୫୩ ।

କଠିନ କଣ୍ଠରେ    ବୈଷ୍ଣବ ଚକ୍ରର
ଅଭିଘାତେ ଅଗ୍ନି କଣା
ବାହାରିଲା, କ୍ଷତ—    ନ ହେବାର ଦେଖି
ପ୍ରଭୁ ବୁଦ୍ଧି ହେଲା ବଣା । ୫୪ ।

ରାବଣ କରାଳ—    ପରି, ଅବିରତ
ଶଙ୍ଖ ପୃଷ୍ଠ ଛିନ୍ନ ଭିନ୍ନ,
ପ୍ରକମ୍ପନ କଲା    ମାନସ ଅମଣ
ନରଧର୍ମୀଙ୍କର ଖିନ୍ନ । ୫୫ ।

ପ୍ରଚେତାଃ ପ୍ରହୃତ    ଉରଗ ପାଶକୁ
ସରୋଷ ହୁଙ୍କାର ଛଳେ,
ପରାଙ୍ମୁଖ କଲା,    ଭୟେ ପାଶ ଯାଇ
ପ୍ରହର୍ତ୍ତାଙ୍କ କଣ୍ଠସ୍ଥଳେ । ୫୬ ।

---

୧ ନନ୍ଦନ—ନନ୍ଦନବନ ।

୨ କୌଶିକ—ମହେନ୍ଦ୍ର ଓ ପେଚକ । ପେଚକ ଯେପରି ଦିବସରେ ସୂର୍ଯ୍ୟତେଜ ଦେଖି ନ ପାରି ଦିନରେ ବୃକ୍ଷରେ ଲୁଚେ, ଇନ୍ଦ୍ର ସେପରି ।

ଧନୁ ଭରବାକୁ ବିଷାଣ ମଣ୍ଡଳ
କଲା ଧନୁ ଉତ୍ପାଟନ,
ଭାରତ୍ତାନେ ମଧ୍ୟ ଯମଙ୍କ ମହିଷ
ଲଜ୍ଜାରେ ନତ ଆନନ । ୫୭ ।

ଗ୍ରୀଷ୍ମେ ଅହସ୍କର ଅସମଗ୍ର-କରେ
ଚୁମ୍ବି ସଣଙ୍କ ଭାବରେ,
ଅନୁଷ୍ଣ ସ୍ୱେଦର— ବିନ୍ଦୁ ମୁକ୍ତାମାଳେ
ମଣ୍ଡନ୍ତି ବଧୂ ତୋଷରେ । ୫୮ ।

ମାନନୀମାନଙ୍କ ଉତ୍କଣ୍ଠା ବର୍ଦ୍ଧନେ
ବିଳାସୀ ରାବଣ ପୁରେ,
ନର୍ମସଚିବତା କଲେ ପୂର୍ଣ୍ଣ ଇନ୍ଦୁ
ସଭୟେ ରହି ଅଦୂରେ । ୫୯ ।

ବିଳାସିନୀଙ୍କର ସୁବର୍ଣ୍ଣ ଭୂଷଣ
ନିର୍ମାଣ ପାଇଁ ରାବଣ,
ନ ଉଠେ ଗଣେଶ— ଏକଦନ୍ତ ଆଉ
କରନ୍ତୁ ଯା ଉତ୍ପାଟନ । ୬୦ ।

ଶାନ୍ତ ରମଣୀ— ଉରୁସ୍ଥଳ-ବସ୍ତ୍ର
ଯତ୍ନେ କର ଉନ୍ମୋଚନ,
ସ୍ରୀରୁ-ଲୋକ-ଦୃଷ୍ଟି ରାବଣର କୃପା
ମାଗୁଛ କଲେ ଅର୍ଜନ । ୬୧ ।

ତ୍ରିଭୁବନଧ୍ୱଂସୀ ରାବଣ ତେଜରେ
କ୍ଷଣତନୁ ବୈଶ୍ୱାନର,
ଦୁଃଖ-ବାଷ୍ପଛଳେ ଧୂମ-ବିତାନକୁ
ଦ୍ୱିଗୁଣ କଲେ ସତ୍ୱର । ୬୨ ।

ଉଗ୍ର ଶାସନରେ ପର ମର୍ମଭେଦୀ
ଦ୍ୱିଜିହ୍ୱତା ଦୋଷ ତେଜ,
ଭୁଜଙ୍ଗଜାତି[୧] ବର୍ଜି ରଜୁଗତ, କଣ୍ଠୀ
ହେଲେ ଭୟେ ମନେ ହେଜ । ୬୩ ।

---

୧ ଭୁଜଙ୍ଗଜାତି—ସର୍ପଜାତି, ବଂଶ।

ରାବଣର ହସ୍ତି— ସମୂହେ ତାଡ଼ିତ
ଗଣ୍ଡରୁ ବହାଇ ବାରି,
ଦିଗଗଜମାନେ ନାମ ସାର୍ଥ କଲେ
ଭୟରେ ଫେରି ନ ପାରି । ୬୪ ।

ସ୍ମର-ତପ୍ତ-ଦେହ ବନ୍ଦୀ ଅମର-
ଶ୍ୱାସାନଳେ ଶୀତ[1] ଯଥା,
ଚନ୍ଦନ ସଲିଳ— ସିକ୍ତ ବ୍ୟଜନର
ମାରୁତେ ନ ହୁଏ ତଥା । ୬୫ ।

ଗ୍ରୀଷମ ବରଷା ଶରଦ ହେମନ୍ତ
ଶିଶିର ବସନ୍ତ ମିଶି,
ସର୍ବ ଋତୁ ଭୟେ ରାବଣର ପୁରେ
ବାସ କଲେ ଦିବା ନିଶି । ୬୬ ।

ଅମାନବ, ଅଜ, ମନୁ କୁଳେ ଜାତ
ନିଜ ମୃତ୍ୟୁ ହେତୁ ଜାଣି,
ତଥାପି ସୀତାଙ୍କୁ ନ ତେଜିଲା, ସଦା-
ଅଭିମାନଧନା ମାନୀ । ୬୭ ।

ତୁମ୍ଭେ ଦାଶରଥି ଅବତରି ବନ-
ବନିତା-ଚୋରକୁ ଯେବେ,
ବଧିଲ ଲଙ୍କାରେ ଅବ୍ଧି ସେତୁ ବାନ୍ଧି
ସ୍ମରୁଛ କି ପ୍ରଭୋ ! ଏବେ । ୬୮ ।

ରକ୍ଷ ଦେହ ତେଜି ପ୍ରତାରଣାପର
ନଠର ପ୍ରାପ୍ତ ରାବଣ,
ଜନ୍ମାନ୍ତର ଲଭି ଶିଶୁପାଳ ନାମେ
ଲୁପ କରେ ଅବରଣ । ୬୯ ।

ବାଲ୍ୟେ ଚତୁର୍ଭୁଜ ପୂର୍ଣ୍ଣଇନ୍ଦୁ ସମ
ମୁଖରେ ତିନି ଲୋଚନ,
ଯୌବନେ ସେ କଲା ସୂର୍ଯ୍ୟ ତେଜ-କରେ
ଭୂପାଳଙ୍କୁ ଆକ୍ରମଣ । ୭୦ ।

---

୧ ଶୀତ – ଶୀତଳ ।

ନିଜପରାକ୍ରମେ ସୁର ଦୈତ୍ୟ ରକ୍ଷଃ–
ଦର୍ପ ଚୂର୍ଣ୍ଣକର ବସେ,
ଦେବ ସେବ ବଳ ପାଇଛନ୍ତି ବୋଲି
ଦଶାନନାଦିଙ୍କୁ ହସେ । ୭୧ ।

ବଳଗର୍ବେ ଏବେ ଜିଗୀଷୁ ପୀଡ଼ଇ
ଜଗତକୁ ପୂର୍ବ ପରି,
ଜନ୍ମାନ୍ତରେ ମଧ୍ୟ ପ୍ରକୃତି, ପୁରୁଷ
ସଙ୍ଗୀ ପରି ଅନୁସରି । ୭୨ ।

ବିଧାତା-ନିୟମ— ଲଙ୍ଘନକାରୀଙ୍କ
ପଠାଅ ଯମ-ସଦନ,
ଜଗତନିୟନ୍ତା ଭବାଦୃଶ କାର୍ଯ୍ୟ
ଦୁରାତ୍ମାଙ୍କ ଦମନ । ୭୩ ।

ଅରିବଧେ ପୁଣି ନିଶ୍ଚିନ୍ତ, ହର୍ଷିତ
ପୁରନ୍ଦରଙ୍କ ହୃଦୟ,
ଶଚୀ ଆଲିଙ୍ଗନେ କ୍ଷମ ହେଉ ଏବେ
ସ୍ୱର୍ଗରେ ହୋଇ ନିର୍ଭୟ । ୭୪ ।

ଏହିପରି କହି ଚଳିଲେ ନାରଦ
ଅଗ୍ରେ ଇନ୍ଦ୍ରୁଶିରି ଧାରଣ କରି,
ଓଁକାର ଉଚ୍ଚାରି ଚୈଦ୍ୟକ୍ରୋଧେ ମୁଖେ
କେତୁଗ୍ରହଶୋଭା ଧରିଲେ ହରି । ୭୫ ।



# ଦ୍ୱିତୀୟ ସର୍ଗ

ଯିଯକ୍ଷୁ[୧] ପାର୍ଥଙ୍କ ଦ୍ୱାରା ହୋଇ ଅମନ୍ତ୍ରିତ,
ଚୈଦ୍ୟ[୨]-ଗାମୀ ହରି କାର୍ଯ୍ୟ— ଦ୍ୱୟେ ଅକୁଳିତ । ୧ ।

ଗୁରୁକାବ୍ୟ-ଅନୁଗାମୀ ଚାନ୍ଦ୍ରୀ ଶୋଭା ଧରି,
ଉଦ୍ଧବ ହଳୀ ସହିତ ସଭାଗୃହେ ହରି- । ୨ ।

ପ୍ରବେଶି, ବସିଲେ, ସଭା— ବେଦିର ଉପରେ,
ବିଶ୍ୱହିତେ ଦୀପ୍ତଅଗ୍ନି— ସମ ତିନି ନରେ । ୩ ।

ରତ୍ନସ୍ତମ୍ଭେ ପ୍ରତିବିମ୍ବ ପଡ଼ି ଦିଶେ ରମ୍ୟ,
ଏକାକୀ ହେଲେହେଁ ନର— ବେଷ୍ଟିତ ଔପମ୍ୟ । ୪ ।

ତୁଙ୍ଗ ହେମପୀଠେ ଯାଇ ସେ ତିନି ବସିଲେ,
ତ୍ରିକୂଟଶୃଙ୍ଗସ୍ଥ ସିଂହ— ଉପମା ଦିଶିଲେ । ୫ ।

ଉଦ୍ଧବ ରାମ ସକାଶେ ବଡ଼ ଦୁଇ କାର୍ଯ୍ୟ,
ଭାଷିଲେ ହରି ବିରୋଧ— ବାଣୀ ଅନିବାର୍ଯ୍ୟ । ୬ ।

ସ୍ମିତେ କୁନ୍ଦୋପମ ଦନ୍ତ— ସମୁଜ୍ଜ୍ୱଳ ମୁଖେ,
ନିଗଦିଲେ ବାଣୀ ହରି ସ୍ପଷ୍ଟବର୍ଣ୍ଣ ସୁଖେ । ୭ ।

ସିଦ୍ଧାନ୍ତ ପାଇଁ କହୁଛନ୍ତି ନୋହେ ସିଦ୍ଧ କଥା,
ନାଟକୀୟ କାର୍ଯ୍ୟ ପାଇଁ ପୂର୍ବ ରଙ୍ଗ ଯଥା । ୮ ।

ଦିଗ୍ଜୟୀ ଭ୍ରାତାଙ୍କ ଦ୍ୱାରା ଭୂମିପେ କରଦ,
ଅମ୍ଭ ବିନା ମଧ୍ୟ ପାର୍ଥ— ଯଜ୍ଞ ସୁବରଦ । ୯ ।

ବର୍ଦ୍ଧମାନ ଶତ୍ରୁ, ରୋଗ, ଉଭୟେ ସମାନ,
ନୀତିଜ୍ଞେ କହନ୍ତି ନାଶ ଉପେକ୍ଷାରେ ପ୍ରାଣ ।୧୦।

ଚୈଦ୍ୟ ଦ୍ରୋହ କରେ ମୋତେ ନ ଭାବେଁ ମୁଁ ଦୁଃଖ,
କିନ୍ତୁ ଲୋକପୀଡ଼ା ମନେ ଦିଏ ମହାଦୁଃଖ । ୧୧ ।

---

୧ ଯିଯକ୍ଷୁ—ଯଜ୍ଞ କରିବାକୁ ଇଚ୍ଛୁକ । ୨ ଚୈଦ୍ୟ— ଶିଶୁପାଳ ।

ମୋ ମତ ଏହା ଶୁଣିବା— ଯାଏ ତବ ମତ,
ଏକାକୀ ଉଦ୍ଧବଙ୍କ ମଧ୍ୟ ସନ୍ଦେହର ମତ । ୧୨ ।

ଯେତେ ଅର୍ଥ ଯେତେ ପଦ ହରି କହି କଥା,
ବିରମିଲେ ମିତଭାଷୀ ନମ୍ର କରି ମଥା । ୧୩ ।

ବପ୍ର ଅପକାର ସ୍ମରି ରାମ ଖିନ୍ନମନ,
ଭାର୍ଯ୍ୟାଧରଚୁମ୍ବପଟୁ ଓଷ୍ଠ ସୁକମ୍ପନ । ୧୪ ।

ଉଦ୍ଧବ ବିବକ୍ଷା ଶୀଘ୍ର କରି ସଂହରଣ,
ଉତ୍ତର ପକ୍ଷକୁ ତାହା କଲେ ସଂରକ୍ଷଣ । ୧୫ ।

ରେବତୀ ବଦନୋଚ୍ଛିଷ୍ଟ ଶୁଦ୍ଧ ସୁନୟନ,
ମଦିରା ପାନେ ଲୋହିତ କରେ ବିଘୂର୍ଣ୍ଣନ । ୧୬ ।

ଅଶ୍ଲେଷଲୋଲୁପ ବଧୂ— ସ୍ତନର କଠିନ,
ସାକ୍ଷୀ, ବନମାଳା, ଶ୍ୱାସେ କଲେ ସୁମଳିନ । ୧୭ ।

ସନ୍ଧ୍ୟାରୁଣ ଗଗନରେ ତାରକା ପରାୟ,
ଶତ୍ରୁ କ୍ରୋଧେ ରକ୍ତ ତହିଁ ସ୍ୱେଦବିନ୍ଦୁ କାୟ । ୧୮ ।

କୁଣ୍ଡଳେ ଜଡ଼ିତ ପଦ୍ମ— ରାଗମଣି କାନ୍ତି,
ନୀଳବସ୍ତ୍ର ବର୍ଣ୍ଣେ ମିଶି ଚୂତପତ୍ର ଭ୍ରାନ୍ତି । ୧୯ ।

ରେବତୀ ବଦନଗତ ସୌରଭେ ମିଳିତ,
ମଦିରା ଗନ୍ଧ ରାମଙ୍କ ମୁଖୁଁ ବିସାରିତ । ୨୦ ।

ମୁଖପଦ୍ମ ପ୍ରାନ୍ତଗୃହୀ ମଧୁପଙ୍କ ହଳୀ,
ଦନ୍ତାଂଶୁରେ ଶୁକ୍ଳ କରି ନିଗଦିଲେ ବଳୀ । ୨୧ ।

ଶ୍ରୀକୃଷ୍ଣ ନିର୍ଦ୍ଦୋଷ ଦୃଢ଼ ଯେଉଁ କଥାମାନ—;
କହିଲେ, ତହିଁ ଉତ୍ତର କାର୍ଯ୍ୟ ଅନୁଷ୍ଠାନ । ୨୨ ।

ମିତ ସାର ବାଣୀଶ୍ରେଷ୍ଠ କି ବହୁ କଥାରେ,
କାଷ୍ଠୌଘଦାହୀ କି ତେଜେ ସୂର୍ଯ୍ୟ ବଳି ପାରେ । ୨୩ ।

ବହୁଳ ମୋହର ବାଣୀ ନୋହେ ଅର୍ଥସାର
ଟୀକା ହେଉ ଅର୍ଥସାର ସଂକ୍ଷିପ୍ତ କଥାର । ୨୪ ।

ବିପକ୍ଷବାଦୀ[1] ବାଗୀଶ କୁଢବାଣୀ ମୂକ,
ସପକ୍ଷବାଦୀ[2] ଜଡ଼ଙ୍କୁ କରେ ବାବଦୂକ । ୨୫ ।

---

୧ ବିପକ୍ଷବାଦୀ—ପ୍ରତିକୂଳବାଦୀ । ୨ ସପକ୍ଷବାଦୀ—ଅନୁକୂଳବାଦୀ ।

ଷଡ଼ଗୁଣ୧, ଶକ୍ତି୨ ସିଦ୍ଧି୩— ତିନି, ଯେ ଉଦୟ୪,
ମୂର୍ଖ ମଧ୍ୟ ଗ୍ରନ୍ଥ ପଢ଼ି ବ୍ୟାଖ୍ୟାନେ ନିର୍ଭୟ । ୨୬
କାର୍ଯ୍ୟ ଅଜ୍ଞ ବାଗ୍ମୀଙ୍କର ବାଗଜାଲ ତଥା,
ଲକ୍ଷ୍ୟଭ୍ରଷ୍ଟ ଧାନୁଷ୍କର ବୃଥା ଲମ୍ଫ ଯଥା । ୨୭ ।

ପଞ୍ଚଅଙ୍ଗ୫ ସ୍କନ୍ଧ୬ ତେଜି ନୃପ ଅନ୍ୟ ମନ୍ତ୍ର,
ଦେହେ କାର୍ଯ୍ୟ ସୌଗତଙ୍କ୭ ଆତ୍ମା କି ସ୍ୱତନ୍ତ୍ର । ୨୮ ।
ସର୍ବାଙ୍ଗ ସଂବୃତ ଯୋଧା ମନ୍ତ୍ର ଶକ୍ତି ବିନା,
ବିଳମ୍ବିଲେ ମନ୍ତ୍ରଭେଦ, କାର୍ଯ୍ୟହାନି ସିନା । ୨୯ ।

ଆତ୍ମୋଦୟ ଶତ୍ରୁହାନି ଶ୍ରେଷ୍ଠ ଦୁଇ ନୀତି—
ଘେନି ଜ୍ଞାନୀ କାର୍ଯ୍ୟ କରେ ମନୁ ତେଜି ସ୍ମୃତି । ୩୦ ।
ଐଶ୍ୱର୍ଯ୍ୟରେ ତୃପ୍ତି ଭଲ ନୋହେ ନୃପଙ୍କର,
ଚନ୍ଦ୍ରୋଦୟାକାଙ୍କ୍ଷୀ ଦେଖ ସମ୍ପୂର୍ଣ୍ଣ ସାଗର । ୩୧ ।

ଅଳ୍ପ ସମ୍ପଦେ ସନ୍ତୁଷ୍ଟ ହୁଏ ଯେଉଁ ନୃପ,
ବିଧି ମଧ୍ୟ ବୃଦ୍ଧି ପାଇଁ ହୁଅଇ ନିଷ୍କୃପ । ୩୨ ।
ସମୂଳ ଶତ୍ରୁ ନ ନାଶି ମାନିର କି ମୋଦ,
ଅନ୍ଧକାର ନାଶେ ସୂର୍ଯ୍ୟ ଉଦୟେ କି ରୋଧ ।୩୩।

ଦୁର୍ଲଭ ପ୍ରତିଷ୍ଠା ଅଟେ ଶତ୍ରୁନାଶ ବିନା,
ଜଳ, ଧୂଳି ପଙ୍କ କରି ତଳେ ରଖେ ସିନା ।୩୪।
ଏକମାତ୍ର ଶତ୍ରୁ ଥିଲେ କାହିଁ ନିଜ ସୁଖ;
ଦେବ ଅଗ୍ରେ ସୈଂହିକେୟ ଚନ୍ଦ୍ରେ ଦିଏ ଦୁଃଖ ।୩୫।

---

୧ ଷଡ଼ଗୁଣ — ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧୀଭାବ, ସମାଶ୍ରୟ ।
୨ ଶକ୍ତି — ପ୍ରଭୁଶକ୍ତି, ମନ୍ତ୍ରଶକ୍ତି, ଉତ୍ସାହଶକ୍ତି ।
୩ ସିଦ୍ଧି — ପ୍ରଭୁସିଦ୍ଧି, ମନ୍ତ୍ରସିଦ୍ଧି, ଉତ୍ସାହସିଦ୍ଧି ।
୪ ଉଦୟ — ବୃଦ୍ଧି, କ୍ଷୟ, ଅବସ୍ଥାନ ।
୫ ପଞ୍ଚଅଙ୍ଗ — କର୍ମାରମ୍ଭୋପାୟ; ପୁରୁଷଦ୍ରବ୍ୟସମ୍ପତ୍, ଦେଶକାଳବିଭାଗ, ବିପତ୍ପ୍ରତୀକାର, କାର୍ଯ୍ୟସିଦ୍ଧି ।
୬ ପଞ୍ଚସ୍କନ୍ଧ — ରୂପ, ବେଦନା, ବିଜ୍ଞାନ, ସଂଜ୍ଞା, ସଂସ୍କାର ।
୭ ସୌଗତ — ବୌଦ୍ଧ । ବୌଦ୍ଧମାନଙ୍କ ପଞ୍ଚସ୍କନ୍ଧ ଛଡ଼ା ଅଉ ଅନ୍ୟ ଆତ୍ମା ନାହିଁ ।
ଯଥା — ବିଷୟପ୍ରପଞ୍ଚ ରୂପସ୍କନ୍ଧ, ବିଷୟଜ୍ଞାନପ୍ରପଞ୍ଚ ବେଦନାସ୍କନ୍ଧ, ଆଳୟବିଜ୍ଞାନ-ସନ୍ତାନ ବିଜ୍ଞାନସ୍କନ୍ଧ, ନାମପ୍ରପଞ୍ଚ ସଂଜ୍ଞାସ୍କନ୍ଧ, ବାସନାପ୍ରପଞ୍ଚ ସଂସ୍କାରସ୍କନ୍ଧ ।

କୃତ୍ରିମ ଶତ୍ରୁ କୃତ୍ରିମ ମିତ୍ର ଭଲ ବେଳା,
ପ୍ରାକୃତ, ସହଜମିତ୍ର ଶତ୍ରୁ, କାର୍ଯ୍ୟ ଘେନା ।୩୬।
ଉପକାରୀ ଶତ୍ରୁ ଅପ— କାରୀ ମିତ୍ର ସଙ୍ଗେ,
ନ କର ସନ୍ଧି, ଲକ୍ଷଣ ଦେଖୁଥିବ ରଙ୍ଗେ । ୩୭ ।
ରୁକ୍ମିଣୀ ହରଣେ ଅବ— ଜ୍ଞାତ ଶିଶୁପାଳ,
ହରି ! ଘାତ୍ର ନାରୀବୈର ଥାଏ ବହୁକାଳ । ୩୮ ।
ଭୌମ୧ ଜୟେ ଗତେ ଚୈଦ୍ୟ ରୋଧିଲା ନଗର୨
ପ୍ରୋଷିତ୩ ସୂର୍ଯ୍ୟ ସୁମେରୁ ସଦୃଶ ତମର । ୩୯ ।
ଚୈଦ୍ୟ ଯାଦବପତ୍ନୀଙ୍କୁ ହରିବାର କଥା,
ପାପ ଉଚ୍ଚାରଣ ହେତ ନ ହୁଏ ସର୍ବଥା । ୪୦ ।
ତୁମ୍ଭଦ୍ୱାରା ଅବଜ୍ଞାତ ଅମ୍ଭର ବିରୋଧୀ,
ଚୈଦ୍ୟର ନିକୃଷ୍ଟ କାର୍ଯ୍ୟ— ଦ୍ୱାରା ହୁଅ କ୍ରୋଧୀ ।୪୧।
ଯେଉଁ ଲୋକ ରୋଷେ ବୈରୀ— କରି ମୌନ ଧରେ,
ଶୁଷ୍କ ତୃଣେ ଶୋଇ ଅଗ୍ନି ସନ୍ଦୀପନେ ମରେ । ୪୨ ।
କ୍ଷମାଶାଳୀ ଦୋଷି-ଅଳ୍ପ ଦୋଷ ବାରେ ସହେ,
ପୁଣି ପୁଣି ହେଲେ ଶତ୍ରୁ କ୍ରୋଧାଗ୍ନିରେ ଦହେ ।୪୩
କ୍ଷମା ନାରୀ-ଲଜ୍ଜା ପରି ପୁରୁଷ ଭୂଷଣ,
ଅନ୍ୟେ,୪ ନାରୀ ରତି ପରି ପୌରୁଷ ଭୂଷଣ । ୪୪ ।
ଯେ ଶତ୍ରୁ ଅବମାନନା— ଦଗ୍ଧ ପ୍ରାଣ ଧରେ,
ମାତା କ୍ଳେଶକାରୀ, ଅନ୍ୟ ଜନନୀ ଉଦରେ । ୪୫ ।
ପାଦାହତ ଧୂଳି ଉଡ଼ି ଶିର ଆକ୍ରମଣ,
ଅପମାନ ତୁଷ୍ଟ ପ୍ରାଣି— ଠାରୁ ଶ୍ରେଷ୍ଠ ଗଣ । ୪୬ ।
ଜାତ କାର୍ଯ୍ୟ ସମ୍ପାଦନେ ଯେ ଅଟେ ଅକ୍ଷମ,
ନିରର୍ଥ ଶବ୍ଦ ପରି ତା'— ନାମାର୍ଥେ ଜନମ । ୪୭ ।
ପର୍ବତେ ତୁଙ୍ଗତା ଅଗା— ଧତା ଜଳଧିରେ,
ପରସ୍ପର ଗୁଣ ନାହିଁ ଦୁଇ ଅଛୁ ବୀରେ । ୪୮ ।

୧ ଭୌମ — ନରକାସୁର । ୨ ନଗର — ଦ୍ୱାରକା । ୩ ପ୍ରୋଷିତ — ବିଦେଶଗତ । ୪ ଅନ୍ୟେ — ସୁରତଦ୍ୱନ୍ଦ୍ୱ କାଳରେ, ଅବସ୍ଥାନରେ । ଅନ୍ୟେ — ବିଗ୍ରହରେ, ବୈଷ୍ଟନରେ ।

ତୁଲ୍ୟ ଦୋଷେ ଭାସ୍କରଙ୍କୁ    ରାହୁ ଗ୍ରାସ କଷ୍ଟର,
ଦୀର୍ଘେ, ଚନ୍ଦ୍ରମାଙ୍କୁ ଶୀଘ୍ର    ମାର୍ଦ୍ଦବ ଗୁଣରେ । ୪୯ ।

ନିଷ୍ପ୍ରୀଭୁଷ ନର ଶତ୍ରୁ—    ବାତର ବଳରେ,
ବନ୍ଧୁ ତୃଣ ଯଥା ନମେ    ତଥା ଅଳପରେ । ୫୦ ।

ଦୂରସ୍ଥ ତେଜସ୍ୱୀ ମଧ୍ୟ    ତେଜସ୍ୱିରେ ଗଣ୍ୟ,
ପଞ୍ଚାଗ୍ନି ତାପୀ ତପନ    ପଞ୍ଚମାଗ୍ନି ଅନ୍ୟ । ୫୧ ।

ଶତ୍ରୁ ମସ୍ତକରେ ଉଚ୍ଚେ    ନ ଦେଲେ ଚରଣ,
ନିରାଲମ୍ବକୀର୍ତ୍ତିର କି    ସ୍ୱର୍ଗ ଆରୋହଣ । ୫୨ ।

ଅଙ୍କେ ମୃଗଧାରୀ ଚନ୍ଦ୍ର    ହରିଣଲାଞ୍ଛନ,
ମୃଗଘାତୀ ସିଂହ ମୃଗ—    ଅଧିପେ ଗଣନ । ୫୩ ।

ଦଣ୍ଡସାଧ୍ୟ ରିପୁଠାରେ    ସାମ ଅପକାର,
ସ୍ୱେଦାକ୍ତ ଜ୍ୱରିର ଜଳେ    ସ୍ନାନ ପରକାର । ୫୪ ।

ସାମରେ ପ୍ରୟୋଗେ ଶର—    ରିପୁ ଚୈଦ୍ୟ ବଳୀ,
ତପ୍ତଘୃତେ ଜଳ ପ୍ରାୟ    ଉଠିବ ସେ ଜଳି । ୫୫ ।

ଗୁଣର ଅଯଥା ଅର୍ଥ    କରି ନାଶେ କାର୍ଯ୍ୟ,
ଶତ୍ରୁ ସମ କୁଠ ମନ୍ତ୍ରୀ    ତ୍ୟାଜ୍ୟ ଅନିବାର୍ଯ୍ୟ । ୫୬ ।

କେ ଶକ୍ତି ବୃଦ୍ଧିରେ, ରିପୁ—    ବ୍ୟସନରେ ଯାତ୍ରା,
ଉଭୟ କହନ୍ତି, ନ୍ୟୂନ    ନାହିଁ ସୈନ୍ୟ ମାତ୍ରା । ୫୭ ।

ପୃଥ୍ୱୀ-ଲଙ୍ଘୀ ଦୁସ୍ତର    ଯାଦବ-ସାଗର,
ତବ କ୍ଷମା-ବେଳା ପରି    ରୋଧଇ ତତ୍ପର । ୫୮ ।

ସାକ୍ଷୀ ହୋଇ ସେନା-ଜୟେ    ସାଙ୍ଖ୍ୟ ଉକ୍ତି ପରି,
ଫଳଭାଗୀ, ବ୍ୟବହାର    କର ସେହିପରି । ୫୯ ।

ଭୀମଦ୍ୱାରା ଜରାସନ୍ଧ    ହେଲା ଦନ୍ତୁ ହତ,
ସେ ଦନ୍ତୁ ଚୈଦ୍ୟ ଦମନ    ଥିଲା ଅନ୍ୟ ମତ । ୬୦ ।

ବ୍ୟସନୀ ଶତ୍ରୁର ଜୟେ    ମାନୀ କରେ ଲଜ୍ଜା,
ଗ୍ରହ, ପୂର୍ଣ୍ଣଚନ୍ଦ୍ରେ, ବଳୀ—    ଠାରେ ରଣସଜ୍ଜା । ୬୧ ।

ଭିନ୍ନନୀତି ଉଗ୍ରକାନ୍ତି    ବ୍ୟସନୀର କ୍ଷମା,
ଏକାଧାରେ କାହିଁ ତେଜଓ    ତିମିରର ପ୍ରଭା । ୬୨ ।

ଇନ୍ଦ୍ରପ୍ରସ୍ଥ ନଗରକୁ ନ କର ଗମନ,
ଭଗ୍ନ ହେଉ ଗଲେ ଚେଦ— ମାର୍ଗବୃକ୍ଷଗଣ । ୬୩ ।

ବିବଧ[1] ଆସାର[2] ପ୍ରସାର[3] ରୋଧନ୍ତୁ ଯାଦବେ,
ଗୋଷ୍ଠେ ଧେନୁ ପରି ପୁରୀ ମାହିଷ୍ମତୀ ସର୍ବେ । ୬୪ ।

ପାର୍ଥ ଯଜ୍ଞ କରୁ, ଇନ୍ଦ୍ର ରଖୁ ସ୍ୱର୍ଗ, ଇନ-
ତାପୁ, ଅମ୍ଭେ ଶତ୍ରୁ ନାଶୁଁ, ସର୍ବେ ସ୍ୱାର୍ଥାଧୀନ । ୬୫ ।

ଶତ୍ରୁ ଶିରଚ୍ଛେଦ ରକ୍ତ— ଲିପ୍ତ ଶସ୍ତ୍ରଗଣ,
ରବିକରମିଶା ତଡ଼ି— ତ୍ ଶୋଭା ଧାରଣ । ୬୬ ।

କୋପୀ ସମ ବାଣୀ ଶୁଣି ଚଳ ଦେବଗଣ,
ପ୍ରତିଧ୍ୱନି ଛଳେ କଲେ କି ଅନୁମୋଦନ । ୬୭ ।

ବଳଙ୍କର ବାଣୀ ଶୁଣି ହରି ଇଙ୍ଗିତରେ,
କହିଲେ ଗୀଷ୍ପତିଶିଷ୍ୟ ଉଦ୍ଧବଙ୍କୁ ଖରେ । ୬୮ ।

ଉଦ୍ଧବ ଗଦ-ଅଗ୍ରଜ ଅନୁଜ୍ଞାକୁ ଜାଣି,
ଉତଥ୍ୟ ଅନୁଜ ପରି ପ୍ରକାଶିଲେ ବାଣୀ । ୬୯ ।

ହଳୀଙ୍କ ଉକ୍ତିରେ ଆଉ କହିବାକୁ କଥା,
ନାହିଁ, ପଦେ ଲେଖାମୁଖେ କହେ କି ସର୍ବଥା । ୭୦ ।

ଗୁରୁ ବୋଲି ମୋହଠାରେ ତବ ଯେ ଆଦର,
ପ୍ରଯୋଜ୍ୟ ଜଳ୍ପନେ ହୁଏ ପ୍ରଯୋଜକ ପର । ୭୧ ।

ପଞ୍ଚାଶତ ବର୍ଣ୍ଣେ ଶବ୍ଦ— ଜାଲ, ସପ୍ତସ୍ୱର,—
ମିଶି ବାକ୍ୟ ଭିନ୍ନ ଅର୍ଥ ଧରଇ ସତ୍ୱର । ୭୨ ।

ବୁଦ୍ଧି ଅନୁସାରେ ବହୁ ଅସଙ୍ଗତ କଥା,
କହନ୍ତି ଲୋକେ, ସଙ୍ଗତେ ଧୀର ହୁଏ ମଥା । ୭୩ ।

ବକ୍ତା, ପଟୁ, ଅର୍ଥଗୁରୁ ବହୁତ ଗୁଣରେ,
ରଚେ ଚଳବାକ୍ୟ ଶାଠୀ— ଘର ସ୍ୱମନରେ । ୭୪ ।

ବିଶେଷଜ୍ଞ ତବ ଅଗ୍ରେ ନୀତିର କଥନ,
ପାଣ୍ଡିତ୍ୟ ନୋହେ କେବଳ ଶବ୍ଦ ଆମ୍ରେଡ଼ନ । ୭୫ ।

---

୧ । ବିବଧ — ଧାନ୍ୟ ତଣ୍ଡୁଳାଦିର ପ୍ରବେଶ ।
୨ । ଅସାର — ସୁହୃଦ୍‌ବଳ, ସୈନ୍ୟ ।
୩ । ପ୍ରସାର — ତୃଣ କାଷ୍ଠ ଖାଦ୍ୟାଦିର ପ୍ରବେଶ ନିର୍ଗମ ।

ପ୍ରଭୁର ଉଚିତ ମନ୍ତ୍ର    ଉତ୍ସାହ ଧାରଣ,
ଜଗୀଷୁର ଅଟେ ତାହା    ପ୍ରଧାନ କାରଣ । ୭୬ ।

ଯେଉଁ ବୁଧ ଯୁକ୍ତିଯୁକ୍ତ    ଧୀ-ଖଡ୍ଗ ଅଶ୍ରାନ୍ତ,
ଲଭେ, ସେ ଖେଦକୁ ତିଳେ    ଦିଏ କି ପ୍ରଶ୍ରୟ । ୭୭ ।

ତୀକ୍ଷ୍ଣଶର[1] ପରି ଅଳ୍ପ    ପ୍ରବେଶି ପ୍ରଚୁର,-
କାର୍ଯ୍ୟ କରେ, ସ୍ଥୂଳ[2] ଅଶ୍ମା—    ପରି ରହେ ଦୂର । ୭୮ ।

ଅଜ୍ଞ ସ୍ୱଳ୍ପାରମ୍ଭେ ବ୍ୟଗ୍ର    ନୋହେ ପାରଗାମୀ,
ବିଜ୍ଞ ମହାରମ୍ଭେ ସ୍ଥିର    ହୁଏ ଧାରଗାମୀ । ୭୯ ।

ଉପାୟୀ ଅନବଧାନେ    କାର୍ଯ୍ୟ କରେ ନାଶ,
ନିଦ୍ରାଳୁବ୍ୟାଧ ହରିଣ    କରେ କି ବିନାଶ । ୮୦ ।

ଦ୍ୱାଦଶ ଆଦିତ୍ୟେ ଶ୍ରେଷ୍ଠ    ଦିନକର ଯଥା,
ଦ୍ୱାଦଶ ରାଜମଣ୍ଡଳେ    ସମ୍ରାଜ୍ଞୀ ତଥା । ୮୧ ।

ବୁଦ୍ଧି ଶସ୍ତ୍ର, ପ୍ରଜା ଅଙ୍ଗ,    ମନ୍ତ୍ର ଦୃଢ଼ ବର୍ମ୍ମ,
ଚର[3] ଚକ୍ଷୁ, ଦୂତ[4] ମୁଖ    ଶ୍ରେଷ୍ଠ ନୃପଧର୍ମ୍ମ । ୮୨ ।

କାଳଜ୍ଞ ନୃପଙ୍କ ତେଜ    କ୍ଷମା ନ ନିୟମ,
କବ ପରି ଓଜ ପ୍ରସା—    ଦର ଯୋଗ୍ୟ କ୍ରମ । ୮୩ ।

ରୋଗ ଯଥା ଦୁର୍ବଳର    ଦେହ ବସେ ମାଡି,
ଶତ୍ରୁକୁ ଦୁର୍ବଳ ଦେଖି    ନ ଦେବଟି ଛାଡି । ୮୪ ।

ମୃଦୁଅନ୍ତସ୍ତେଜ କରେ    ଦ୍ରବ୍ୟର ଭକ୍ଷଣ,
ଦୀପଗର୍ଭବର୍ତ୍ତି ଯଥା    ତଇଲ ଶୋଷଣ । ୮୫ ।

ବିଜ୍ଞ କେବଳ ପୌରୁଷ    ଭାଗ୍ୟକୁ ନ ଧରେ,
କବିତା ଶବ୍ଦାର୍ଥ ପରି    ଦୁହିଙ୍କି ଆଦରେ । ୮୬ ।

ସ୍ଥାୟିଭାବରେ ସଞ୍ଚାରି    ଭାବମାନ ଯଥା,
ଏକ ଜିଗୀଷୁର ମତେ    ଅନ୍ୟ ନୃପେ ତଥା । ୮୭ ।

---

୧ । ତୀକ୍ଷ୍ଣ—ତୀବ୍ରବୁଦ୍ଧି ।    ୩ । ଚର — ଗୁପ୍ତଦୂତ ।
୨ । ସ୍ଥୂଳ — ମନ୍ଦବୁଦ୍ଧି ।    ୪ । ଦୂତ — ସନ୍ଦେଶହର ।

ତନ୍ତ୍ର[1] ଅବାପ[2]ଙ୍କ ଯୋଗେ[3] ମଣ୍ଡଳ[4] ଉକ୍ରମ,
କଲ ପର ଶତ୍ରୁ ସର୍ପ ନରେନ୍ଦ୍ର ବକ୍ରମ । ୮୮ ।

ମନ୍ତ୍ରମୂଳ ତୁଙ୍ଗ ଉତ୍ସା— ହ ପାଦପ ବଳେ,
ହସ୍ତସଂବର୍ଦ୍ଧିତ ପ୍ରଭୁ— ଶକ୍ତି ଫଳ ଫଳେ । ୮୯ ।

ମନ୍ଦ୍ରାଦ ଅଧିକେ ବେଣୁ ଶ୍ରେଷ୍ଠ ସ୍ୱର ଧର,
ଜଗୀଷୁ ଭୂପଙ୍କୁ ନୃପେ ଥାନ୍ତି ଅନୁସର । ୯୦ ।

ପ୍ରଭୁ ଅନାରମ୍ଭୀ ଅନ୍ୟ ନୃପଙ୍କରେ ସିଦ୍ଧ,
ଆକାଶର ଶବ୍ଦ ଗୁଣ ଅଛଇ ପ୍ରସିଦ୍ଧ । ୯୧ ।

ଏକ ସୂତ୍ରେ ଗୁନ୍ଥା ମାଳା ମଧ୍ୟମଣି ପର,—
ଦୃଶ୍ୟମାନ ହୁଏ, ନେତା ପ୍ରୟୋଜନ ଧର । ୯୨ ।

ଶକ୍ତି[5]ଇଚ୍ଛାକାରୀ କଲେ ଷଡ୍‌ଗୁଣ[6] ପ୍ରୟୋଗ,
ଅଙ୍ଗ[7] ଦୃଢ଼ ବଳବାନ ହୁଏ ନେତା ଯୋଗ । ୯୩ ।

କ୍ଷମୀ ନୃପ ବ୍ୟାପାରେ, ଶ— କ୍ତିରେ ବର୍ଦ୍ଧମାନ,
ଶକ୍ତି ଅତକ୍ରମାରମ୍ଭ କ୍ଷୟର ନିଦାନ । ୯୪ ।

ଶିଶୁପାଲକୁ ତୁମ୍ଭେ ନ ଦିଅ ଅପମାନ,
ଉଦାତ୍ତର ସ୍ୱର ପର ବନାଶେ ପ୍ରଧାନ । ୯୫ ।

ଏକାକୀ ଚୈଦ୍ୟ ସୁଜୟ ବୋଲ ନ ବଚାର,
ରୋଗେ ଯକ୍ଷ୍ମା ଯଥା ନୃପ— ସମଷ୍ଟି ଅପାର । ୯୬ ।

କୃତଫଳ[8] ସୁସପକ୍ଷ[9] ଶତ୍ରୁ ଭେଦ କ୍ଷମ,
ଗୁଣୀ ର[10] ଶର ସନ୍ଧାନ ଅଛଇ ବିଷମ । ୯୭ ।

---

୧ । ତନ୍ତ୍ର—ସ୍ୱରାଷ୍ଟ୍ର ଚିନ୍ତା, } ଶାସ୍ତ୍ରୌଷଧ ପ୍ରୟୋଗ ।
୨ । ଅବାପ—ପରରାଷ୍ଟ୍ର ଚିନ୍ତା,

୩ । ଯୋଗ—ସାମାଦ ଉପାୟ, ଦେବଧ୍ୟାନ ।

୪ । ମଣ୍ଡଳ—ସ୍ୱପରରାଷ୍ଟ୍ର ।

୫ । ଶକ୍ତି—ପ୍ରଭୁ ଅର୍ଥ ଜନଶକ୍ତି, ବଳ ।

୬ । ଷଡ୍‌ଗୁଣ—ସନ୍ଧି ବିଗ୍ରହାଦ ଛଅ, ଔଷଧ ।

୭ । ଅଙ୍ଗ—ସୈନ୍ୟ, ଗାତ୍ର ।

୮ । କୃତଫଳ—ସମ୍ପାଦିତ ଲାଭ, ଶରାଗ୍ର ।

୯ । ସପକ୍ଷ—ପକ୍ଷପାତୀ, ପରଯୁକ୍ତ, ଶିଶୁପାଳ ।

୧୦ । ଗୁଣୀ—ଶୌର୍ଯ୍ୟାଦ ଗୁଣଶାଳୀ ।

ଶାଲ୍ୱ ରୁକ୍ମି ଦ୍ରୁମ ଆଦ    ସେ କାଳଯବନ,
ଦ୍ରୋହେଚ୍ଛୁ ନୃପେ କରିବେ    ଚୈଦ୍ୟାନୁଗମନ । ୯୮ ।

ବାଣାସୁର ଆଦ ଚୈଦ୍ୟ    ଉତ୍ତେଜନା ପାଇ,
ବାତେ କାଷ୍ଠ ଅଗ୍ନି ସମ    ପ୍ରଜ୍ୱଳିବେ ଯାଇ । ୯୯ ।

କ୍ଷୁଦ୍ର, ବଡ଼ ସାହାଯ୍ୟରେ    କାର୍ଯ୍ୟ ସିଦ୍ଧି କରେ,
ଗିରି ନଦୀ, ମହାନଦୀ—    ସଙ୍ଗେ ସମୁଦ୍ରରେ । ୧୦ ।

ଚୈଦ୍ୟ ମିତ୍ର ତବ ଶତ୍ରୁ    ଦୁଇ ଶ୍ରେଣୀ ଭୂପ,
ମିଶିବେ ଚୈଦ୍ୟ ସଙ୍ଗରେ    ଅନ୍ୟେ ଅନ୍ୟ ରୂପ । ୧୦୧ ।

ସର୍ବ ନୃପ ସଙ୍କ୍ଷୋଭିତ    ହେଲେ ଏହି ଯାଗ,-
ବନ୍ଧ ହେବ, ତୁମ୍ଭ ଦ୍ୱାରା    ପାର୍ଥ ଶତ୍ରୁ ଆଗ । ୧୦୨ ।

ତୁମ୍ଭଙ୍କୁ ସହାୟ ପାଇ    ଯଜ୍ଞ ସର୍ବ ଭାର,-
ସମର୍ପିବ ବୋଲି ପାର୍ଥ    ଆନନ୍ଦ ଅପାର । ୧୦୩ ।

ଶରଣାଗତ ଶତ୍ରୁକୁ    ସାଧୁ ଦୟା କରେ,
ସପତ୍ନୀ ନଦୀକୁ ସିନ୍ଧୁ    ତେଜେ ସମୁଦ୍ରରେ । ୧୦୪ ।

ଦଣ୍ଡେ ବଶୀଭୂତ ହୁଏ    ସୁଦୁର୍ଦ୍ଦାନ୍ତ ଅରି,
କମନା ମିତ୍ରକୁ ହୁଏ    ଆୟୁତ୍ତ ନ କରି । ୧୦୫ ।

ଦେବ ତୁଷ୍ଟି ପାଇଁ ଅରି—    ବଧ ଯଦି ଶ୍ରେୟ,
ହବଭୋଜଙ୍କର ଯଜ୍ଞ—    ହାନିରେ ଅଶ୍ରେୟ । ୧୦୬ ।

ସୁଧା, ସାଧୁମନ୍ତ୍ର ଜହେ    ଯା କଟରେ ହବନ,
ମନ୍ଦରେ ମନ୍ଥନ ଆଦ    ସମୁଦ୍ର ବର୍ତ୍ତନ । ୧୦୭ ।

ତବ ପୁତ୍ର ଶତ ଦୋଷ    କରିବ ସହନ,
ବୋଲି, ପିତୃଷ୍ୱସା ସତ୍ୟ    କର ହେ ପାଳନ । ୧୦୮

ସାଧୁର ଧୀ ତୀକ୍ଷ୍ଣ, ଅଛୁ—    ଲୁଦ୍ଧ ନୋହେ ଶାନ୍ତ,
ଉଷ୍ମ ମନଃ ଅସନ୍ତାପୀ    କଥାଟି ଅଭ୍ରାନ୍ତ । ୧୦୯ ।

ଦବା ସୂର୍ଯ୍ୟ ପରି ନିଜ—    କୃତ ଅନୁଗ୍ରହ,
ଅବଧି ପର୍ଯ୍ୟନ୍ତ ଚୈଦ୍ୟେ    ନ କର ନିଗ୍ରହ । ୧୧୦ ।

କାର୍ଯ୍ୟଙ୍କ ଦୂତରେ ତୀର୍ଥେ¹ ପଦକ୍ଷେପ କରି,
ଶତ୍ରୁ ଜଳ ତଳରେ ପ୍ର— ବେଶ ପାରେ କରି । ୧୧୧ ।

ସୁବ୍ରପଦନ୍ୟାସ² ସଦ— ବୃତ୍ତି³ ନିବନ୍ଧନ⁴,
ରାଜନୀତି ଅଦ୍ଭୁତ, ନ ଶୋଭେ ବ୍ୟାକରଣ । ୧୧୨ ।

ଅଜ୍ଞାତ ଦୋଷେ ଦୋଷଙ୍କ ଉଭୟ ବେତନେ,
ଶତ୍ରୁ ସଙ୍ଗ ଭେଦ ଆଗେ ରଖିଥାଅ ମନେ । ୧୧୩ ।

ତବ ଦୂତ ମୁଖୁଁ ବୁଝି ସୁଗୁପ୍ତ ସନ୍ଦେଶ,
ଇନ୍ଦ୍ରପ୍ରସ୍ଥେ ନୃପ ସର୍ବେ କରିବେ ପ୍ରବେଶ । ୧୧୪ ।

ପାର୍ଥେ ଭୀଷ୍ମଠାରେ ସର୍ବେ କରିବେ ଭକତି,
ଶତ୍ରୁଗଣ ଦେଖି ଦ୍ୱେଷେ ବଳାଇବେ ମତି । ୧୧୫ ।

ଶତ୍ରୁ ମଧ୍ୟେ ପିକ, କାକ ପାଳିତ ପରାୟ,
ନୃପେ ଅନ୍ୟ ପକ୍ଷ କେତେ ହେବ ତା ସହାୟ । ୧୧୬ ।

ଦୁର୍ବିନୀତ ଦୃପ୍ତ ଶତ୍ରୁ ଦୁର୍ବଳଙ୍କୁ ଧରି,
ତବ ତେଜାଗ୍ନିରେ ପଡ଼— ନ୍ତୁ ପତଙ୍ଗ ପରି । ୧୧୭ ।

ନୟମାର୍ଗଗାମୀ ବିବେଚିତ ଅର୍ଥ
ଉଦ୍ଧବଙ୍କ ବାଣୀ ଶ୍ରବଣ କରି,
ଦର୍ନୀତ ମୋଚନେ ଆନନ୍ଦିତ ହରି
ଶ୍ରୀଙ୍କି ହୃଦୟରେ ଧାରଣ କରି । ୧୧୮ ।



୧ । ତୀର୍ଥ — ମନ୍ତ୍ରୀ, ତୀର୍ଥସ୍ଥାନ ।
୨ । ସୁବ୍ରପଦନ୍ୟାସ — ଗୁପ୍ତ ଦୂତଙ୍କ ସଦବ୍ୟବହାର, ସୂତ୍ରାକ୍ଷର ବୃତ୍ତିବ୍ୟାଖ୍ୟାନ ଗ୍ରନ୍ଥବିଶେଷ ।
୩ । ସଦ୍ବୃତ୍ତି — ଅମାତ୍ୟାଦିଙ୍କର ଜୀବିକା, କାଶିକାଖ୍ୟସୂତ୍ରବ୍ୟାଖ୍ୟାନ ଗ୍ରନ୍ଥବିଶେଷ ।
୪ । ନିବନ୍ଧନ — ଭୂମି ନିବନ୍ଧନ, [illegible] ।

## ତୃତୀୟ ସର୍ଗ

କୌବେର[1] ଦିଗ୍‌ଭାଗକୁ ତେଜି
ଅଗସ୍ତ୍ୟମାର୍ଗ[2] ଧରି,
ଶାନ୍ତକ୍ରୋଧ, ଇନ୍ଦ୍ରପ୍ରସ୍ଥକୁ
ତହୁଁ ଗମିଲେ ହରି । ୧ ।

ଜଗତପୂଜ୍ୟଙ୍କୁ ଜଗତ—
ଧବଳ ପାଦେ କାହିଁ,
ସ୍ପର୍ଶ ଯୋଗ୍ୟ ଅର୍କ, ପୂର୍ଣ୍ଣେନ୍ଦୁ
ଦେଲେ ଛବି ଉଠାଇ । ୨ ।

ହରି ବେଣୀ ପାର୍ଶ୍ୱେ ସ୍ୱର୍ଗଙ୍ଗା
ପତିତା ସମୁଦ୍ରରେ,
ବସନ୍ତନ୍ତୁ ଶୁଭ୍ର ଭ୍ରମର
ଶୋଭା ଧାରଣ କରେ । ୩ ।

ହରଙ୍କ ମୁକୁଟର ରତ୍ନ—
ଗଣ ବନ୍ଧୁବରଣ,
ମଣିଶୋଭୀ ଗୋବର୍ଦ୍ଧନର
କରେ ଅନୁକରଣ । ୪ ।

କୁଣ୍ଡଳ ମରକତମଣି—
ପ୍ରଭା ବକ୍ଷେ ପଡ଼ନ୍ତ,
ବାଲ୍ୟାଭ୍ୟସ୍ତ ବର୍ହି-ବର୍ହର
ମାଳାପରି ଶୋଭନ୍ତ । ୫ ।

---

୧ । କୌବେର — ଦିଗ୍‌ବର, ଉତ୍ତରାପଥ ।
୨ । ଅଗସ୍ତ୍ୟମାର୍ଗ — ଦକ୍ଷିଣାପଥ ।

ମନ୍ଦର କୂଟ ସଙ୍ଘର୍ଷଣ
ଶାଣ ମଣିଗଣର,
ଦ୍ୱିଗୁଣ ପ୍ରଭା ଧରି ଶୋଭେ
କେୟୂର ନିରନ୍ତର । ୬ ।

ଲୋହିତ ବଳୟେ ଜଡ଼ିତ—
ପଦ୍ମରାଗର କାନ୍ତି,
ହିରଣ୍ୟ ବିଦାରଣ ରକ୍ତ—
ସିକ୍ତ ପରାୟେ ଭ୍ରାନ୍ତି । ୭ ।

ତମାଳ ନୀଳ ମୁକ୍ତାମାଳା
ହରି ବକ୍ଷେ ଶୋଭିତ,
ସ୍ୱର୍ଗଙ୍ଗା ଦ୍ୱିଭଙ୍ଗେ ବ୍ୟୋମରେ
ପଡ଼ିଲେ ଉପମିତ । ୮ ।

ସମୁଦ୍ରର ସାର କୌସ୍ତୁଭ
ବିରାଜେ ଉରସ୍ଥଳେ,
ଲୋକ ପ୍ରଭବମ୍ବେ ପ୍ରତ୍ୟକ୍ଷ
ଅନ୍ତର୍ଗତ ସକଳେ । ୯ ।

ଆପାଦଲମ୍ବି କଟିସୂତ୍ର
ମୁକ୍ତାଜାଲେ ଗୁମ୍ଫିତ,
ଅଙ୍ଗୁଷ୍ଠ ଜାତ ତ୍ରିସ୍ରୋତା କି
ଊର୍ଦ୍ଧ୍ୱକୁ ପ୍ରବାହିତ । ୧୦ ।

ଇନ୍ଦ୍ରନୀଳମଣି ମୂରତି
ବସ୍ତ୍ର ପିଶଙ୍ଗାକାର,
ପଦ୍ମରଜେ ଯମୁନା ଜଳ
ଶବଳବର୍ଣ୍ଣ ପ୍ରକାର । ୧୧ ।

ଆଭରଣଧାରୀ ହରିଙ୍କ
ଲକ୍ଷ୍ମୀ୧ ଦଶଇ ଭିନ୍ନ,
ଏ ଲକ୍ଷ୍ମୀ ସର୍ବଲୋକପ୍ରିୟା
ଅନ୍ୟା ହେବୁଁ ଅଭିନ୍ନ । ୧୨ ।

---

୧ । ଲକ୍ଷ୍ମୀ—ଶୋଭା ।

ସର୍ବାଙ୍ଗସଙ୍ଗିନୀ ହେବାକୁ
ଏହି ଲକ୍ଷ୍ମୀଙ୍କ ହର,
ଚେତକ, ନିଶ୍ଚିନ୍ତ ହେଲେ ସୁଖେ
ରମାଙ୍କୁ ହୃଦେ ଧରି । ୧୩ ।

ଦୈତ୍ୟ[୧]ହୃଦ୍ରବଦାରି ନଖେ
ଯେତ କଠିନ ସ୍ତନ—
ଧାରଣୀ, ବେଢ଼ିଲେ ହରିଙ୍କି
ଆସି ରମଣୀଗଣ । ୧୪ ।

କୁଚ ଗୁଚ୍ଛଭାରେ ନମିତ—
ମଧ୍ୟା କାମିନୀଗଣ,
ନିଜ ନିଜ ଅଙ୍ଗ ସୌନ୍ଦର୍ଯ୍ୟ—
ଗର୍ବେ ଭୁଲୁ କମନ । ୧୫ ।

ଯେ ନାରୀଙ୍କି ହରି ଦେଖିଲେ
ଲଜ୍ଜା ନମ୍ର ବଦନ,
ଅନ୍ୟସ୍ତ୍ରୀ ଇର୍ଷାରେ ହରିଙ୍କୁ
ନେତ୍ର-ବାଣ ବର୍ଷଣ । ୧୬ ।

ଶ୍ୟାମ ହରି କରେ ଚନ୍ଦ୍ରାଂଶୁ—
ତେଜା ଚକ୍ର ଶୋଭିଲା,
ଯମୁନାଜଳେ ମହାବର୍ତ୍ତ
ପରି ତହିଁ ଦିଶିଲା । ୧୭ ।

ଶତ୍ରୁ ବିଦାରଣେ ସମର୍ଥ
କାହିଁ ମୋଘ ସମରେ,
କୌମୋଦକୀ ଚେତେ ହରିଙ୍କ
ବିରାଜେ ଅନ୍ୟ କରେ । ୧୮ ।

---

୧ । ଦୈତ୍ୟ—ହିରଣ୍ୟକଶିପୁ ।

ଶତ୍ରୁ ଶିର ଛେଦ ଆନନ୍ଦ
ଦିଏ ମହାସମରେ,
ତେଣୁ ନନ୍ଦକଖ୍ୟାତ, ଶୋଭେ
ହରି ପୃଥକ କରେ । ୧୯ ।

ଅନ୍ୟ, ଆକର୍ଷଣେ ଅକ୍ଷମ
ଯୁଦ୍ଧକାଳରେ ବ୍ୟସ୍ତ,
ଶାର୍ଙ୍ଗନାମ ଧନୁ ସଲଗ୍ନେ
ଶୋଭା ହରିଙ୍କ ହସ୍ତ । ୨୦ ।

ପ୍ରଳୟାମ୍ବୁଦ ମନ୍ଦ୍ରନାଦୀ
ହଂସ କୃଷ୍ଣାର୍ଣ୍ଣବରେ;
ଦୈତ୍ୟଜ ପାଞ୍ଚଜନ୍ୟ ଶଙ୍ଖ
ଶୋଭେ ହରି ପାର୍ଶ୍ୱରେ । ୨୧ ।

ଇଷ୍ଟ ସିଦ୍ଧିପାଇଁ ସକଳ—
ଦିଗ ଗମନ ପର,
ପୁଷ୍ୟାଚନ୍ଦ୍ର ପ୍ରାୟ ଚଢିଲେ
ପୁଷ୍ପ୍ୟ[1]ରଥ ଉପର । ୨୨ ।

ଧ୍ୱଜାଗ୍ର ପ୍ରତିବିମ୍ବ ପଡି
ମଣି କୁଟ୍ଟିମ ପରେ,
ପନ୍ନଗାରି ସର୍ପ ତ୍ରାସାର୍ଥେ
ପଶେ କି ପାତାଳରେ । ୨୩ ।

ହରିଙ୍କ ବିଜୟ ପଟହ—
ନାଦେ ଗିରି ଗହ୍ୱର—
ଧ୍ୱନିତ, ସମୁଦ୍ର ଗର୍ଜନ
ଅନ୍ତର୍ଗୁପ୍ତ ସତ୍ୱର । ୨୪ ।

ଜଗତକରତା ପ୍ରସ୍ଥାନେ
ପାତାଳପୁରେ ଶେଷ,
ସହସ୍ରଫଣା ନତ କଲେ
ଯେଣୁ ଭାର ବିଶେଷ । ୨୫ ।

---

୧ । ପୁଷ୍ପ— ସର୍ବାର୍ଥସାଧକ ।

ତୋରଣେ ବାଜବା ଉମ୍ଭରେ
ସୈନ୍ୟଗଣ କେତନ,
ନମ୍ର କରି ନେଲେ ରଥାଢ଼
ଦେଖି ହରି ଗମନ । ୨୬ ।

ଗଜଦାନ ଜଳେ ପଙ୍କିଳ
କାଞ୍ଚନଭୂମି ରେଣୁ,
ରଥ ସବୁ ଅନେମିମଗ୍ନ
ଗତି ମନ୍ଥର ତେଣୁ । ୨୭ ।

ସୁବର୍ଣ୍ଣଭୂମିରେଣୁ ପାଦା—
ହତେ ଅନୁପ୍ଲବନେ,
ନ ଲଙ୍ଘିଲ ଗୁରୁଜନଙ୍କୁ
ଗୁରୁତା ରଖି ମନେ । ୨୮ ।

ତୁରଗେ ଅଶ୍ୱାରୋହୀ ବଲ୍ଗା—
କର୍ଷଣକୁ ନ ମାନି,
ଗଜ ଲଙ୍ଘନେ ଅଗ୍ରପଦ
ଊର୍ଦ୍ଧ୍ୱେ ରଖନ୍ତି ଆଣି । ୨୯ ।

ଯତ୍ନେ ବଲ୍ଗା ଧରି ରୋଧନ୍ତି,
ଦେଖି ଜନନୀଗଣ,
ଧୂଳିକ୍ରୀଡ଼ାସକ୍ତ ଶିଶୁଙ୍କୁ
ମାର୍ଗୁଁ ଅପସାରଣ । ୩୦ ।

ମୁରାରି ଦଦୃଷ୍ଟୁ ଜନୌଘେ
ପ୍ରତ୍ତ ପ୍ରତୋଳୀ ପୂର୍ଣ୍ଣ,
ପରିଗତେ ମଧ୍ୟ ସୁସ୍ନେହ
ନବତା ଅଣେ ତୂର୍ଣ୍ଣ । ୩୧ ।

ପୁରୀରେ ଦୃଷ୍ଟି ଦେଇ ହରି
ରଥ ମନ୍ଦ ଗମନେ—
ଚଳନ୍ତି, ଅନୀକିନୀପୂର୍ଣ୍ଣ
ବର୍ତ୍ମେ, ଅତି ଯତନେ । ୩୨ ।

ହେମବପ୍ରପ୍ରଭା କକୁଭ
ସମୁଦ୍ର ମଧ୍ୟେ ଶୋଭେ,
ବଡ଼ବାଗ୍ନି ଛଳ ଭେଦ କ
ଜ୍ୱଳେ ଦର୍ଶନଲୋଭେ । ୩୩ ।

ଅଧିଷ୍ଠିତ ଗିରି ସହସ୍ରେ
ଜଳବେଷ୍ଟିତ ମୂର୍ତ୍ତି,
ପୃଥିବୀ ପ୍ରତି ଛାୟା କରି
ଧାତା ମାନସ ପୂର୍ତ୍ତି । ୩୪ ।

ବିଶ୍ୱକର୍ମା ଶିଳ୍ପବିଜ୍ଞାନ—
ନିର୍ମାଣ ଶେଷ ସୀମା,
ଜଳାଦର୍ଶେ ସ୍ୱର୍ଗ ଛାୟା କି
ପ୍ରକାଶଇ ମହିମା । ୩୫ ।

ଅମ୍ବୁଧି ଜାମାତା ହରିଙ୍କୁ
ରତ୍ନରାଜରେ ତୋଷେ,
ସ୍ନେହେ ରତ୍ନ ଧେନୁ ସର୍ବଦା
ସୁତ କି ଅବା ପୋଷେ । ୩୬ ।

ବାରିଧି ଚଞ୍ଚଳ ତରଙ୍ଗେ
ଅଗଣିତ ଶଙ୍ଖକୁଳ,
ବପ୍ରେ ଶୋଭେ, ମେରୁ ସାନୁ କି
ଉଡୁ ଚକ୍ରେ ବ୍ୟାକୁଳ । ୩୭ ।

ଯେଉଁ ପୁଣ୍ୟ ପଣ୍ୟ ଆପଣ
ପୁଞ୍ଜୀକୃତ ରତ୍ନରେ,
ଜଳଧି ଜଳେ୧ ନେଇ ଖ୍ୟାତ
ରତ୍ନାକର ନାମରେ । ୩୮ ।

---

୧ । ଜଳେ – ଜଳନର୍ଗମମାର୍ଗରେ ।

## ତୃତୀୟ ସର୍ଗ

ପୟୋଧି ଜଳାର୍ଦ୍ର ଉତ୍କଣ୍ଠା
ରତ୍ନରାଶିକୁ ନେଇ,
ଆତପେ ଶୁଖାଏ ସନ୍ତତ
ତରଙ୍ଗ ହସ୍ତ ଦେଇ । ୩୯ ।

ସାଗର ଊର୍ମି ଯେ ନଗରୀ—
ଶାଳ୧ ଜୟେଚ୍ଛା କରି,
ନ ପାରି ସମୀପେ ବଲ୍ଗନ
ହୁଏ ଲଜ୍ଜାକୁ ଧରି । ୪୦ ।

ପୁରୀପ୍ରବିବିକ୍ଷୁ୨ ଜଳଦ
ଉଚ୍ଚରେ ନିବାରିତ,
ଅଶ୍ରୁବାରି ବର୍ଷି ଗର୍ଜନ—
ଛଳେ କାନ୍ଦେ ତ୍ୱରିତ । ୪୧ ।

ଦ୍ୱାରକାବାସିନୀ ହେବାକୁ
ଇଚ୍ଛି ଅପ୍ସରାଗଣେ,
ମନୁ ସେବ ସିଦ୍ଧ ନିମେଷ—
ଚିହ୍ନ କରି ଧାରଣ । ୪୨ ।

ଅଭ୍ରଙ୍କଷ ସ୍ଫଟିକ ସୌଧେ
ଚନ୍ଦ୍ରନିଶାରେ ନାରୀ,
ନଭୋଗତ ଅମରୀ ପରି
ଗୌରେ ନ ହୁଏ ବାରି । ୪୩ ।

ଇନ୍ଦୁକାନ୍ତୋପଲନିର୍ମିତ
ଉନ୍ନତ ହର୍ମ୍ୟତଳ,
ଅଧୋଭ୍ରମି ମେଘ, ବ୍ରଜିରେ
ଊର୍ଦ୍ଧ୍ୱେ ପ୍ରଣାଳୀ ଜଳ । ୪୪ ।

---

୧ । ଶାଳ— ପ୍ରାଚୀର ।

୨ । ପ୍ରବିବିକ୍ଷୁ— ପ୍ରବେଶଇଚ୍ଛାକାରୀ ।

ଯେଉଁ ପୁରେ ନାରୀ ଗୃହର
ଦୀପରତେ ଲଜ୍ଜାରେ,
ଲଭନ୍ତି ବୈଦୂର୍ଯ୍ୟ ଭିତ୍ତିକ
ଦେଖି ଡ଼ରେ ଶଯ୍ୟାରେ । ୪୫ ।

ଯେଉଁ ପୁରୀଗୃହ ପୁର୍ଯ୍ଯନ୍ତ
ରତ୍ନଭିତ୍ତି ଉପରେ,
ଚନ୍ଦ୍ର ଲେଖି ନ ପାର ଯୁବା—
ଛାୟା ଶୋଭେ ଚନ୍ଦ୍ରରେ । ୪୬ ।

କଲଧୌତ ଧାମ ସ୍ତମ୍ଭରେ
ବିମ୍ବିତ ନାରୀଗଣ—
ସ୍ମର ପାଣ୍ଡୁଗଣ୍ଡ ଶୋଭେ କି
ଯଥା ମଣି ଦର୍ପଣ । ୪୭ ।

ଯେଉଁ ପୁରୀଗୃହ ଦେହଳୀ
ମରକତ ନିର୍ମିତ,
ତା ପ୍ରଭାରେ ନାରୀ ନ କରେ
ଦ୍ୱାର ଗୋମୟାଙ୍କିତ । ୪୮ ।

ବଲଭୀସ୍ଥିତ ନୀଳକଣ୍ଠେ
ପୁର ଗୃହ ଶୋଭନ,
ମରକତ କାନ୍ତି ତୃଣେ କି
ହୋଇଛୁ ଆଚ୍ଛାଦନ । ୪୯ ।

ନାନାବିଧ ମାଳା ଲମ୍ବିତ
ଚନ୍ଦ୍ର ବିଶାଳ ସଦ୍ମ,
ବିଚିତ୍ର ବିତାନେ ମଣ୍ଡିତ
ଶୋଭେ ମାଣିକପଦ୍ମ । ୫୦ ।

ଗୃହକପୋତପାଲିକାରେ
ଦେଖି କୃତ୍ରିମବସ୍ତୁଃ,
କାଙ୍କ୍ଷୁ ନିଷ୍ଫଳ ମାର୍ଜାର
ଜନେ କୃତ୍ରିମେ ଲମ୍ଫୁ । ୫୧ ।

ନକ୍ଷତ୍ରପଥଅବରୋଧୀହର୍ମ୍ୟ—
ଶୃଙ୍ଗରେ ବଧୂଗଣ,
ଭୂମିଷ୍ଠ ହୋଇ ମୁଖପଦ୍ମେ
ଚନ୍ଦ୍ର ଅଧଃକରଣ । ୫୨ ।

ଯେ ପୁରରେ ସୌଭାଗ୍ୟ ପାଇ
ମୋଦେ ଯୁବକଗଣ,
ବିହରନ୍ତି ବଧୂଙ୍କ ସଙ୍ଗେ
ସଦା ଶୋକ ବିଜନ । ୫୩ ।

ଅକୃତ୍ରିମ ସୁରଭଧାମ
କାମିନୀଙ୍କ ବଦନ,
ମଦ୍ୟଗନ୍ଧେ ପ୍ରତିବାସିତ
ଯୁବା କାମେ ଗମନ । ୫୪ ।

ବିହାରବେଦୀରେ ଅଙ୍ଗନା—
ଗଣ ଶୁଣନ୍ତି ଯହିଁ,
ରତାନ୍ତରେ ପକ୍ଷିକୂଜିତ
ଶବ୍ଦ ଶିକ୍ଷ୍ୟତ୍ୱ ତହିଁ । ୫୫ ।

ସୂକ୍ଷ୍ମ ଅମ୍ବର ଆଚ୍ଛାଦିତ
ନାରୀ କୁଚମଣ୍ଡଳ,
ଫୁଟି ଦିଶେ, ଅକାଶ ସାମ୍ୟ
ନାମେ ଅର୍ଥେ କେବଳ । ୫୬ ।

ଯେଉଁ ଦ୍ୱାରକାରେ ନିଷ୍ପାପ
ନିଷ୍ପପଟତା ସ୍ଥିତ,
ଜନେ କୁଳାଗ୍ଥର ନ ତେଜ
ସଦା ଧର୍ମ୍ମର ଭୀତ । ୫୭ ।

ପରାର୍ଦ୍ଧ୍ୟରୂପିଣୀ କାମିନୀ
ନିର୍ମିଣିଛନ୍ତି ଧାତା,
ଘୁଣାକ୍ଷର ଦୋଷ ନାହିଁ ଶ୍ରୀ,
ଯହିଁ ଜଗତପାତା । ୫୮ ।

ଯେଉଁ ପୁରେ କଳ୍ପପାଦପ
ବାଞ୍ଛିତ କରେ ଦାନ,
ପୌରଜନ ସୁଖ ଭୋଗନ୍ତି
ଦେବେନ୍ଦ୍ରଙ୍କ ସମାନ । ୫୯ ।

ସକଳକଳା୧, ସୌଧ ଶୁଭେ
ଦିଗ ପ୍ରକାଶ କରେ,
ନବୌହ୍ଣେଷୁ ରୋହ୍ଣୀଶ
ପୁଷ୍ଟି ତ୍ୟାଗ ସ୍ନେହରେ । ୬୦ ।

ବାଣ୨ ଯୁଦ୍ଧେ ଶମ୍ଭୁଙ୍କ ତେଜ
ଭଙ୍ଗିବାରୁ ଶ୍ରୀହର,
ନିଃଶଙ୍କେ କାମ କୈଳବାଣ
ବନ୍ଦେ ପୁରେ ବଚର । ୬୧ ।

ହର୩ ଅଧିଷ୍ଠିତ ଦ୍ୱାରକା
ଶିବ୪ ମରୁତଗଣେ୫,
ମେରୁସ୍ଥ ଅମରାବତୀକ
ମାନସେ ତୁଚ୍ଛ ମଣେ । ୬୨ ।

ଯେଉଁ ପୁରେ ହର ନିବାସ
ସର୍ବ ସମ୍ପଦେ ପୂର୍ଣ୍ଣ,
କାମିନୀ ସୌନ୍ଦର୍ଯ୍ୟେ ଅମରୀ—
ଗଣ ଲଜ୍ଜିତା ତୂର୍ଣ୍ଣ । ୬୩ ।

ଇନ୍ଦ୍ରଧନୁ ଶୋଭା ବିବିଧ—
ମଣି କାଞ୍ଚନ ସ୍ତମ୍ଭେ,
ପୂର୍ବଦ୍ୱାରେ ହର ପ୍ରବେଶ,
ଶତ୍ରୁ ନ ପଶେ ଦମ୍ଭେ । ୬୪ ।

---

୧ । କଳା – ଚତୁଃଷଷ୍ଠୀ କଳା, ଷୋଡ଼ଶ କଳା ।
୨ । ବାଣ – ବାଣାସୁର । ୩ । ହର – ଶ୍ରୀକୃଷ୍ଣ, ଇନ୍ଦ୍ର ।
୪ । ଶିବ – ଧୀର, ସଜ୍ଜନ । ୫ । ମରୁତଗଣ – ପବନ, ଶିବଗଣ ।

ବସ୍ତ୍ର ଅଙ୍ଗୁ ପ୍ରଜା ଶମ୍ଭୁଙ୍କ—
କଟାରୁ ଗଙ୍ଗାଧାର,
ଧାତାସୁଁ ବେଦ ପରହର—
ସେନା ପୁରୁଁ ବାହାର । ୬୫ ।

ପଦ ଛନ୍ଦାଛନ୍ଦ ଘର୍ଷିତ
ମୁଖରୁ ବଲ୍ଗା ଖସି-
ପଡ଼େ, ଅଶ୍ୱବାର ବାହାର
କଷ୍ଟେ ଅଶ୍ୱରେ ବସି । ୬୬ ।

ଗଜଘଟାପୂର୍ଣ୍ଣତମରେ
ଅଜ୍ ନ ଦଶେ ପଥ,
ସୈନ୍ୟ ତେଜଦୀପ ପରାୟେ
ପୂରାଏ ମନୋରଥ । ୬୭ ।

ସାରଥି ବଲ୍ଗାକର୍ଷଣକୁ
ନ ମାନି ଟାଣି ରଥ,
ପୁରଦ୍ୱାରୁ ବାହାର ଅଶ୍ୱେ
ଦ୍ରୁତ ଧଇଲେ ପଥ । ୬୮ ।

ପଥ ଭୁଜବଳୟ ମଧ୍ୟୁଁ
ହରଙ୍କ ନାସ୍ତ୍ରମଣେ,
ଭୂମିରେ ଦ୍ୱାରବତୀ ନାମ
ସାର୍ଥ ନ ହେଲା ଯଣେ । ୬୯ ।

ଉତ୍କୁଳାତ ଉର୍ମି ସହସ୍ର
ଶୈବାଳ ଅଭ୍ର ନୀର,
ହର ହରତବନଶୋଭୀ
ଦେଖିଲେ ସିନ୍ଧୁତୀର । ୭୦ ।

ଶ୍ରୀସଙ୍ଗତ ଅମ୍ଭୋଧି ତଟେ
ନୀରଦ ନୀଳବର୍ଣ୍ଣ,
ଲତାବେଷ୍ଟିତ ଦ୍ରୁମରାଜ
ହର ଦେଖି ପ୍ରସନ୍ନ । ୭୧ ।

ଭୂମିରେ ପଡ଼ି ଊର୍ମିହସ୍ତ
ପିଟେ, ଫେନବମନ,
ସିନ୍ଧୁକୁ ଦେଖି ଅପସ୍ମାରୀ
ହରି ଭାବିଲେ ମନ । ୭୨ ।

ଲୋଭେ ଜଳ ପିଇ ଉଦରେ
ସିନ୍ଧୁ ରଖି ନ ପାରି,
ବୃଦ୍ଧି ଚନ୍ଦ୍ରୋଦୟେ ଦେଖନ୍ତି
ହରି ଉଦରବ୍ୟାଧି । ୭୩ ।

ଯେ ମେଘ ଗର୍ଜି ବୃଷ୍ଟିଜଳେ
ପୃଥ୍ୱୀ କରେ ପ୍ଲାବନ,
ସେ ମେଘ ଅବ୍ଧି ଏକ କୋଣୁ
କରେ ଜଳ ଗ୍ରହଣ । ୭୪ ।

ମୁନୀନ୍ଦ୍ର ବେଦରୁ ସଂହିତା—
ପରି ସମୁଦ୍ରୁଁ ଜଳ-
ନେଇ, ନଦୀ ରୂପେ ସମୁଦ୍ରେ
ପୁଣି ପଡ଼େ ସକଳ । ୭୫ ।

ଅର୍ଣ୍ଣବ ପୋତେ ସଯାନିକେ[୧]
ବହୁ ଦ୍ରବ୍ୟ ସହିତ,
ଆସି ଦ୍ୱୀପେ ବାଣିଜ୍ୟକାରୀ
ଦେଖି ହରି ହର୍ଷିତ । ୭୬ ।

ସମୁଦ୍ର ଗର୍ଭୁଁ ଉଠିବାକୁ
ସର୍ପେ ଶ୍ୱାସବାତରେ
ହରିଧ୍ୱଜା ପରି ଜଳକୁ
ଆନ୍ଦୋଳନ୍ତି ସଦ୍ଭରେ । ୭୭ ।

ନିକଟେ ଯୁଗାନ୍ତ ବନ୍ଧୁଙ୍କୁ
ଦେଖି ତରଙ୍ଗ ହସ୍ତ-
ପ୍ରସାରଣ କରି ସାଗର
ହରି ସାକ୍ଷାତେ ବ୍ୟସ୍ତ । ୭୮ ।

୧ । ସଯାନିକ—ପୋତବଣିକ୍ ।

ଏଲାଲତା ଘର୍ଷଣ ଗନ୍ଧ
ଜଳକଣା ପବନ-
ଘେନ, କୂଳଗାମୀ ହରିଙ୍କ
ସ୍ୱେଦ କରେ ଗ୍ରହଣ । ୭୯ ।

ଭୃଙ୍ଗ ତାଳୀବନେ କେତକୀ
ସମୀର ସୀମନ୍ତିତ,
ଲବଣସିନ୍ଧୁ କଚ୍ଛଦେଶେ
ସୈନ୍ୟେ ଗଲେ ତ୍ୱରିତ । ୮୦ ।

ଲବଙ୍ଗପୁଷ୍ପେ ଅବତଂସ
ପିଇ ପଇଡ଼ଜଳ,
ପୂର୍ବେ, ସିନ୍ଧୁଠାରୁ ଆତଥ୍ୟ
ପ୍ରାପ୍ତ ସୈନ୍ୟ ସକଳ । ୮୧ ।

ଅସଂଖ୍ୟ ତୁରଗେ ଚୂର୍ଣ୍ଣ କରି ଗିରି
ଚଳିଲେ ହରିଙ୍କ ବଳ,
ପାରିବାର ଯୁଗ୍ମ ମଳିନ ଦିଶିଲା
ଶ୍ରୀହରି ଶୋଭା ସକଳ । ୮୨ ।



# ଚତୁର୍ଥ ସର୍ଗ

ଭୂମି ଭେଦ ସର୍ପ— ଶ୍ୱାସ ଧୂମ ପର
ମିଳିତ ନାନା ବରଣ,
ହବ ରୈବତକ ଗିରି ନିରେଖିଲେ
ଉତ୍ଥିତ ରତ୍ନକିରଣ । ୧ ।

ବୃହତ ପାଷାଣ ଉପରି ଉପରି
ଉନ୍ନମିତ ଜଳଧର,
ବିନ୍ଧ୍ୟଗିରି ପରି ରୋଧିବାକୁ ଇନ-
ମାର୍ଗ ହୁଏ କି ତତ୍ପର । ୨ ।

ବିବିଧ ରତ୍ନର କିରଣ କାଞ୍ଚନ-
ସାନୁର କିରଣେ ମିଶେ,
ଲତାହୃତ ଭୃଙ୍ଗ ଶକ୍ରବର୍ଣ୍ଣେ ଭ୍ରମେ
ପଡ଼ି କି ଅଦ୍ଭୁତ ଦଶେ । ୩ ।

ସହସ୍ର ଶିରରେ[୧] ଗଗନ ପାଦରେ[୨]
ଭୂମି ବ୍ୟାପି ଯହିଁ ସ୍ଥିତ,
ଅର୍କ ଇନ୍ଦୁ ଯାର ନେତ୍ରୀକୃତ ହୁଏ
ହିରଣ୍ୟଗର୍ଭ[୩] ପ୍ରତୀତ । ୪ ।

ଜଳାପାତ୍ରେ ଏକ— ଦେଶ ଶୁଭ୍ର ଅଭ୍ର
ଧୌତ ଉତ୍ତରୀୟ ପରି,
ଅର୍ଦ୍ଧ ଅଙ୍ଗେ ଉମା ଅର୍ଦ୍ଧ ଭସ୍ମଲିପ୍ତ
ଶୋଭେ କିବା ସ୍ମରଅରି । ୫ ।

---

୧ । ଶିରରେ—ମସ୍ତକରେ, ଶୃଙ୍ଗରେ ।

୨ । ପାଦରେ—ଚରଣରେ, ପ୍ରାନ୍ତ ପର୍ବତରେ ।

୩ । ହିରଣ୍ୟଗର୍ଭ—ବ୍ରହ୍ମା, ନଥଗର୍ଭ ।

ନିଜନାସ୍ତ ଚଞ୍ଚୁ— ଲାଳସୀ ଯେ ଖଗ
ଚଞ୍ଚୁଲାଳସୀ ମଦରେ,
ପିଞ୍ଜରିତ ଦଳ ସରସୀ ଜଳଜ
ଅତପନେ ଛାୟା କରେ । ୬ ।

ସ୍କନ୍ଧ-ଅଧିରୂଢ଼ ନୀଳକଣ୍ଠଶୋଭୀ
ଅଦ୍ରୀନ୍ଦ୍ରେ ଦେହ ଜଡିତ,
ବହୁ ଲତା ଭୁଜ— ନର୍ତ୍ତିତ, ଅନେକ
ରୁଦ୍ର ପର ବୃକ୍ଷ ସ୍ଥିତ । ୭ ।

ନୀଳୋତ୍ପଳ କର୍ଣ୍ଣ— ଅବତଂସ ଯାର
ଲୋଧ୍ର ରେଣୁରେ ଧବଳ,
ନାସ୍ତ ପର କେଶ— ଦଳ, ଧବ ସ୍ଥିତ
ଶୈବଳନୀ ଶୁଦ୍ଧଜଳ । ୮ ।

ରାଜୀବରାଜିର ବଶ ଭୃଙ୍ଗ, ତରୁ-
ରାଜ ତୀବ୍ରାତପ ହରେ,
ସୁନ୍ଦରୀ ଅମରୀ ରୈବତକ ଶିଷ୍ଟ
ରାକ୍ଷସ, ଧାରଣ କରେ । ୯ ।

ହର ତୋଷେ ଦେବେ ମେରୁ ଶୃଙ୍ଗ ଅଣି
ଉଇତା ଶୋଭା ବର୍ଦ୍ଧନ,
ଅତ୍ୟୁଦ୍ଧାମ ବାଣୀ— କବଙ୍କର କେବେ
ମିଥ୍ୟା ହୁଏ କି ବର୍ଣ୍ଣନ । ୧୦ ।

ପ୍ରଭୂତ ରତ୍ନର ଉତ୍ପତ୍ତି କାରଣେ
ଭୂଧର କି ରତ୍ନ ଧନ,
ବଣିକ ନିକଟୁ ବ୍ୟବହାର ପର
ସର୍ବେ କରନ୍ତି ଗ୍ରହଣ । ୧୧ ।

ପାଶେ ତୀବ୍ର ତାପ— ରବିଧାରୀ ହେଲେ-
ମଧ୍ୟ ଅରବିନ୍ଦଧାରୀ,
ମଧୁପାୟୀ ଭୃଙ୍ଗ— ମାନଙ୍କର ତେଣୁ
ନ ହେଲେ ପୀଡ଼ନକାରୀ । ୧୨ ।

ରୌପ୍ୟ ଗଣ୍ଡଶୈଳ ଉପରେ ସହସ୍ର-
ପୁଷ୍ପ ଅକ୍ଷି ତରୁରାଜ,
ଶୋଭେ, ଐରାବତ ଉପରେ ସୁରେନ୍ଦ୍ର
କରଛନ୍ତି କି ବିରାଜ । ୧୩ ।

ଅରୁଣବର୍ଣ୍ଣକୁ ମରକତ ମଣି-
ବର୍ଣ୍ଣରେ ବିଭିନ୍ନ କରି,
ସୂର୍ଯ୍ୟ ସାରଥିଙ୍କୁ ସ୍ପର୍ଶ କରେ ଗିରି
ମହୋନ୍ନତ୍ୟ ଅଛି ଧରି । ୧୪ ।

ଅମ୍ବୁବାହ ଅମ୍ବୁ— ବର୍ଷଣେ ସନ୍ତତ
ସିକ୍ତ ରୈବତକ ଗିରି,
ମହୀରୁହ ଲଗ୍ନ ପନ୍ନଗ ବିଷାଗ୍ନି-
ଦ୍ୱାରା ହତ ନୋହେ ଶିରି । ୧୫ ।

ଚଣ୍ଡକର ତୀବ୍ର ତେଜକୁ ନ ସହି
ସୂର୍ଯ୍ୟକାନ୍ତ ଉଠେ ଜଳି,
ତେଜସ୍ୱୀ କି କାହା ତେଜ ସହିପାରେ ?
ବଳ ସହେ କିବା ବଳୀ ? । ୧୬ ।

ବହୁବାର ଦୃଷ୍ଟ ହୋଇଥିଲେ ସୁଦ୍ଧା
ଗିରି ଦେଖାଏ ନୂତନ,
କ୍ଷଣେ କ୍ଷଣେ ଯାହା ନୂତନତା ଧରେ
ତା, ରମଣୀୟ ଲକ୍ଷଣ । ୧୭ ।

ରମଣୀୟ ଶୈଳ ଦର୍ଶନେ ଉତ୍ସୁକ
ଉଦ୍‌ଗ୍ରୀବ ଶୌରିଙ୍କୁ ଚୁହିଁ,
ବାକ୍‌ପଟୁ ଦାରୁକ ଅବସର ଦେଖି
କହେ ବଚନ ଫିଟାଇ । ୧୮ ।

ଅଚ୍ଛାଦିତ ଯେଣୁ ଦିଗମ୍ବର[1] ଭଙ୍ଗି
ଶୃଙ୍ଗ[2] ଗୌ[3],କ ଧର ସ୍ଥିତ,
ଚନ୍ଦ୍ରକଳା ଶିରେ ନଗେଶ[4] ଦେଖି କେ
ନ ହେବ ବିସ୍ମୟାନ୍ୱିତ । ୧୯ ।

ସୂର୍ଯ୍ୟଙ୍କ ଉଦୟ ଚନ୍ଦ୍ରଙ୍କର ଅସ୍ତ
ଗିରି ବକ୍ଷ ପ୍ରଦେଶରେ,
ଲମ୍ବମାନ ଘଣ୍ଟା— ଦ୍ୱୟ ପରି ଶୈଳ
ବାରଣେନ୍ଦ୍ର ଲୀଳା ଧରେ । ୨୦ ।

ଦୂର୍ବାଦଳ ପୁଣି ସ୍ୱର୍ଣ୍ଣସ୍ଥଳୀ କାନ୍ତି
ଅଚଳ କରି ଧାରଣ,
ହରିତାଳ ବର୍ଣ୍ଣ— ଅଂଶୁକୀ ହରଙ୍କ
କରେ କ ଅନୁକରଣ । ୨୧ ।

ସାନୁମାନ ସାନୁ— ସ୍ଥିତ ସର୍ବେ ମୋଦେ
ଚନ୍ଦ୍ରମାଙ୍କ ପଛଭାଗ,
ଲଲନା ଲପନ— ପରି ନିଷ୍କଳଙ୍କ
ଦେଖନ୍ତି ବହୁ ସରାଗ । ୨୨ ।

ଭୃଗୁପାତୀ ନର— ପରି ନିର୍ଝରିଣୀ
ଶିଳାରେ ହୋଇ ପତିତ,
ସୁରର୍ତ୍ତ ଖେଚରୀ— ଗାନ ଜ୍ୱାଳା ସଦା
କରୁଥାଏ ନିର୍ବାପିତ । ୨୩ ।

କାହିଁ ବାରିଧର ଗୃତକର ତୃଷା
କରୁଥାଏ ନିବାରଣ,
ବିଜୁଳି ଛଟକେ କନକ ସ୍ଥଳରେ
କାହିଁ ସବିତା କରଣ । ୨୪ ।

---

୧ । ଦିଗମ୍ବର—ଦିଗ ଏବ ଆକାଶ; ଦିଗ୍‌ବସ୍ତ୍ର ।
୨ । ଶୃଙ୍ଗ—ପର୍ବତଶିଖର, ଉଚ୍ଚବିଷାଣ ।
୩ । ଗୌ—ପୃଥିବୀ, ବୃଷ ।
୪ । ନଗେଶ—ପର୍ବତଶ୍ରେଷ୍ଠ, କୈଳାସନାୟକ ଶିବ ।

ଶୈଳବକ୍ଷୁଁ ଚନ୍ଦ୍ର— କର ଶୃଙ୍ଗେ ପଡ଼ି
ଅଧସ୍ଥ ତାରକାଗଣ,
ଦିଶୁଥାନ୍ତି ସାନୁ— ସ୍ଥିର ଶିଳାଘାତେ
ବିକୀର୍ଣ୍ଣ କି ଅମ୍ବୁକଣ । ୨୫ ।

ଶୈଳ ଏକଦେଶେ ସ୍ଫଟିକ ତଟରେ
ପଡ଼ି ଗିରି ନିର୍ଝରଣୀ,
ଅନ୍ୟେ, ମରକତେ ମିଶି ହେଲେ ଗଙ୍ଗା-
ଯମୁନା ଶୋଭା ଧାରଣୀ । ୨୬ ।

ମେରୁ ଶୃଙ୍ଗ ସମ ରୈବତକ ଶୃଙ୍ଗେ
ଥିବାରୁ ବିବିଧ ରତ୍ନ,
ସୁରନାରୀ ପରି ପତି ସଙ୍ଗେ ନାରୀ
ବିହରନ୍ତି ଲଭି ଯତ୍ନ । ୨୭ ।

ସୁଧାଲେପ ବର୍ଣ୍ଣ ଦୁର୍ବର୍ଣ୍ଣ ଭିତରେ
ସୁବର୍ଣ୍ଣର ରେଖାରାଜି,
ସ୍ମର ପାଇଁ, ଭସ୍ମ— ଲିପ୍ତ ଶିବଙ୍କର
ନେତ୍ର ଅଛି କି ବିରାଜି । ୨୮ ।

ପର୍ବତ କଟଠା[୧] ଗୁର୍ବୀ[୨], ବିଲମ୍ବିତ-
ପୟୋଧର[୩]ରେ ଆବୃତ,
ପ୍ରାଣିଙ୍କ ଅଗମ୍ୟ[୪] ପରିଣତ[୫] ଦଶନ[୬]-
କରକା[୭]ରେ ସୁସଂବୃତ । ୨୯ ।

---

୧ । କଟଠା—କଠିନ, ଦୃଢ଼ ।
୨ । ଗୁର୍ବୀ—ଶ୍ରେଷ୍ଠା, ସ୍ଥୂଳତା ।
୩ । ପୟୋଧର—ମେଘ, ସ୍ତନ ।
୪ । ଅଗମ୍ୟ—ଦୁରାରୋହ, ବୃକ୍ଷ ହେତୁରୁ ଗମନାଯୋଗ୍ୟ ।
୫ । ପରିଣତ—ଦନ୍ତପ୍ରହାର, ଖଣ୍ଡିତ ।
୬ । ଦଶନକରକା—ଦନ୍ତଜ, ଦଶନକ୍ଷତ ।
୭ । କରକା—ନଖକ୍ଷତ ।

ଅଗ୍ନି ତୁଲ୍ୟ ବର୍ଣ୍ଣ    କାଞ୍ଚନ ଶୃଙ୍ଗରେ
ଭ୍ରମର ଲୀନ କୁସୁମ-
ପୂର୍ଣ୍ଣ ଦ୍ରୁମରାଜ    ଚେର ପ୍ରାୟ କ ବା
ବହ୍ନିରୁ ଉଦ୍ଗତ ଧୂମ । ୩୦ ।

ପୁଷ୍ପିତ ଚମ୍ପକ—    ପୁଷ୍ପ ପିଙ୍ଗବର୍ଣ୍ଣ
ସ୍ୱର୍ଣ୍ଣଶୃଙ୍ଗ ଶୋଭମାନ,
ଭାରତ, ସୁମେରୁ—    ନିତମ୍ବ ଶୋଭିତ
ଇଳାବୃତର ସମାନ । ୩୧ ।

ତୁଷାର ସହିତ    ଲୋମଶାଳୀ ମୃଗେ
ବିଚରନ୍ତି ଇତସ୍ତତ,
ରତ୍ନମୟ ଅଙ୍ଗ    ଚରନ୍ତୁ ବୋଲି କ
ମହୀଧର ହୁଏ ବ୍ୟସ୍ତ । ୩୨ ।

କୁଶେଶୟପୂର୍ଣ୍ଣ    ହ୍ରଦରେ କଳଭ
ମୋଦଭରେ କରେ କ୍ରୀଡ଼ା,
ସିଦ୍ଧଗଣ ପତ୍ନୀ—    ଅଗ୍ରେ ଗୀତ ଗାଇ
ଦୁଃସ୍ୱରେ ଲଭନ୍ତି ବ୍ରୀଡା । ୩୩ ।

ରୈବତକ ଶୈଳେ    ସର୍ବ ମହୌଷଧି
ମାର୍ତ୍ତଣ୍ଡ ଅଧଗମନେ,
ଅନ୍ଧକାର ନାଶ    କରନ୍ତି ସ୍ୱତେଜେ
ଆନନ୍ଦିତ ହୋଇ ମନେ । ୩୪ ।

ବନସ୍ପତି ଅଂସ—    ନୀପଷଣ୍ଡ ଲତିକା-
ପୁଷ୍ପଲଗ୍ନ ମଧୁକର,
କଜ୍ଜଳ ରଞ୍ଜିତ—    ନେତ୍ର ନାରୀ ପରି
ଦିଶେ ରମଣୀୟତର । ୩୫ ।

କଦମ୍ବ ସୁରଭି—    ଗିରିରେ ବିହଗେ
କରନ୍ତି କଳ କୂଜନ,
କମ୍ପାଇ କଦମ୍ବ—    କାନନ ଜଳଦ
ଭ୍ରମାଏ ଶୈଳ ପବନ । ୩୬ ।

ଶ୍ରେଷ୍ଠ ଜ୍ଞାନୀ ଦ୍ୱିଜ ଅଗମ ବିଷୟ
ଯତ୍ନେ କରେ ପ୍ରକାଶନ,
ଅଜ୍ଞାନୀର ଯଥା— ଗୁପ୍ତ, ଶୈଳ ତଥା
ନିଧି କରେ ସଂଗୋପନ ।୩୭।

ମନୁଷ୍ୟବଦନ ଅଶ୍ୱଦେହ, ଚୁମ୍ବେ
କିନ୍ନର ପ୍ରିୟାର ମୁଖ,
ତୁରଙ୍ଗବଦନା ନାରୀ ଦେହାଲୁମ୍ବ-
ଆଶ୍ଳେଷେ ନ ହୁଏ ସୁଖ ।୩୮।

ଶୈଳ ମଧ୍ୟଦେଶେ ତମାଲ ତାଳର
ଶୋଭାପାଏ ମହାବନ,
ରୋଧ କରେ ଅର୍କ— ରଶ୍ମି, ଲତାକୁଳ
ସଦା ପ୍ରସୂନେ ଶୋଭନ ।୩୯।

ବହୁବିଧ ରତ୍ନ ହାର ପରି ଗିରି-
ମଧ୍ୟଦେଶେ ବିଶୋଭନ,
ଶୁଭ୍ର ଗଣ୍ଡଶୈଳ ନାରୀ ଗଣ୍ଡସ୍ଥଳ
ପ୍ରାୟେ ହରେ ଜନ ମନ ।୪୦।

କଲଧୌତ ଭୂମି— ଉପରେ ହୀରକ-
ସମୁଜ୍ଜ୍ୱଳ ଛାୟା ପଡ଼,
ହରିତାଳ ଯେବେ ମେଘୋଜ୍ଝିତ ଜଳ
କବା ଯାଉଥାଏ ବଢ଼ି ।୪୧।

ସ୍ମର-ତପ୍ତଅଙ୍ଗ ସ୍ୱାମିଙ୍କ ସଙ୍ଗମ-
ଇଚ୍ଛୁକ ରମଣୀଗଣ,
ବିହାର ନିଭୃତ— ସ୍ଥାନ ଏଣେ ତେଣେ
ଖୋଜୁଥାନ୍ତି ଜଣଜଣ ।୪୨।

ସଘନ କୀଚକ— ବନେ ଲୋକପୁଞ୍ଜ
ନ ଯାଇ ରମଣୀଗଣ,
ବାତପୂର୍ଣ୍ଣରନ୍ଧ୍ର ବଂଶ ମଧୁ ଗୀତ
ଧୀରେ କରନ୍ତି ଶ୍ରବଣ ।୪୩।

ବାପୀଗତ ନୀଳ— ମଣି ହେତୁ ବାପୀ
ଶୁଭ୍ରଜଳ ନୀଳାଶ୍ରୟ,
କ୍ଷୀର ଶୁଭ୍ର ବୃଷ୍ଟି— ଜଳ ପଡ଼ି ନୀଳ
କ୍ଷୀରେ ନୀଳ ପରିଚୟ । ୪୪ ।

ଅନ୍ୟ ନାରୀଠାରୁ ସୁରତକୁଶଳା
ସ୍ୱାମିଠାରେ ଯେ ମାନିନୀ,
ଶୈଳେ ଭ୍ରମି କାମ— ପୀଡ଼ାରେ ପଡ଼ନ୍ତି
ଅଲଙ୍ଗିର ସେ କାମିନୀ । ୪୫ ।

ଚନ୍ଦ୍ର କିରଣରେ ରତ୍ନଛାୟା ପଡ଼ି
ସହସ୍ର ସଂଖ୍ୟା କିରଣ-
ହେବାରୁ ସରସୀ ସୂର୍ଯ୍ୟ ଭ୍ରମେ ନିଶି
ଫୁଲ୍ଲପଙ୍କଜ ଧାରଣ । ୪୬ ।

ନିଃଶଙ୍କ ଅଙ୍କରେ ଲୋଟୁଥିବା ନଦୀ-
କନ୍ୟା ସ୍ୱାମିପାଶେ ଯାଏ,
ସୁତାସ୍ନେହେ ଶୈଳ ବିହଙ୍ଗ ବରୁତେ
କାନ୍ଦି କିବା କ୍ଲେଶ ପାଏ । ୪୭ ।

ପରିପାକ ପିଙ୍ଗ— ଲତାରେ ଭ୍ରମର
ବସିବାରୁ ଗିରି ଅଙ୍ଗ,
ନମ୍ର ଲତା ଯୋଗୁଁ ପୁଷ୍ପରେଣୁ ପଡ଼ି
ସନ୍ତତ ଦିଶେ ପିଶଙ୍ଗ । ୪୮ ।

ବହୁ ରତ୍ନ ଛାୟା ଜଳେ ପଡ଼ି ଊର୍ଦ୍ଧ୍ୱେ
ଉପତ୍ୟକାରେ ପଡ଼ନ୍ତି-
ହୋଇ, ଇନ୍ଦ୍ରଧନୁ— ସପତବର୍ଣ୍ଣର
ଶୋଭା କରେ କି ବର୍ଦ୍ଧିତ । ୪୯ ।

ଗିରିଶୃଙ୍ଗ, ଗିରି— କେଶ ପରି ନାନା-
ବର୍ଣ୍ଣ କୁସୁମେ ଜଡ଼ିତ,
କଲାପୀ କଲାପ— ଦାମେ ମନୋହର
ଜନ ମାନସ ମୋହିତ । ୫୦ ।

ନନ୍ଦନବିହାରୀ ଅମର ସଦୃଶ
ପଙ୍କଜନେତ୍ରୀଙ୍କ ସଙ୍ଗେ,
ନୂତନ ମୂରତେ ମାତି ସୁଖୀ ଜନ
ଖେଳେ ବିହରନ୍ତି ରଙ୍ଗେ । ୫୧ ।

ପୁଷ୍ପ ଅଚ୍ଛାଦିତ ଗିରି, ଅଭ୍ୟନ୍ତର-
ଚରିଷ୍ଣୁ ନୀରଦ ସଙ୍ଗେ,
ଧୂମ ରୁଚିଧାରୀ କୃଷ୍ଣାଗୁରୁ ଯେନ
ଧୂପ ଦିଏ କି ବା ଅଙ୍ଗେ । ୫୨ ।

ବନ୍ଧୁବଧ ରତ୍ନ— କିରଣ ମିଶ୍ରିତ-
ହୋଇ ଉଠେ ଆକାଶରେ,
ସ୍ୱର୍ଗବିହାରୀଙ୍କ ଭିତ୍ତିହୀନ ସ୍ଥାନେ
ଚିତ୍ର କର୍ମ କିବା କରେ । ୫୩ ।

ସମୀର ଶିଶିର— ଶୃଙ୍ଗ, ବାସୀ ସୁଖୀ-
ଜନଙ୍କ ସୁଖକଣିକା,
ଜଳାତ୍ୟୟେ, ବୃଦ୍ଧି— ପାଇଁ, ଶୈଳପାତେ
ବଳାହକ ଜବନିକା । ୫୪ ।

ଯେ ଶୈଳେ ସମାଧି— ଧାରୀ ଯୋଗିଗଣ
ପଞ୍ଚ କ୍ଳେଶ ତ୍ୟାଗେ ମତ,
ପ୍ରକୃତି ପୁରୁଷ— ଜ୍ଞାନେ ବିଶ୍ୱହିତେ
ଯୋଗ ସାଧନ୍ତି ନିରତ । ୫୫ ।

ମରକତମୟ— ଭୂମିସ୍ଥିତ ତରୁ-
ପଲ୍ଲବାନ୍ତରେ ପତିତ,
ଭାନୁକର, ଅଣୁ— ରେଣୁ ଜାଲ କେକୀ-
କଣ୍ଠ ପ୍ରଭା ବିଶୋଭିତ । ୫୬ ।

ଅତି କୃଷ୍ଣ ଅଳି— ମାଳା କୁଞ୍ଜେ ମଞ୍ଜୁ
ବଲ୍ଲକୀ ପରି ଗୁଞ୍ଜନ,
ଶୁଣି, କେଉଁ ନାରୀ ମାନ ତେଜି କରେ
ନ ସ୍ୱାମି ମନୋରଞ୍ଜନ । ୫୭ ।

ଶୈଳସାନୁ, ରାତ୍ରେ ଚନ୍ଦ୍ରକରେ ଚନ୍ଦ୍ର-
କାନ୍ତ ଜାତ ଜଳେ ସ୍ନାନ,
ଦିନେ, ଅର୍କ ତେଜେ ସୂର୍ଯ୍ୟକାନ୍ତ ତପ୍ତ
ଉପେ ତପିର ସମାନ । ୫୮ ।

ଶୈଳରେ ବନୌକା୧ ବାତଜାତ୨ ହେତୁ
କରେ ସଦା ସଂଗୂଳନ,
ଅରହ୍ଣତ୩ ରାମ— ଲକ୍ଷ୍ମଣା୪, ବାଲ୍ମୀକି-
ବାଣୀ, କ କରେ ଧାରଣ । ୫୯ ।

ଅନନ୍ତେ କଳଭେ ଶୈଳେ ପ୍ରଭଞ୍ଜଣ
କରନ୍ତ ବୃଂହଣ ଧ୍ୱନ,
ମରକତ ଛାୟା— ତୃଣଭ୍ରମେ ମୋଦେ
ଚରନ୍ତ ଗମସ୍ତିଗଣ । ୬୦ ।

କୀଚକର ଗୀତ— ଶୁଣି ରଲ୍ଲକରଙ୍ଗ୫
ଅଙ୍ଗ ସ୍ପର୍ଶ ନଭସ୍ୱାନ,
କସ୍ତୂରିକା ଗନ୍ଧ ଘ୍ରାଣକର ଚଳେ
ମତ୍ତକାମିର ସମାନ । ୬୧ ।

ଯୁବକ ଯୁବତି— ମାନଙ୍କ ଉଦ୍ଦାମ
ସୁରତ ବ୍ୟାୟାମ ଶ୍ରମ,
ଉପଶମ ପାଇଁ ଘନ ସୂର୍ଯ୍ୟ ଢାଙ୍କେ
ଦିନ କରେ ରାତି କମ । ୬୨ ।

ସର୍ପର ନିବାସ ଚନ୍ଦନ ତରୁକୁ
ଭାଙ୍ଗିବାରୁ ମତ୍ତକରୀ,
ଗରଳ ଉଦ୍ଗାରେ କ୍ରୋଧେ ଅଧୀବର
ଫଣୀ ଉତ୍ତୋଳନ କରି । ୬୩ ।

---

୧ । ବନୌକା—ମର୍କଟ, ବନର-ଚରର ଓକ ବୃଦ, ସନ୍ତଶୀ ।
୨ । ବାତଜାତ—ହନୁମାନ୍, ବାତତ୍ରବଳ ।
୩ । ଅରହୂତ—ଅବସ୍ତ୍ର ।
୪ । ଲକ୍ଷ୍ମଣା—ସାରସୀ ।
୫ । ରଲ୍ଲକର—କମ୍ବଳ ମୃଗ ।

ସାନ୍ଦ୍ର ଇଭଚର୍ମ— ଧାସି ଶିବ ଶୀତେ
ପ୍ରାଲେୟାଚଲେ ଶୟନ,
ସର୍ବଋତୁ ସୁଖୀ— ଶୈଳରେ ନ ହୁଏ
ଶୀତାତପ ଦୁଃସହନ । ୭୪ ।

ସ୍ଫଟିକ ଭୂମିର ମଧ୍ୟରେ ସ୍ଥାପିତ
ଅଦ୍ଧଲଗ୍ନ ତରୁଗଣ,
ଭସ୍ମ ବଲେପିତ ଶିବ ଶୋଭା ଶୈଳ
କରେ କି ଅନୁକରଣ । ୭୫ ।

ପଙ୍କଜ ଶୋଭନୀ— ନଦୀତୀରେ କାମ
ଯାଦବେ ଦୂରୀକରଣ-
କରି, ମଦ୍ୟପାନ ସୁରାର୍ତ୍ତିରେ କଲେ
ନାରୀ ବସ୍ତ୍ର ଅକର୍ଷଣ । ୭୬ ।

ସ୍ୱାମି ହୃତବସ୍ତ୍ର ନଗ୍ନ ନାରୀଗଣ
କାଞ୍ଚନ କନ୍ଦରେ ସ୍ଥିତ,
ରବକରୋଜ୍ଜ୍ୱଳ ରୌପ୍ୟ ସାନୁ ଛାୟା-
ପାତେ ହେଲେ ବଲକ୍ଷିତ । ୭୭ ।

ତବ ଅଭଥିରେ ଶୃଙ୍ଗ ଶ୍ରୀ ଶୋଭିତ
ରୈବକତ ସାନୁମାନ,
ମାରୁତ ପ୍ରେରିତ ହଳୀ ବସ୍ତ୍ର ଶ୍ୟାମ
ମେଘେ କରେ ଅଭ୍ୟୁତ୍ଥାନ । ୭୮ ।



# ପଞ୍ଚମ ସର୍ଗ

ଦାରୁକର ସତ୍ୟ-- ପ୍ରିୟକଥା ଶୁଣି
ହରି ଆନନ୍ଦିତ ମନେ,
କ୍ରୀଡ଼ା କରିବାକୁ ତ୍ୱରା ପ୍ରବେଶିଲେ
ରୈବତକଶୈଳ ବନେ । ୧ ।

ଗିରିଶୃଙ୍ଗ ସମ ଉତ୍ତୁଙ୍ଗ ମାତଙ୍ଗ
ରମ୍ଭାପଲ୍ଲବ କେତନ,
ଅନ୍ୟ ଗିରି ଶୋଭା ଧରି ରୈବତକେ
ବଳୌଘ କଲେ ଗମନ । ୨ ।

ଭାସ୍କର କରଣେ ବ୍ୟାପ୍ତ, ଦଗ ନଭଃ
ଦଶୁଥିଲା ସମୁଜ୍ଜ୍ୱଳ,
କରଭ ଧୂସର ଧୂଳିକି ଉଡ଼ାଇ
ସୂର୍ଯ୍ୟ ଢାଙ୍କି ଗଲେ ବଳ । ୩ ।

ଶୁଭଫଳପ୍ରଦ ଶୁକ୍ତି[1] ହସ୍ତ୍ୟାବର୍ତ୍ତ[2]
ନିଗାଳ[3] ପ୍ରଭୃତି ଚିହ୍ନ—
ଧାଇଁ, ଅଶ୍ୱଗଣ ଭୂମି ଆଚ୍ଛାଦଲେ
ଯୂଥ ହୋଇ ଭିନ୍ନ ଭିନ୍ନ । ୪ ।

ଉଷ୍ଟ୍ର ଦେଖି ସୃଣି[4]— ପ୍ରହାର ନ ମାନି
ଗର୍ଜି ପଳାଏ ମାତଙ୍ଗ,
ଗଜ ଦେଖି ଭୟେ ଭାରଶୂନ୍ୟ ଉଷ୍ଟ୍ର
ଯାଏ କରି ଗ୍ରୀବା ଭଙ୍ଗ । ୫ ।

---

୧ । ଶୁକ୍ତି—ଶୁଭଫଳପ୍ରଦ ଅଶ୍ୱର ଭ୍ରମରଚିହ୍ନ ।
୨ । ହସ୍ତ୍ୟାବର୍ତ୍ତ—ଅଶ୍ୱର ସ୍କନ୍ଧଦେଶରେ ଦକ୍ଷ ଭ୍ରମରୀ ଥାଏ ।
୩ । ନିଗାଳ — ଗଳାକ୍ରୁଢ଼ି ।
୪ । ସୃଣି — ଅଙ୍କୁଶ ।

ଲୋଳ ପୁଚ୍ଛଧାରୀ  ଦ୍ରୁତଗ ଅଶ୍ୱର
ଲୀଳାଗତ ମାତଙ୍ଗର,—
ଗମନ ଦେଖନ୍ତି  ଅନୁରୂପ ଚେଷ୍ଟା
ଶୋଭେ ସିନା ପ୍ରାଣୀଙ୍କର । ୬ ।

କରଣୀକ ଭଙ୍ଗି  ଜନ ହାସ୍ୟକର
ଖର ଉଠିଲା ଉପରେ,
ଚଞ୍ଚଳ ଚଳନେ  ଜାତମ୍ବର ବସ୍ତ୍ର
ପଡ଼ିଲା ବଧୂ ପାଶରେ । ୭ ।

ଶୈଳପ୍ରାନ୍ତେ ରଥ—  ନେମି ଅଗ୍ର ବାଜି
ଶିଳାରାଜି ହୋଇ ଚୂର୍ଣ୍ଣ,
ମେଘାକାର ହୋଇ  ଗଗନେ ଉଡ଼ିଲେ
ଖରବର୍ଣ୍ଣ ଧର ତୂର୍ଣ୍ଣ । ୮ ।

ଅଶ୍ୱଖୁର ବାଜି  ପାଷାଣୁ ସ୍ଫୁଲିଙ୍ଗ
ବାହାରିଲା ତତକ୍ଷଣି,
ଦର୍ଦ୍ଦୁର ବାଦ୍ୟର  ପରାୟେ, ଗମନ-
ଶବ୍ଦ ହେଲା ବଳକ୍ଷଣି । ୯ ।

କଶାବିଘ୍ନ ଜ୍ଞାନୀ—  ଅଶ୍ୱବାର ଅଶ୍ୱ-
ବେଗ କରି ସମ୍ବରଣ,
ମଣ୍ଡଳ ଗତିରେ  ଚଳାଇଲେ ଅଶ୍ୱ
ଖଲୀନ କରି ଧାରଣ । ୧୦ ।

ହିମଜାଲ ପରି  ବଧୂ ନେତ୍ର ପକ୍ଷ୍ମ
ଦ୍ୱିଗୁଣ କରି ମଳିନ,
ଗମନେ ଉଡ଼ାଇ  ଧୂଳି ଯଦୁବଳ
ଆଚ୍ଛାଦିଲେ ନଭେ ଇନ । ୧୧ ।

ହରି ଅନୁଚରେ  ସିଂହ ବଧ କରି
ଗଜକୁମ୍ଭ ମୁକ୍ତାରାଜି,—
ସିଂହନଖ ମୁକ୍ତ  ପର୍ବତ ଗୁହାରେ
ପ୍ରବେଶିଲେ ଦଳି ଭାଜି । ୧୨ ।

ଯାବକ ପଙ୍କରେ — ପିଙ୍ଗ ପିଚ୍ଛ, ଚଞ୍ଚୁ—
ପୃଷ୍ଠରେ ଲମ୍ବିତ ଅହି,
ଗରୁଡ଼ଙ୍କୁ ଦେଖି ମଣି ଲିପ୍ତ ଅନେକ
ହର ପାଶେ ଆନ୍ତି ରହି । ୧୩ ।

ସୈନ୍ୟଗଣ ତରୁ— ଛାୟା ତ୍ୟାଗ କରି
ବର୍ଦ୍ଧିଷ୍ଣୁ ଛାୟାର ତଳେ,—
ସ୍ଥିତ, ବର୍ଦ୍ଧିଷ୍ଣୁର — ଆଶ୍ରୟ ନଅନ୍ତି
ଯୀଣର କାହିଁ ସକଳେ । ୧୪ ।

ଅଗେ ଯାଇ ଛାୟା— ଭିଳେ ବାସ ରଚି
ତତ୍ତନ୍ତ୍ର ଅନ୍ୟଙ୍କୁ ଅଗ୍ରେ,
କେବା ସ୍ଥାନାନ୍ତର— ଗାମୀ ସ୍ୱଦଳଙ୍କୁ
। ଊର୍ଦ୍ଧ୍ୱ ହସ୍ତେ ଡ଼ାକେ ବ୍ୟଗ୍ରେ । ୧୫ ।

ବନ ବନସ୍ପତି ଶ୍ରମହର ହେଲେ
ପକ୍ୱଫଳେ ପରିପୂର୍ଣ୍ଣ,
ଶାଖାଲଗ୍ନ ବସ୍ତ୍ରେ ଅତି ଅଭିରାମ
କଳ୍ପଦ୍ରୁମ କାର୍ଯ୍ୟ ତୂର୍ଣ୍ଣ । ୧୬ ।

ପରିଜନେ ଯାନୁ ଜନ୍ତୁରିଲ୍ଲ ପରେ
ଲୋକଙ୍କୁ ଅପସାରଣ,—
କରି ସୌବିଦଲ୍ଲ ଦେଖୁଥାନ୍ତି ସିନା
ସାଭୀୟ କୌତୁକମନ । ୧୭ ।

ନୃପ ଅବରୋଧ— ବଧୂଙ୍କୁ ରଥରୁ
ଓହ୍ଲାଇବା କାଳରେ,
ଆଲିଙ୍ଗନ ହସ୍ତ— ନ୍ୟାସେ, ନ ଚୁମ୍ବନ
ବସ୍ତୁଭେ ଚନ୍ଦ୍ରସ୍ଥଳରେ । ୧୮ ।

ତରୁଚ୍ଛାୟାତଳେ — କେଶପାଶ ଦେଖି
ତରୁଣୀଗଣଙ୍କ ସାର,
ବୃକ୍ଷରେ ଲୁଚିଲା ମୟୂର କେ ସହେ
ଲଜ୍ଜା ଅପମାନ ଭାର । ୧୯ ।

ନିଜ ନିଜ ଚିହ୍ନେ— ଚିହ୍ନିତ କାଞ୍ଚନ-
ପତାକାରେ ପିଙ୍ଗ ଦଣ,
ଘନସ୍ପର୍ଶି ରଥ ରୈବତକ ପାଦ
ପର ଶୋଭିତ ଅନାଶ । ୨୦ ।

ନୃପେ ନିଜ ନିଜ ସମ୍ପଦ ଦେଖାଇ
କଲେ ଶିବିର ସ୍ଥାପନ,
କାହିଁ ଗଜଦନ୍ତ— ସ୍ତମ୍ଭ, କାହିଁ ମୁକ୍ତା-
ମାଳା ଦୋଳାଏ ପବନ । ୨୧ ।

ଅଧ୍ୱ ଖେଦଭରେ ଶିବିର ମଧ୍ୟରେ
ମହୀପତି ପତ୍ନୀଗଣ,
ସ୍ୱେଦବିନ୍ଦୁ ହର ଚାଳିତ ବ୍ୟଜନେ
ସୁଖରେ କଲେ ଶୟନ । ୨୨ ।

ସ୍ତନମୂଳେ ନଖ— କ୍ଷତ ବ୍ରଣ ପରେ
ଶ୍ଳିଷ୍ଟ କଞ୍ଚୁକାବରଣ,
ସ୍ୱେଦ ଲାଗି ପୀଡ଼ା— ଉନ୍ମୋଚନ ଭଙ୍ଗୀ
ଦେଖନ୍ତି ଯୁବକଗଣ । ୨୩ ।

ଶିବିରେ ଦୋକାନ ଧାଡି ଧାଡି କରି
ବଣିକେ କଲେ ସ୍ଥାପନ,
ନାନାବିଧ ଦ୍ରବ୍ୟ ମିଷ୍ଟାନ୍ନ ସହିତେ
କ୍ରୟ କଲେ କ୍ରେତାଗଣ । ୨୪ ।

ସାମାନ୍ୟ ବୟସ୍କେ ବହୁ ଯତ୍ନ କରି
ଦଣ୍ଡଲୋଷ୍ଟ୍ର ଧରି ଜନେ,
ବୃକ୍ଷ ଅନ୍ତରାଳେ ଶଶକ ଧରନ୍ତି
ନିଷେଧନ୍ତି ଅନ୍ୟ ଜନେ । ୨୫ ।

ସୈନ୍ୟ ଦେଖି ଭୟ— ବ୍ୟାକୁଳ ମୃଗଙ୍କୁ
ଧନ୍ୱୀ ନ ବିନ୍ଧିଲା ଶର,
ନାରୀଙ୍କ ଅପାଙ୍ଗ— ବାଣେ କ୍ଷତ ହୋଇ
ମୃଗ ଧାଏଁ ତତପର । ୨୬ ।

ବସ୍ତ୍ରଗୃହ ମଧ୍ୟେ ରଚି ରମ୍ୟ ଶଯ୍ୟା
ନବବେଶେ ବେଶ୍ୟାଗଣେ,
ଚିରସ୍ଥାୟୀ ପରି ଲମ୍ପଟଜନଙ୍କ
କରନ୍ତି ମନୋହରଣ । ୨୭ ।

ନମ୍ରତା ସମୃଦ୍ଧି— ଅଭୋଗ ଦୋଷର
ନିନ୍ଦାକୁ କର ମାର୍ଜନ,
ଜଳେ ସ୍ନାନ କଲ— ପାନ ବସ୍ତ୍ର ଧୌତ
ପୁଣ୍ୟର କଲେ ଅର୍ଜନ । ୨୮ ।

ନାରୀ ନାଭି-ହ୍ରଦେ ଜଘନ-ସେତୁରେ
ପ୍ରତିସିଦ୍ଧ ଜଳରୟ,
ସ୍ଥୂଳସ୍ତନୁ ବନ୍ଧୁ ପଡ଼ି ଜଳେ ହେଲା
ମଣ୍ଡୁକ-ବାଦ୍ୟର ଲୟ । ୨୯ ।

ଆଲୋଡ଼ନ କରି ଅମ୍ଭୋରୁହବଣି
ମାତଙ୍ଗେ ଶୁଣ୍ଡାଗ୍ରେ ଜଳ,
ଶିରେ ଉତ୍କ୍ଷେପଣ କରି ଆର୍ଦ୍ର କଲେ,
କୁମ୍ଭସ୍ଥିତ ମୁକ୍ତାଫଳ । ୩୦ ।

ପକ୍ଷଯୁକ୍ତ ଅଦ୍ରି— ଗଣ ଅଦ୍ୟେ ଇନ୍ଦ୍ର—
ଭୟେ ସାଗରେ ଲୁଚିଲେ,
ସରଃ ସ୍ନାନ କାଳେ ଛିନ୍ନପକ୍ଷ ଅଦ୍ରି
ପରି ମାତଙ୍ଗେ ଦଶିଲେ । ୩୧ ।

ମତ୍ତଗଜ ନିଜ ପ୍ରତିବିମ୍ବ ସରଃ—
ଊର୍ମିରେ ଦେଖି ଅଗତ,
ଅନ୍ୟ ଗଜ ଭ୍ରମେ ଆକ୍ରମଣେ ଧାଏଁ
ଯେଣୁ ସେ ମଦରେ ମତ୍ତ । ୩୨ ।

ଅନ୍ୟ କରୀ ମୁକ୍ତ ଉକ୍ତ ମଦ ବାରି
ଅନିଚ୍ଛା ତ୍ୟାଗେ ଗ୍ରହଣେ,
ରୋଷେ ଜଳଘାଟେ ରହିବାରୁ ନଷ୍ଟ
ଜଳପାନଧାରୀ କଲେ । ୩୩ ।

କେଉଁ ରମଣୀକ — କେ ଲମ୍ପଟ କହେ
ମାର୍ଗ ଛାଡ଼ ଗୋ କାମିନୀ ।
ତବ ସ୍ତନଦ୍ୱୟ — ଦେଖି ବୋଧ ହୁଏ
ଗଜକୁମ୍ଭ କି କୁମ୍ଭିନୀ । ୩୪ ।

ଗଜମଦତାପ — ପୀଡ଼ା ଉପଶମ
ପାଇଁ କାଶପୁଷ୍ପ ସମ,
ଧୀରେ କରେ ଜଳ — ଢାଳେ କପୋଳରେ
ଧବଳ ଗୁମ୍ଫରୋଧମ । ୩୫ ।

ଅନ୍ୟ ଗଜ ମଦ — ଗନ୍ଧ ପାଇ କ୍ରୋଧେ
ଜଳ ଗଣ୍ଡୂଷ ବମନ
କରି, ପୁଷ୍କରିଣୀ— — ତଟରେ ଧଡ଼ିଲ
ଦନ୍ତେ ଶୁଣ୍ଡକୁ ସ୍ଥାପନ । ୩୬ ।

ଦୃଢ଼ ଦାନ ବାରି — ବତରଣମନ୍ତୁ
ହେଲେହେଁ, ମଗ୍ନେ କୁଶଳ,
ଗଣ୍ଡଦେଶେ ଅଳି— — କୁଳ ଭ୍ରମି ମଗ୍ନେ
ଊର୍ଦ୍ଧ୍ୱେ ଉଡ଼ନ୍ତି ସକଳ । ୩୭ ।

ସଲିଲ ମଜ୍ଜନେ — ଗଜ ଗଣ୍ଡୁ ତେକ୍ର
ଧୂତପକ୍ଷ ଅଳିକୁଳ,
ଉଡ଼ ନଭେ ଭିନ୍ନ — କଲେ ମାଳମାକୁ
ସର୍ବ୍ବ ସ୍ୱାର୍ଥରେ ଅକୁଳ । ୩୮ ।

ନଦୀଜଳ ଗଜ — ଗୈରିକ ରେଣୁରେ
ଘୋଳ ହୋଇ କରେ ସ୍ନାନ,
ପଦ୍ମରେଣୁମଖା — ଜଳ, ବେନି ବାୟୁ
ବଳମୟୂ କି ସମାନ । ୩୯ ।

କରୀ-ମଦଜଳ— — ଚନ୍ଦ୍ରିକାରେ ନାଦୀ
ପ୍ରାପ୍ତ ଯେଉଁ ନେବଶୋଭା,
ନିର୍ଗମଣେ କରୀ — ପଦ୍ମ ପରେ ନାଦୀ
ବଢ଼ାଏ ଲୋଚନ ଶୋଭା । ୪୦ ।

ପ୍ରତିଗଜ ପାର୍ଶ୍ୱେ ଯଥାସୁଂ ଗଜଙ୍କୁ
ନିଷାଦୀ[1] ରୋଧିବା ପାଇଁ,
ଅଙ୍କୁଶରେ ଭିନ୍ନ— କରେ କୁମ୍ଭ ବଳୀ
ବନାଳୀର ମାତଙ୍ଗ କାହିଁ । ୪୧ ।

କାନ୍ଦିବାକୁ ଯନ୍ତ୍ରା ଧୀରେ ନିଏ ବନ୍ୟ-
ଗଜ ଗନ୍ଧେ ମତ୍ତମନ,
ଅବକାଶ କାହିଁ ଅନ୍ୟ ଗନ୍ଧ ସନ୍ଧେ
ବୃକ୍ଷ ଭାଗିଲା ତତ୍‌କ୍ଷଣ । ୪୨ ।

ଅର୍ଦ୍ଧ କୁଞ୍ଜରୁଷ— କୁଞ୍ଜର କପୋଳ-
ଘର୍ଷଣରେ ଦାନ ବାରି
ସିକ୍ତ ତରୁ, ଭଗ୍ନ ସେନା ଗଜେ, ଅଳି
ଉଡ଼ିଲେ ବସି ନ ପାରି । ୪୩ ।

ଉଚ୍ଚ ତରୁ ଶାଖା ବାନ୍ଧିବାକୁ ଯନ୍ତ୍ରା
ଆଦେଶେ ଭାଙ୍ଗଇ ଡାଳ,
ନିଜ ହିତାହିତ ନ ଗଣେ ମଦାନ୍ଧ
ପରେ ତାକୁ ହୁଏ କାଳ । ୪୪ ।

ଉନ୍ମତ୍ତକରଙ୍କୁ ବାନ୍ଧିଲେ ମାନବେ
ହରିଚନ୍ଦନ ପାଦପେ,
ଭାଙ୍ଗିବାରୁ ଡାଳ ବିଚ୍ଛିନ୍ନ ପଲ୍ଲବ
ଭୟେ ପଳାଇଲେ ସର୍ପେ । ୪୫ ।

ଗଜ ଗଣ୍ଡସ୍ଥଳ ଘର୍ଷଣରେ ତରୁ-
ସ୍କନ୍ଧେ ଲାଗି ମଦଜଳ,
ଗନ୍ଧଲୁବ୍ଧ ଅଳି— ମାଳା, ଇନ୍ଦ୍ରନୀଳ
ମାଳା କି ଶୋଭେ ସକଳ । ୪୬ ।

ଇତସ୍ତତ ଭ୍ରମୁ— ଥିବା ଦ୍ୱିରଦଙ୍କୁ
ଗଜଶାସ୍ତ୍ର ମନ୍ତ୍ରବଳେ,
ହସ୍ତିପକ ବଶ କରେ ସୁଧୀ ବଦ୍ୟା
ସିଦ୍ଧି କି ନୋହେ କୌଶଳେ । ୪୭ ।

---

୧ । ନିଷାଦୀ—ଗଜଚାଳକ ।

ଉତ୍ପାଟନ କରି ଅଳାନକୁ[1] ବଳେ
ଶୃଙ୍ଖଳ ସହିତେ କରି,
ଭ୍ରମେ ଉଷ୍ଟ୍ରଗଣ ସ୍ୱତନ୍ତ୍ର ଭାବରେ
ମାନବେ ପଳାନ୍ତି ଡ଼ରି । ୪୮ ।

ଗମ୍ଭୀରନିନାଦୀ ଗଜକୁ ନିଷାଦୀ
ନିଷ୍ଠୁର ପ୍ରେରଣ କରେ,
ଅଗ୍ରଗ୍ରାସ ଭେକ ଧାଏଁ ମୂର୍ଖ ମହା—
ନିଗ୍ରହକୁ ସହ୍ୟ କରେ । ୪୯ ।

ଅଗ୍ରେ ଇକ୍ଷୁଦଣ୍ଡ ନ ଇଚ୍ଛେ କରୀନ୍ଦ୍ର
କରଣୀରେ ନାହିଁ ମନ,
ନିମିଳିତ ନେତ୍ରେ ସ୍ୱତନ୍ତ୍ର ବିହାର
ଇଚ୍ଛଇ ବନଭ୍ରମଣ । ୫୦ ।

ଅତ୍ୟୁନ୍ନତ ହେତୁ ଊର୍ଦ୍ଧ୍ୱହସ୍ତେ ଦେଲେ
ଗଜ ଉଚିତ କବଳ,
ଅତି କଷ୍ଟେ ନମ୍ରେ ନିଏ ଅହଙ୍କାରୀ-
ଠାରେ କାହିଁ ନମ୍ର ବଳ । ୫୧ ।

ଧବଳ ଅମ୍ବରେ ନିର୍ମିତ ଶିବିର
ଚନ୍ଦ୍ରାକାରେ ହୋଇ ସ୍ଥିତ,
ଗଜାବଳୀପରି— ବେଷ୍ଟିତ ଚନ୍ଦ୍ର କି
କୃଷ୍ଣଅଭ୍ରମଧ୍ୟେ ସ୍ଥିତ । ୫୨ ।

ମୃଗଗତି ଅଶ୍ୱେ ବଳଦର୍ପୋଦ୍ଧତେ
ଗଗନେ ଧୂଳି ଉଡ଼ାଇ,
ଉଦ୍ଗାରିଲେ ଫେନ ବିଶ୍ରାମ ସକାଶେ
ବହୁଦୂର ପଥ ଯାଇ । ୫୩ ।

ବାହ୍ଲିକ ତୁରଙ୍ଗେ ନତଶିରେ ନାସା—
ବାତେ ଅଘ୍ରାଣନ୍ତି ମହୀ,
ଅଶ୍ୱ ଅଙ୍ଗ ସଙ୍ଗ ସୁଖ ଭାବ ରେଣୁ
ରୋମାଞ୍ଚରେ ଧାଏ କହି । ୫୪ ।

---

୧ । ଅଳାନ — ହସ୍ତିବନ୍ଧନ ସ୍ତମ୍ଭ ।

କାଞ୍ଚନଭୂମିରେ ଚାଲିଛି ତୁରଙ୍ଗମେ
ଉଠି ଦେଉ ଦେଲେ ଝାମ୍ପ,
ସ୍ଫୁଲିଙ୍ଗ ପ୍ରବାହ ଦିଶେ ସ୍ୱର୍ଣ୍ଣଭୂମି
ସର୍ବେ ଯାଉଛନ୍ତି ମାଡ଼ି । ୫୫ ।

ଅଶ୍ୱବାର ଦୃଢ଼— ବଲ୍ଗାଧାରୀ ହସ୍ତୁ
ଉର୍ଦ୍ଧେ ରଖି ପଦଦ୍ୱୟ,
ଉଦୟ ଶୈଳର ଅର୍ଦ୍ଧୋଦିତ ସୂର୍ଯ୍ୟ-
ଛବିର ହେଲା ନିଳୟ । ୫୬ ।

ସ୍ନାନବେଳେ ଜନେ ଦେବ ପର ଶୋଭେ
ଅନିମିଷ ଲୋଚନରେ,
ସଦାଶି, ସିନ୍ଧୁଜାତ ଉଚ୍ଚୈଃଶ୍ରବା ଅବା
ବୋଲି ଭାବିଲେ ମନରେ । ୫୭ ।

ଅଗ୍ରେ ତୃଣରାଜି ଚରିବା ବେଳରେ
ଗ୍ରୀବାଲଗ୍ନ ଘଣ୍ଟିସ୍ୱନ,
ଚର୍ବଣ ଦଶନ ଶବ୍ଦ ଭୂମିପଙ୍କ
ଚିତ୍ତ କଲା ଆକର୍ଷଣ । ୫୮ ।

ଅଶ୍ୱ ଶ୍ରେଣୀ ଚକ୍ର— ସଦ୍ୟୋଜାତ କାଳକ
ବଳେ କରି ଉତ୍ପାଟନ,
ଧାବିତ ତୁରଙ୍ଗେ ଶିବିରଜନଙ୍କୁ
କଲେ ଆକୁଳୀକରଣ । ୫୯ ।

ଚତୁର୍ଦ୍ଦିଶବଧ ନାନା ବିଭାଗରେ
ଯେ ଅଶ୍ୱବାର କୁଶଳ,
ଉତ୍ସାହ୍ୟାଦ କ୍ରମେ ଚାଲାଇଲେ ତହୁଁ
ଶିକ୍ଷିତ ଅଶ୍ୱ ସକଳ । ୬୦ ।

ଶିବିର ପାଶରେ ମୁକ୍ତ ଅଶ୍ୱଗଣ
ବନ୍ଧନରଜ୍ଜୁ ଛିଣ୍ଡାଇ,
ହେଷେ ଉଡ଼ିବାରୁ ଯଷ୍ଟିଧାରୀ ଦାସେ
ଦ୍ରୁତ ଉପାଦେ ଗଲେ ଧାଇଁ । ୬୧ ।

ଖାର ଉହାଳାଇଲା— ପଚେର ମଧ୍ୟ ନବ-
ତୃଣ ଚରି ପଶୁଗଣ,

ଉଦର ଭାରରେ  ହେମନ୍ତ ସହିତ
କରନ୍ତି ମନ୍ଦ ଗମନ । ୭୨ ।
ବିଷାଣ ଅଗ୍ରରେ  ମୃତ୍ପିଣ୍ଡ ଲଗାଇ
କ୍ଷଣେ ବପ୍ରକ୍ରୀଡ଼ା ଛଳେ,
କକୁଦ୍ମାନ ଦେଖି  ଅନ୍ୟ ବୃଷଭଙ୍କୁ
ନଦୀତୀର ଭାଙ୍ଗେ ବଳେ । ୭୩ ।

ବଳୀ ସ୍ଥୂଳ ବୃଷ  କାମୁକ ବୃଷଙ୍କୁ
ସଂଗ୍ରାମରେ କରି ଜୟ,
ନାସ୍ତଣ୍ଡକେ ଧେନୁ  ପଛେ ପଛେ ଧାଇଁ
ଧେନୁଙ୍କୁ କରେ ଅଥୟ । ୭୪ ।

ଲମ୍ବଗ୍ରୀବାଧାସ୍ତ  କ୍ରମେଳକକୁଳ
ଉର୍ଦ୍ଧ୍ୱ କର ନିଜ ମୁଖ
ଉନ୍ନତ ବୃକ୍ଷରୁ  ପଲ୍ଲବ ଭକ୍ଷଣେ
ନ ପାଆନ୍ତି ଭଲେ ଦୁଃଖ । ୭୫ ।
ପିଚୁମର୍ଦ୍ଦପତ୍ର  ଭକ୍ଷଣେ କୁଶଳ
ଅମ୍ରଦଳ ମୁଖେ ଗଲେ,
ଉଦ୍ଗାରେ, ଗରୁଡ଼  ମ୍ଳେଚ୍ଛଭକ୍ଷୀ, ଯଥା
ବିପ୍ର ଉଦୀରଣ କଲେ । ୭୬ ।
ରାଜା ଅବସର—  କାଞ୍ଚୀ ବହିଃସ୍ଥିତ
ପାର୍ଶ୍ୱ ଅନୁଜୀବୀଗଣ,
ମହୀପ ପ୍ରଶସ୍ତି  ବୈତାଳିକ ମୁଖେ
ଆନନ୍ଦେ କଲେ ଶ୍ରବଣ । ୭୭ ।

ଲୋହିତ ବରଣ  ହସ୍ତୀଙ୍କ ଶିବିର
ବେଷ୍ଟିଛନ୍ତି ହସ୍ତିକଟ,
ସନ୍ଧ୍ୟାରାଗେ ରକ୍ତ  ହସ୍ତିମେଘେ ଶବ
ଦିଶଇ ଗଗନ ପର । ୭୮ ।

ଗଜ-ଶାଖାଭଗ୍ନ-ରବେ ରୈବତକ ଧର,
ଡାକେ ହେ ଶ୍ରୀପତି ଗିରିଧର ରକ୍ଷା କର । ୭୯ ।

# ଷଷ୍ଠ ସର୍ଗ

(ବସନ୍ତବର୍ଣ୍ଣନ)

ରୈବତକବନରେ ବିହାରଇଚ୍ଛୁକ
ବିପଦନାଶନ ହରିଙ୍କି ଗୃହଁ,
ପ୍ରସୂନ ପଲ୍ଲବେ ସାଜ ଋତୁରାଜ
ଋତୁଗଣ ଧୀରେ ଅଇଲେ ଧାଇଁ । ୧ ।

ନୂତନ ପଲାଶ ଧଳାଶ କାନନ
ବିକଚ ପଙ୍କଜ ପରାଗେ ଭରା,
କୋମଳ ବଲ୍ଲରୀ ପ୍ରସୂନେ ମଞ୍ଜୁଳ
ଦେଖିଲେ ବସନ୍ତେ ଶୋଭିତ ଧରା । ୨ ।

ବିଲୋଲ ଅଲକ ମୃଗଦୃଶାଙ୍କର
ଲଲାଟଜ ଶ୍ରମବାରିକ ହର,
ସରସୀ ତରଙ୍ଗେ ଦଳି କୁବଳୟ
ମନ୍ଦଗନ୍ଧବାହ ଯାଏ ସଞ୍ଚର । ୩ ।

କୁରୁବକବୃନ୍ତେ ହେବାରୁ ସଂସର୍ଗ
ଧବଳ ଗୁଣକୁ ଧଇଲେ ଅଳି,
ମାଧବ ଯୋଷିତ ଲୋଚନ ତାରକା
ଭ୍ରମର କୃଷ୍ଣତ୍ୱ ଯାଏ କି ଚଳି । ୪ ।

କାଞ୍ଚନ ବରଣ ଚମ୍ପକ କୁସୁମେ
ବିକାଶ ଅଶୋକ ମିଶିଲା ପହୁଁ,
ବିରହି ହୃଦୟ ମଦନ ଅଗ୍ନିରେ
ପିଙ୍ଗଳ ବର୍ଣ୍ଣ କି ଧଇଲା ତହୁଁ । ୫ ।

ରସାଲ କାନନ ପଲ୍ଲବ ସମୂହ
ସ୍ମର ହୁତାଶନ୍ ମୁର୍ମୁରଂ ପ୍ରଭୃ,
ପଥିକମାନଙ୍କ ଉପରେ ପଡନ୍ତେ
ତାପ ଦାଏ କୋଧେ ଶିବଙ୍କ ଅର । ୬ ।

ପ୍ରିୟତମଠାରେ କୋପିନୀ ମାନିନୀ
ଅଧୋମୁଖେ ଥାଏ ପାଶେ ନ ଯାଇ,
କନ୍ଦର୍ପ ପ୍ରେରିତ ଭୃଙ୍ଗ ସ୍ୱନ ଶୁଣି
ସ୍ୱାମିଙ୍କି ଅତୁରେ ଅଶ୍ଳେଷେ ଧାଇଁ । ୭ ।

ଅତ୍ୟନ୍ତ ମାନିନୀ କାମିନୀ କାନରେ
କୋକିଳା କ ମନ୍ତ୍ର କହିଲା ଯାଇ,
ସେ ମନ୍ତ୍ର ଶ୍ରବଣେ କାମାତୁରେ ନାଥ
ଅଙ୍ଗ ସମର୍ପଣେ ଅଇଲା ଧାଇଁ । ୮ ।

ଶବର ଶବଦେ ମୁଗ୍ଧ ମୃଗ ଯଥା
ପଡ଼େ ପ୍ରତାରକ ବ୍ୟାଧର ପାଶେ,
ଭ୍ରମର ଗୁଞ୍ଜନେ ପଥିକେ ତାଦୃଶ
ପଡ଼ନ୍ତି କନ୍ଦର୍ପ ମୋହନ ପାଶେ । ୯ ।

କୁସୁମ ଚୟନ— କାରଣୀ ପ୍ରମଦା
ସ୍ନେହେ ବନବୃକ୍ଷେ ଲମ୍ବାଏ କର,
ଅନମ୍ରେ ସଙ୍କୋଚେ ଗାଳିଦାଏ ଥିକ
ଅରଣ୍ୟ କେବେ କ ହୁଏ ନାଗର । ୧୦ ।

ସ୍ତନଭର ଜିତ— ସ୍ତବକ ନମିତ-
ନବ ଲତାଥିକ ଯାର ଉପମା,
ପଲ୍ଲବଶାଳିନୀ ପଙ୍କଜିନୀ ତେଜି
ଅଳି ତବ ପାର୍ଶ୍ୱେ କେଡ଼େ ସୁଷମା । ୧୧ ।

ସୁରଭି ନିଶ୍ୱାସ— ମାରୁତରେ ତବ
ନବ ସୁଧାଧାରୀ ମଧୁରାଧରେ,
ପୁଷ୍ପରସ ତେଜି ଲୋଲୁପ ଭ୍ରମର
ମମ ସ୍ଥାନେ ଅସି ବିହାର କରେ । ୧୨ ।

୧ । ମୁର୍ମୁର—ତୁଷାନଳ ।

ପ୍ରିୟ ପ୍ରାର୍ଥନାରେ                    ବଶୀଭୂତ ନାରୀ
        ଭୁଜଯୁଗ ମଧ୍ୟ ଉନ୍ନତସ୍ତନା,
ଉଦରସ୍ଥ ମଞ୍ଜୁ                    ତ୍ରିବଳୀ ଦେଖାଇ
        ଦୃଢ଼ ଆଲିଙ୍ଗନେ ହୃଷ୍ଟମନା । ୧୩ ।

ବଦନ ସୌରଭ—                    ଲୁବ୍ଧ ମଧୁକର
        ସମ୍ଭ୍ରମ ପତନେ କରେ ଗମନ,
ଅଳିପାତ ଭୟେ                    ମେଖଳା ଶିଞ୍ଜନେ
        ହଲେଇ ଅଳକ ଚଞ୍ଚଳେକ୍ଷଣ । ୧୪ ।

ଯେ ଅଭିମାନିନୀ                    କୁଳୁଟରମଣୀ୧
        ପ୍ରିୟ ଗୃହରେ ନ ଦିଅନ୍ତି କର୍ଣ୍ଣ,
ବସନ୍ତ ଆଗମେ                    କନ୍ଦର୍ପ ପୀଡ଼ିତା
        ସ୍ୱାମିଙ୍କି ଭାଷନ୍ତି ମଧୁର ବର୍ଣ୍ଣ । ୧୫ ।

କେଉଁ ବିଯୋଗିନୀ                    କୁସୁମକାର୍ମୁକ-
        କାର୍ମୁକଯୋଜିତ କୁସୁମକାଣ୍ଡେ,
ଦଗ୍ଧ ହୃଦୟରେ                    ପୁନଃ ପୁନଃ ମୂର୍ଚ୍ଛା-
        ଯାଇ ମରଣକୁ ଖୋଜଇ ଗୃହେ । ୧୬ ।

କେ ଅର୍ଘୀୟ କହେ                    ଶୁଭାଙ୍ଗି ଗୋ ! ତବ
        କ୍ରନ୍ଦନେ ସୁଶୁଷ୍କ ପଦ୍ମ ବଦନ,
ଶୋଭା ଦିଶେ ସିନା                    ବସନ୍ତ ଆଗମେ
        ଅମଙ୍ଗଳ ଅଟେ ଅଶ୍ରୁ ମୋଚନ । ୧୭ ।

ସ୍ନେହେ ବନ୍ଧୁଗଣ                    କହିଲେ ବାରହ-
        ପୀଡ଼ନେ ଅଶରେ ତେଜିବ ପ୍ରାଣ,
ଏ କଥା ନ କହ                    ଅଳ୍ପଦିନେ ତବ
        ପ୍ରିୟ ସଙ୍ଗେ ଭେଟ ନିଶ୍ଚୟ ଜାଣ । ୧୮ ।

ଦୂରଦେଶେ ଥିଲେ                    ମଧ୍ୟ ତବ ସ୍ୱାମୀ
        ବସନ୍ତ ନ କରେ ସେ ଅତିକ୍ରମ—
ବୋଲୁଁ, ଦ୍ୱାରଦେଶେ                    ପ୍ରିୟ କଣ୍ଠ ଶୁଣି
        ନାରୀର ମାନସ ହେଲା ବିଭ୍ରମ । ୧୯ ।

---

୧ । କୁଳୁଟରମଣୀ—ଯାଦବଂଶଜା ।

ରମ୍ୟ ବସନ୍ତରେ ବକାଶ ମାଧବୀ
ପୁଷ୍ପରସେ ହୋଇ ସୁପରିପୂର୍ଣ୍ଣ,
ଭ୍ରମର ଅଙ୍ଗନା ଉନ୍ମତ୍ତେ ନିଭୃତ-
ଅନ୍ତରକୁ ଗାଏ ମଧୁରେ ଘୂର୍ଣ୍ଣ । ୨୦ ।

ବରହୀ ସନ୍ତାପୀ ପର୍ବତ କାନନ
ଅରୁଣିମା ବର୍ଣ୍ଣ ଧାରଣ କର,
ବକଚ କିଂଶୁକ କୁସୁମସଂହତ
ଦୂରୁ ଦିଏ ଦବ ଦାହନ ପର । ୨୧ ।

( ଗ୍ରୀଷ୍ମବର୍ଣ୍ଣନ )

ଶିରୀଷ ରଜର— କାନ୍ତ ରବ ଅଶ୍ବ-
ଲୋମତୁଲ୍ୟ ବର୍ଣ୍ଣ ବନାଶି, ମତ୍ତ
ଆଲିଙ୍ଗନ କଲ ଗ୍ରୀଷ୍ମ, ମଲ୍ଲୀଗନ୍ଧେ
ମତ୍ତ, କମେ ଦେଲ ଭୁବନ ଦାହ । ୨୨ ।

ନିଜବଧୂ ଶ୍ବାସ— ସୌରଭ ସମାନ
ପାଟଳ ସୌରଭ ଘେନି ପବନ,
ମନ୍ଦ ମନ୍ଦ ଚଲ ବଳାସିମାନଙ୍କୁ
ବଳାସେ ପ୍ରବୃତ୍ତ କରାଏ ମନ । ୨୩ ।

ନାରୀଗଣ ସଦ୍ୟ— ସ୍ନାନ କର ଅର୍ଦ୍ର-
ସ୍ତନ ନେଇ ନିଜ ସ୍ବାମିଙ୍କ ଉରେ,
କରନ୍ତି ସ୍ଥାପନ ଚନ୍ଦନ ଲେପନ
ସନ୍ତାପନାଶନେ ରହୁ ଅଦୂରେ । ୨୪ ।

( ବର୍ଷାବର୍ଣ୍ଣନ )

ଉତ୍ତୁଙ୍ଗନଭ୍ରୂନ ଜଳଧରକୁଳ
ସମସ୍ତାସମସ୍ତ ନ ଦେଖି କର,
ଉଭ ଜନାଶନେ ନିଜ ପ୍ରିୟ ପର
ରୈବତକ ଅଙ୍ଗେ ଥାଏ ସଞ୍ଚର । ୨୫ ।

ଗଜକଦମ୍ବକ— ଧର ନବାମ୍ବୁଦ
ଶ୍ରାବଣେ ଅମ୍ବରେ ଦେଖି ରମଣୀ,
ଏକ ଅନୁରକ୍ତ ବଲ୍ଲଭମାନଙ୍କୁ
ଅଶ୍ଳେଷିଲେ ଦବାଗ୍ନି ନ ଗଣି । ୨୬ ।

ଇନ୍ଦ୍ରଧନୁଧାରୀ ଜଳଧର ଚୟ
ନାନାବିଧ ହେବା ଦେଖି ଗଗନେ,
ରତନକୁଣ୍ଡଳ ନାନାବିଧ ଅଂଶୁ
ରଞ୍ଜନାଶୀ ହର ପରାୟ ମନେ । ୨୭ ।

ସମୀରଗୂଳିତ ଚଞ୍ଚଳ ବାରଦେ
କ୍ଷଣେ ତିରୋଧାନ କ୍ଷଣେ ଲକ୍ଷିତ,
ବିଦ୍ୟୁତ ପରାୟ, ନବସ୍ତବ୍ଧ ତୁଲ୍ୟ
ତରୁ ପୁଷ୍ପଗୁଚ୍ଛ ହୁଏ ଶୋଭିତ । ୨୮ ।

କେଉଁ ବିଯୋଗିନୀ ନବାମ୍ବୁଦ ଦେଖି
ଜୀବନର ଅଶା ତେଜି ବିରହେ,
ଦୁଃଖିତା ଲୋଚନ— ଧାରିଣୀ ସଖୀଙ୍କୁ
ଜୀବନବାହ ଏ ନେବଟି କହେ । ୨୯ ।

ଜଳଦ ମାରୁତ ପ୍ରୋଷିତଭର୍ତ୍ତୃକା-
ମାନଙ୍କ ହୃଦୟ କର କମ୍ପନ,
ବିକଚ କନ୍ଦଳୀ— କାନନ କମ୍ପାଇ
ମାନିନୀଙ୍କ ମାନ କରେ ଭଞ୍ଜନ । ୩୦ ।

ଗମ୍ଭୀର ଧ୍ୱନିରେ ମର୍ଦ୍ଦଳ ଧ୍ୱନି କି
ପରାଜୟ କର ନବଜଳଦ,
କଳାପିକୁଳଙ୍କୁ ନର୍ତ୍ତନ କରାଏ
ତାଳେ ତାଳେ ଦେଇ ମୃଦୁଶବଦ । ୩୧ ।

କଦମ୍ବ କୁସୁମ— ଅରୁଣ ଅମ୍ବର
ଶିଳୀନ୍ଧ୍ର ସୁଗନ୍ଧି ଘେନି ପବନ,
କାମୀ କାମିନୀଙ୍କୁ ନବ ନବ ପ୍ରେମେ
ମତାଇ ଉତ୍କଣ୍ଠା କରାଏ ମନ । ୩୨ ।

ଜଳଦ ଜଳର ପ୍ରଥମ ବର୍ଷଣେ
ଶମ କଲା ତାପ ମୃତ୍ତିକା ଜଳଜ,
ନୈଦାଘଜ୍ଜା ତେଣିଲେ ଅଙ୍ଗନାମାନଙ୍କ
ବହ୍ବାର ସକାଶେ ହେଲା କି ସଜ । ୩୩ ।

ଗଜଦନ୍ତ ଶୁଭ୍ର କେତକୀ କୁସୁମ
ମଧୁକର ମୁଗ ଯହିଁ ବହରେ,
ଘନୌଘ କିଦ୍ଧାତେ ଗଗନ-ବିଚ୍ୟୁତ
ଶଶିଖଣ୍ଡ ପଣ୍ଡ ଉପମା ଧରେ । ୩୪ ।

ଦଳିତ ମୌକ୍ତିକ— ଚୂର୍ଣ୍ଣସମ ଶୁଭ୍ର
ନିର୍ଝର ଶୀକର ସୁମନୋହର,
ଧୂଳିରେଣୁ ପର କୁଟଜ କୁସୁମ-
ପରାଗ୍ନ ପ୍ରାବୃଟେ ସେ ଶୋଭାକର । ୩୫ ।

ନବ ଜଳବନ୍ଦୁ ପରାଗୁ କୋମଳ
ମାଲତୀ କୁସୁମ ସନ୍ତତ ସଙ୍ଗୀ,
ପରାଗ ପାଣ୍ଡୁର— ମଧୁକରକୁଳ
ଚଳ ଉଡୁସମ ଦେଖାନ୍ତି ଭଙ୍ଗି । ୩୬ ।

ବିଯୋଗିନୀ ବଧୂ— ଜନଙ୍କ ମାନସେ
ନବନୀପବନ ଉତ୍ସୁକ ଜାତ—
କରାଇ, ଜଳଦ— ପଟାବୃତ ଦଗ—
ମଧ୍ୟେ ଶୋଭେ ଫିଙ୍ଗି ପରାଗବ୍ରାତ । ୩୭ ।

ପ୍ରଣୟ କୋପରେ କୁପିତା ଅଙ୍ଗନା
ବାରିଦ ଗର୍ଜନ ଶ୍ରବଣେ ଭୀତ,
ପ୍ରିୟ ପାଶେ ଯାଇ ବିବଶ ଦେଖାଇ
ଦୃଢ଼ ଆଲିଙ୍ଗନେ ପରମ ପ୍ରୀତ । ୩୮ ।

ପଟସ୍ପାଦ ମାରୁତ ବହିଲା ସଧୀରେ
କରକୁର ମଧ୍ୟ ବଢ଼ ଚଞ୍ଚଳ—
ହୁଏ ବୋଲି, ଅଳି-- ସତ୍ୟକଥା କହ
ଅକର୍ଷେ କି ନବ ପଲ୍ଲବାଞ୍ଚଳ । ୩୯ ।

ଅଚିରପ୍ରଭାଂର ଭୟରେ ସ୍ୱାମିଙ୍କ-
ଗୃହରୁ ଯିବାକୁ ନ କର ମନ,
ମନ୍ମଥ ବଶରେ ଯଦୁନରେନ୍ଦ୍ରଙ୍କ
ସଙ୍ଗରେ ରମିଲେ ତରୁଣୀଗଣ । ୪୦ ।

( ଶରଦ୍‌ବର୍ଣ୍ଣନ )

ଖଗ-ନୀଡ଼ାଶ୍ରୟୀ ଛାଦିତ ଭାସ୍କର
ଦିଗ ଦୁର୍ବୋଧତା କରି ସତ୍ୱର,
ଥିଲା ଘନକାଳ, ବିପରୀତ ଋତୁ
ଶରଦ ଦେଖିଲେ ରଥାଙ୍ଗଧର । ୪୧ ।

ସ୍ମିତ ଧବଳ— ଜଳଦବସନା
ଉତ୍ପଳଲୋଚନା ଶରଦ ଶୋଭେ,
ଷିତକୃତ ଅଙ୍ଗ— ଅଙ୍ଗନା ପରାୟେ
ରଥାଙ୍ଗ ଆୟୁଧ ଦେଖନ୍ତି ଲୋଭେ । ୪୨ ।

ଭାସ୍କର କିରଣେ ମେଘବୃନ୍ଦନୈଶ-
ତମ ଦୂରହେଲା ପୁଷ୍ପିତ ପଦ୍ମ,
ମହାତ୍ମାର ଶନ୍ତୁ ଜଗତରେ କାହିଁ
ଯେଣୁ ସେ ସକଳ ଗୁଣର ସଦ୍ମ । ୪୩

ପ୍ରାଣିମାନଙ୍କର ସମସ୍ତ କେବଳ
ବଳାବଳ କରେ ବୋଲି ଏ କଥା,
ତୁଚ୍ଛୀକୃତ କରି କେକାସ୍ୱର ଗୃରୁ-
ହଂସରବ ଦେଲା କେକୀଙ୍କୁ ବ୍ୟଥା । ୪୪ ।

କାଦମ୍ବ କୂଜିତ ବଜିତ ଧ୍ୱନିରେ
ପକ୍ଷ ଦୂରକଲେ ଶିଖଣ୍ଡି ସର୍ବ,
ସୁଦୁଃସହ ଅଚି— ଜାତ ପରାଭବ
କେ ବା ସହିପାରେ ସେ ବୀରଗର୍ବ । ୪୫ ।

---

୧ । ଅଚିରପ୍ରଭା – ବିଜୁଳି ।

ପ୍ରଭାତ ବନେ ବନ— ରାଜ ବଧୂମୁଖ
ଜପାପୁଷ୍ପ ହେଲା ଅଧର ସମ,
ପୁଷ୍ପବାଣ[1] ଦଳ— ଈକ୍ଷଣ ପରାୟ
ଜନମାଏ ଚିତ୍ତୁ ନେତ୍ର ବିଭ୍ରମ । ୪୬ ।

କନକ ପିଶଙ୍ଗ ଅରୁଣ କେଶର
ବନ୍ଧୁକ କୁସୁମ ହୋଇ ବିକାଶ,
ମାନବତୀଙ୍କର ମାନ ଦୂର କରେ
ସ୍ମରଶର ପଣ ଦେଇ ସୁବାସ । ୪୭ ।

ସଲିଳେ କମଳ ଦେଖି କେଉଁ ଯୁବା
ନିଜ କାମିନୀର ସରୋଜମୁଖ—
ସର୍ବଦା ସ୍ମରଣ ବିଦେଶେ ଭ୍ରମଣ-
କରି ଲଭେ ମନେ ନିତାନ୍ତ ଦୁଃଖ । ୪୮ ।

ଶାଳି ଗୋପୀଙ୍କର -ମଧୁର ସଙ୍ଗୀତ-
ଲହର ଶ୍ରବଣେ ହରିଣଗଣ,
ଅନିମିଷନେତ୍ର ଉତ୍କଣ୍ଠେ ଲହର
ଶୁଣି ଶସ୍ୟାଦ ନ କଲେ ଭକ୍ଷଣ । ୪୯ ।

ସପ୍ତପର୍ଣ୍ଣ ଗୁଚ୍ଛ— ଗନ୍ଧେ ମତ୍ତ ଅଳି
ଗୁଞ୍ଜନରେ କରେ ମଧୁର ସ୍ୱନ,
ସମୀର ସେ ସ୍ୱନେ କହେ ଜଗତଙ୍କୁ
କାର୍ତ୍ତିକର ଦେଖ ଶୁଭାଗମନ । ୫୦ ।

ଗତ ବାରିଧର ଅବରଣ କାହିଁ
ନୀରଦ ଶ୍ୟାମଳ ଧବଳବନେ,
ଐରାବତ ଚର୍ମ ପିହିତ କକୁଭ
ଯାଦବେ ଦେଖିଲେ ବିସ୍ମୟମନେ । ୫୧ ।

ନବ ସରୋରୁହ— କେଶର ପରାଗ
ଶରଦଅଙ୍ଗନା ଅଞ୍ଚଳ-କରେ,
ପରିହାସ ଛଳେ ହରି ବଧୂସଙ୍ଗେ
ଧୂଳି ଅବା ନେଇ କ୍ଷେପଣ କରେ । ୫୨ ।

---

୧ । ବାଣ—ନୀଳଝିଣ୍ଟି ।

ହରିତବରଣ      ରକ୍ତମୁଖ ଶୁକ-
    ଅବଳି ଉଡ଼ିଲେ ଯହୁଁ ଗଗନେ,
ଦେବକୁଳ ନଭେ—      ପଲ୍ଲବମାଳା କି
    ଦେଖିଲେ ଯାଦବେ ହରଷମନେ । ୫୩ ।

ସରସୀ ପଙ୍କଜ—      ନେତ୍ରେ ବିଲୋକିଲେ
    ହସିଲେ ସିତାଙ୍ଗ ବିହଙ୍ଗ ନଭେ,
କାଶ ତୃଣ ଦନ୍ତ—      ଦର୍ଶାଇ ଶରଦ-
    ଆନନ୍ଦ, ହସାଏ ବିଶ୍ୱଗରଭେ । ୫୪ ।

( ହେମନ୍ତ ବର୍ଣ୍ଣନ )

ଗତ ପ୍ରମାଣରେ      ତୁଷାର ଜନ୍ମାଇ
    ହେମ ନଭସ୍ୱାନ ବହି ପ୍ରଖର,
ପ୍ରୋଷିତଭର୍ତ୍ତୃକା[୧]      ନାରୀଙ୍କର ନେତ୍ରୁ
    ଉଷ୍ଣଅଶ୍ରୁ ବହାଇଲା ସତ୍ୱର । ୫୫ ।

ଗ୍ରୀଷ୍ମାଦି ଋତୁରେ      ଅନଳ ସର୍ବଦା
    ସ୍ମରଣେ ରଖଇ ପ୍ରିୟାର ପାଶ,
ଉଷ୍ଣପୟୋଧରା      ଯୌବନାକୁଳକୁ
    ତୁହିନ ଅନଳ କରୁ ବିନାଶ । ୫୬ ।

ଯେଉଁ ନାରୀ କୋପେ      ସ୍ୱାମିସଙ୍ଗତରେ
    ମାନ ଧରିଥାଏ ନ କ୍ଷଣମାତ୍ର,
ହେମନ୍ତ ଆଗମେ      କର୍ମତ୍ୟାଗୀ ହୋଇ
    ହସି ସେ ଆଶ୍ଳେଷେ ସ୍ୱାମିର ଗାତ୍ର । ୫୭ ।

ଅଧରପଲ୍ଲବ      ମୁକ୍ତ ହେତୁ ବ୍ରଣ
    ହିମମାରୁତରେ ଲଭଇ ଦୁଃଖ,
ଶୀତ୍କାରେ ଦଶନ—      ରଶ୍ମି ଆଚ୍ଛାଦିତ-
    ପ୍ରାପ୍ତ ଶୋଭା ଦିଶେ ରମଣୀମୁଖ । ୫୮ ।

କୋମଳ ଅଧରେ      ଦନ୍ତକ୍ଷତ ବ୍ରଣ
    ପୀଡ଼ଇ ସତତ ହିମମାରୁତ,
ଶୀତ୍କାର କାଳରେ      ଦଶନ ମୟୂଖ-
    ପଟରେ ଆଚ୍ଛାଦଇ ତାହା ଦ୍ରୁତ । ୫୯ ।

---

୧ । ପ୍ରୋଷିତଭର୍ତ୍ତୃକା—ବିୟୋଗିନୀ, ଯାହାର ସ୍ୱାମୀ ବିଦେଶେ ଥାଏ ।

ଚୁମ୍ବନ ଶୀକର— ବାହ୍ମ ନବସ୍ନାନ
ଧନୁ ଲତାଙ୍ଗୁଳି ଦ୍ୱାରା ତର୍ଜ୍ଜନ—
କରେ ତେଣୁ ଯୁବା ଯୁବତୀ ବକ୍ଷୋଜ
ଧାରଣ ସୁଖ ନ କରେ ଅର୍ଜନ । ୭୦ ।

କନ୍ଦର୍ପ ପ୍ରେରିତ ପରଁନାରୀଗଣ
ଅକୃତମ ପ୍ରେମେ ସ୍ୱାମିସଙ୍ଗରେ,
ଅସ୍ୱେଦ ହେମନ୍ତ— ଦୀର୍ଘ ରଜନୀରେ
ରମଣ କରନ୍ତି ନାନାରଙ୍ଗରେ । ୭୧ ।

( ଶିଶିର ବର୍ଣ୍ଣନ )

ବନରେ ପ୍ରିୟଙ୍ଗୁ— ଲତା କୁସୁମିତ
ଉନ୍ମତ୍ତା ଅଳିନୀ ରବେ ଝଙ୍କାର—
ଦେଇ, ପତିଦୁଷ୍ଟା ନାରୀଙ୍କ ତର୍ଜ୍ଜଇ
ଶିଶିର ଅନଳ କୋପେ ହୁଙ୍କାର । ୭୨ ।

କାଳର ବଶରେ ବଳବାନ ମଧ୍ୟ
ପ୍ରବୃଦ୍ଧ ଶତ୍ରୁରେ ହୁଏ ଦୁର୍ବଳ,
ଶିଶିରେ ଭାସ୍କର ମନ୍ଦରଶ୍ମି ହୋଇ
ହିମବନାଶରେ ନ କଲେ ବଳ । ୭୩ ।

ସ୍ତମ୍ଭିତ ସୈନ୍ୟଙ୍କ ଉତ୍କ୍ଷିପ୍ତ ପରାଗ-
ବିପାଣ୍ଡୁର ଲୋଧ୍ର କୁସୁମକାନ୍ତି,
କନ୍ଦର୍ପ ଅକାନ୍ତ ପର ଦିଗକୂଳ
ଜନ୍ମାଇଲେ ସର୍ବ ମନରେ ଭ୍ରାନ୍ତି । ୭୪ ।

ଶିଶିର ଶେଷରେ ଶୀତହାରୀ ଅମ୍ଳ-
କୁରେଷ୍ଟାର ଅଭୁ ହେବ କି ଫଳ,
ଏତେ ଭାବି ନାରୀ- ଗଣ କୋପ ତେଜି
ସ୍ୱାମିଆଲିଙ୍ଗନେ ମନ ପ୍ରବଳ । ୭୫ ।

ଲବଙ୍ଗ କୁସୁମ— ଅଧିକ ରଜରେ
ଭୂଷିତ ମଳିନ ମତ୍ତଭ୍ରମର,
କୁନ୍ଦଲତା ପୁଷ୍ପେ ହସେ, ରଜସ୍ୱଳା-
ଗାମୀ, ପାପୀ ଦୁଷ୍କରେ ମଧୁକର । ୭୬ ।

( ପୁନଃ ବସନ୍ତ )

ଅତ୍ୟନ୍ତ ସୁରଭ ସନ୍ତାନ ପାଦପ-
କୁସୁମ ସମ୍ପଦେ ପରଶୋଭିତ,
କାମବୃଦ୍ଧି ପାଇଁ ବସନ୍ତେ କୋକିଳ
ଅନଙ୍ଗ କି ଅବା ହେଲା ବାଦିତ । ୬୭ ।

ମକରନ୍ଦସେବି— ମଧୁକରକୁଳ
ବସନ୍ତ-ବାସରେ କର ଗୁଞ୍ଜନ,
ଚୂତବୃକ୍ଷେ ବସି ମଧୁମତ୍ତ ହୋଇ
ମାନିନୀଙ୍କ ମାନ କଲେ ଭଞ୍ଜନ । ୬୮ ।

ଜଗତକୁ ବଶ— କରଣେ ସମର୍ଥ
କନ୍ଦର୍ପର ସୈନ୍ୟ ଚଳିଲେ ଅଗ୍ରେ,
ପ୍ରାଣି ବିଜୟର ବୈଜୟନ୍ତୀ ପରି
ରମ୍ଭାତରୁ ଊର୍ଦ୍ଧ୍ୱେ ଟେକିଲେ ଆଗେ । ୬୯ ।

ସ୍ମର-ତିମିରରେ ନାରୀଙ୍କର ମାନ-
ଭାନୁ ଦ୍ରୁତ ତହୁଁ ହେଲାଚ୍ଛାଦିତ,
କୋକିଳ କୂଜନେ ଦିବା ନାରୀଗଣ
ସ୍ୱାମିଙ୍କର ଅଙ୍ଗେ ହେଲେ ଜଡ଼ିତ । ୭୦ ।

( ପୁନଃ ଗ୍ରୀଷ୍ମ )

ଗ୍ରୀଷ୍ମକାଳେ ଅମ୍ବୁ— ବିହାର ଶୀତଳ
ରମଣୀୟତର ଶରୀର କରି,
ନାରୀଗଣ ସ୍ୱାମି— ଅଙ୍କେ ବିଶୋଭିଲେ
ଶାରଦ ଅଭ୍ରରେ ବିଜୁଳି ପରି । ୭୧ ।

( ପୁନଃ ବର୍ଷା )

ବାରିଦ ବର୍ଷଣେ ବୃଦ୍ଧି ଶୈବଳିନୀ
ମୟୂର ପାଦପେ କରେ ନର୍ତ୍ତନ,
କଦଳୀ କୁସୁମେ ଭ୍ରମନ୍ତ ଭ୍ରମର-
ଗଣ ମନୋଜାତ କରି ବର୍ଦ୍ଧନ । ୭୨ ।

ରୈବତକ ଶୈଳ— ମଧ୍ୟଦେଶେ ଭ୍ରମି
ଧୀର ମନ୍ଦ୍ରେ ଗର୍ଜଇ ପୟୋଧର,
କୁଟଜ ସୁଗନ୍ଧେ କେକୀ ନୃତ୍ୟ ଦେଖି
ନାରୀବକ୍ଷଁ ଜନ୍ମୁକ୍ତ ପୟୋଧର । ୭୩ ।

( ପୁନଃ ଶରତ୍ )

ଶରଦରେ କାଶ ସରସୀ ପଙ୍କଜ
କଲହଂସଯୁକ୍ତ ନିର୍ମଳ ବାରି,
କମନୀ[1] କାମିନୀ ପ୍ରିୟ ଅଶ୍ଳେଷିଲେ
ମନୋଜନ୍ମଦୁଃଖ ସହି ନ ପାରି । ୭୪ ।

ଉତ୍ସୁକ ସାରସ ମଧୁର କୂଜନେ
କାମୋତ୍ସୁକ ନାରୀଗଣ ସତ୍ୱର,
ସୁରୋତ୍ପ୍ତ ସ୍ତନ— ସ୍ୱେଦବିନ୍ଦୁ ମୁକ୍ତା-
ମାଳେ ବିମର୍ଣ୍ଣିଲେ ପତିଙ୍କ କର । ୭୫ ।

ସାରସୀର କାକୁ[2]— ଶୁଣି ଯେଉଁ ନାରୀ
କାମାର୍ତ୍ତେ କାନ୍ତକୁ ଖୋଜଇ ରୋଷେ,
ଏକାନ୍ତେ କାନ୍ତକୁ ପାଇ ସେହି ନାରୀ
ରୋଷ ତେଜି ସ୍ୱାମିମନକୁ ତୋଷେ । ୭୬ ।

( ପୁନଃ ହେମନ୍ତ )

କାମଉଦ୍ଦୀପକ ଅସବେ ତୋଷିତ
ହେମନ୍ତ ନିଶାରେ ଯୁବକଗଣ,
ସୁରର୍ତ୍ତ୍‌କାମିନୀ— ଗଣ ସଙ୍ଗେ ଦୀର୍ଘ-
ନିଶାରେ କରନ୍ତି ଦୀର୍ଘ ରମଣ । ୭୭ ।

---

୧ । କମନୀ —କାମାତୁର ।

୨ । କାକୁ—କାତରଶବ୍ଦ ।

( ପୁନଃ ଶିଶିର )

ଲବଙ୍ଗ ଲତାରେ ଲଗ୍ନ ଭୃଙ୍ଗାବଳି
ଶିଞ୍ଜିରେ କରନ୍ତି ମଧୁରସ୍ୱନ,
କାମୀ କାମିନୀଙ୍କୁ କାମ ଉତ୍ସବରେ
ମତାଇ ସର୍ବଦା ହରନ୍ତି ମନ । ୬୮ ।

ଫଳପୁଷ୍ପଭରେ ରୈବତକ ଗିରି
ଦିଶେ ଅତ୍ୟନ୍ତ ଶୋଭନ,
ସର୍ବଋତୁ ଘେନି ଶ୍ରୀମାନ ହରିଙ୍କ
ବଢ଼ାରେ ତୋଷଇ ମନ । ୬୯ ।



# ସପ୍ତମ ସର୍ଗ

ସର୍ବଋତୁ ନିକେବତ      ରୈବତକ ମହୀଧର
ବନଶୋଭା ଦେଖାଇବା ପାଇଁ,
ଅଗ୍ରାଧିଲ୍ଲ ସମାଦରେ      ହରି ମୋଦେ ବାନ୍ଧବଲେ
ମହତେ ନିଷ୍ଫଳ ଯତ୍ନ କାହିଁ । ୧ ।

ବନ୍ଧୁବଧ ସୁମନସେ      ବନରାଜି ସୁଶୋଭିତ
ଗମନ ଇଚ୍ଛୁକ ଯଦୁଗଣ,
ଯୁବତି ନ ଥିଲେ ସଙ୍ଗେ      ପଞ୍ଚପୁଷ୍ପ କାମଅସ୍ତ୍ର[୧]
କେ ବନରେ କରନ୍ତା ସହନ । ୨ ।

ସ୍ୱଭାବ ସୁନ୍ଦରରୂପ      ହୃଦୟହାରିଣୀ ନାରୀ
ଅବସର ପାଇ କ୍ଷଣେ କ୍ଷଣେ,
ବିଭ୍ରମ-ସମ୍ପଦ ଧରି      ଅବନି ପାଦଚାରିଣୀ
ହୁଅନ୍ତି ମହାହରଷ ମନେ । ୩ ।

ଲଳିତ ଗଗନେ ନାରୀ      ନଖରୁଚି ଇନ୍ଦ୍ରଗୁପ
ସୁରୁଚିରତା ଧାରଣ କରେ,
କରସ୍ଥ ବଳୟରାଜି      ପୃଥୁଲ ନିତମ୍ବେ ବାଜି
ଶିଞ୍ଜନେ ଯୁବକ ମନ ହରେ । ୪ ।

କଟିଦେଶେ କଟିସୂତ୍ର      ରତନ କିଙ୍କିଣୀଯୁକ୍ତ
ସୁନ୍ଦରେ ସୁନ୍ଦର ସୁରତନ,
ନିବିଡ଼ଜଘନ ସ୍ଥଳେ      ବାଜି ମଞ୍ଜୁ ଧ୍ୱନି କରେ
ଧୀରପଦେ କରନ୍ତେ ଗମନ । ୫ ।

---

୧ । କାମଅସ୍ତ୍ର—ପଞ୍ଚପୁଷ୍ପ—ଅରବିନ୍ଦ, ଅଶୋକ, ଚୂତ, ମଲ୍ଲିକା, ନୀଳୋତ୍ପଳ।

ଅତି ସ୍ଥୂଳ ନିତମ୍ବର— ଭରଭାରେ ନାରୀଙ୍କର
ଚରଣଯୁଗଳୁ ସ୍ୱେଦ ଦ୍ରବ,
ଅଲକ୍ତକ ଛଳେ ତଳେ ବହି ପଦଚିହ୍ନ ଧରେ
ଦେଖାଏ କି ନିତମ୍ବ ଗୌରବ । ୬ ।

ମମ ସଖୀ ତବ ପାଶେ ଅଚିରେ ଅଣିବି ବୋଲି
ତାଙ୍କ ଅଗେ ଅସିଅଛୁ କହି,
ଦ୍ରୁତ ମହତୀ ପ୍ରତିଜ୍ଞା ଉପକାରେ ତବ ସିନା
ମିଥ୍ୟାବାଦିନୀ ନ କର ସହି । ୭ ।

ଜାଣେ ମୁଁ ଶୁଭାଙ୍ଗି ! ତବ ମହାନ ନିଶ୍ଚୟ ଯାହା
ଅନ୍ୟଦ୍ୱାରା ନୁହେ ଭଙ୍ଗସାଧ୍ୟ,
ତଥାପି ମୋ କଥା ସଖୀ ମାନେ ବୋଲି ମୁଁ ଗର୍ବିଣୀ
ସେଥିପାଇଁ କରୁଅଛୁ ବାଧ୍ୟ । ୮ ।

ହେ ସୁନ୍ଦର ! ତୁମ୍ଭଙ୍କୁ ମୁଁ ନେଇ ନ ପାରିଲେ ତବ
ଶୁଣିବା ଥାଉ ମୋ କଟୁକଥା,
ନିଶ୍ଚିତ ବିରୋଧେ ସିନା ହସିବେଟି ଶତ୍ରୁବର୍ଗ
ତାଙ୍କ ଇଚ୍ଛା ସଫଳ ସର୍ବଥା । ୯ ।

ଧୃତିହୀନା ହୋଇ ମୁହିଁ ତବ କଥା ଅଶ୍ରବଣେ
ଜୀବନଧାରଣେ ନୁହେଁ କ୍ଷମ,
ମାନିନି ଗୋ ! ଅନୁଗ୍ରହ ନୋହିଲେ, ମୋ ପ୍ରାଣ ପାଇଁ
କୃପାଳୁ ହୁଅ, ନ ହୁଅ ଯମ । ୧୦ ।

ଅନ୍ୟସଙ୍ଗ-ରୋଷେକ୍ଷଣା ବନିତା ଚରଣ ତଳେ
ପଡ଼ିବାରୁ ସଖୀ ବାର ବାର,
ସଖୀକଥା ଅନୁରୋଧେ କଥମପି ହୀନକ୍ରୋଧେ
ପ୍ରିୟ ପ୍ରତି କଲା ସେ ସ୍ୱୀକାର । ୧୧ ।

କେଉଁ ସଖୀ କହେ ହସି ଯୁବକ ! ଏ ଅନୁଗାକୁ
ତେଜ କିପାଁ ଏ ଦ୍ରୁତ ଗମନ,
ଜାଣୁଥିବ ତବ ମନ ସ୍ତନ ଜଘନ ବହନ
କେତେ ଭାର, ଦ୍ୱିତୀୟେ ଏ ବନ । ୧୨ ।

ସଖୀଗଣ କଥା ଶୁଣି          ହସି ସେ ଯୁବକମଣି
ପ୍ରତୀକ୍ଷା କରି କହୁତ ଷଣ,
ଧୀରପଦ ଗମନରେ          ଅବନୀ ମାପିଲା ପ୍ରାୟ
ଦୟିତା ସଙ୍ଗେ କଲା ଗମନ । ୧୩ ।

କେଉଁ ନାରୀ କହେ ସଖି !   ଅଗ୍ରେ ଗଲେ ମୋ ଦୟିତ
ତୁମ୍ଭେ ଯଦି ହେବ ଗୋ ସହାୟ,
ଦ୍ରୁତପଦ ଗମନରେ          ଯିବି ତବ ସଙ୍ଗତରେ
ଭେଟିବି ପ୍ରିୟଙ୍କୁ କାମପ୍ରାୟ । ୧୪ ।

ପ୍ରିୟଭୁଜେ ଛନ୍ଦାଛନ୍ଦ          ହୋଇ କେଉଁ ସୁଲକ୍ଷଣୀ
ବନମାର୍ଗ ଗମନେ ତାହାର—
ଏକ ସ୍ତନ ସ୍ୱାମିବକ୍ଷେ          ପଡ଼ିତ ଉତ୍ପତିତରେ
କନ୍ଦୁକ ବିଭ୍ରମ ବାର ବାର । ୧୫ ।

ଅନ୍ୟ ନାରୀ ପୃଥୁସ୍ତନ          ବସ୍ତ୍ରରୁ କରି ବାହାର
ଦକ୍ଷିଣ ବାହୁରେ ସ୍ୱାମିଗ୍ରୀବା,
ଦୃଢ଼େ ଧରି ସେ ସୁନ୍ଦରୀ          ସ୍ୱାମିବାମକର ଆଣି
ନିଜ ବାମକରେ ରୋଧେ କିବା । ୧୬ ।

ନିତମ୍ବମଣ୍ଡଳଦେଶେ          ସୁଶିଞ୍ଜିତ କାଞ୍ଚିଦାମ
ପ୍ରିୟଅଙ୍ଗେ ଯାଉଥାଏ ବାଜି,
ସ୍ୱାମିଉରସ୍ଥଳେ ସ୍ତନ          ନିପୀଡ଼ନେ ହାରଯଷ୍ଟି
ବକ୍ଷମଧ୍ୟେ ଅଛଇ ବିରାଜି । ୧୭ ।

ମଧୁର ନୂପୁରନାଦେ          ବାମପଦ-ସରୋଜକୁ
ନର୍ତ୍ତନେ ବିନ୍ୟାସ କରେ ଧୀରେ,
ଦକ୍ଷିଣ ପାଦକୁ ନେଇ          ପଦଚିହ୍ନେ ରଖି ଚଳେ
ସେ ମନ୍ମଥ ମନ୍ଦୁରଗଡରେ । ୧୮ ।

ଅପର ଅବଳା ନେଇ          ସ୍ୱାମିସ୍କନ୍ଧେ ବେଣୀ କର-
ପଲ୍ଲବକୁ କରି ସଂସ୍ଥାପନ,
ସ୍ଥୂଳକଠିନ କୁଚାଗ୍ରରେ          ପ୍ରିୟ ପୃଷ୍ଠଦେଶ ପୀଡ଼େ
ବିଳାସେ କରେ ଅନୁଗମନ । ୧୯ ।

ନିତମ୍ବମଣ୍ଡଳ ରୋଧୀ     ନିବଡ଼ ଜଘନ ଭରେ
ପ୍ରିୟସ୍କନ୍ଧେ ଦେଇ ନିଜକର,
ଅଗ୍ରେ ଚଲେ ନିତମ୍ବିନୀ     ଉନ୍ନତକୁଚଶୋଭିନୀ
ସ୍ୱାମିଙ୍କି କହେ ଅସ୍ପ ସତ୍ୱର । ୨୦ ।

ପ୍ରବେଗାମିନୀ ରମଣୀ—     ବାହୁମୂଳେ ଦେଇ କର
ସ୍ତନଦ୍ୱୟ ଦୃଢ଼େ ଧରି କରେ,
କାମୀ କରେ ଆକର୍ଷଣ     ଗଣ୍ଡରେ ଦେଇ ଚୁମ୍ବନ
ନାରୀ ପୁଲକିତ ପ୍ରେମଭରରେ । ୨୧ ।

ସଖୀଗଣ ସଙ୍ଗେ ଅଗେ     ଯାଇ ମନୋରମ ସ୍ଥାନେ
ଆନନ୍ଦରେ କେ କରେ ଭ୍ରମଣ,
କେଉଁ କାମୀ ନାରୀପଦ     ଅଲକ୍ତକ ଚିହ୍ନ ଦେଖି
ସେହି ମାର୍ଗେ କରଇ ଗମନ । ୨୨ ।

ମଦନରସରେ ପୂର୍ଣ୍ଣ—     ନାରୀ, ହ୍ରଦର ସମାନ
ଲୋମରାଜି ଉଚ୍ଛ୍ୱାସ ଜଳର,
ତରଙ୍ଗିଣୀ ପରି ନାରୀ     ସମ୍ଭ୍ରମ ଗମନରେ
ହଂସସ୍ୱନ ନାଦ ଭୂଷଣର । ୨୩ ।

ଜନତା ମନଃ ପୀଡ଼କ     ମନ୍ମଥର ଗୃପ ନାଦ-
ସମ ଶଙ୍କା ଉପୁଜାଇ ମନେ,
ନଦୀପାର୍ଶ୍ୱେ ନାରୀଗଣ     ରମ୍ୟ ସାରସ କୂଜନ
ଶୁଣିଲେ ରୈବତକ କାନନେ । ୨୪ ।

ଅଳିକୁଳ ଲତାପୁଷ୍ପେ     କେଳି କଲେ ମନଃ ସୁଖେ
ମହୀରୁହ ନେତ୍ରବର୍ତ୍ମରେ,
ବନ ନବପଲ୍ଲବର—     ଅଙ୍ଗୁଳି ଚାଳନ କରି
ଅଭିନୟ କାର୍ଯ୍ୟ କିବା କରେ । ୨୫ ।

କାନନ ଅନିଳ ଧୀରେ     କୁସୁମ ସଂସକ୍ତ ଅଳି-
କୁଳକୁ ପୁଷ୍ପରୁ ବିସ୍ଖଳନ
କରି, କୁସୁମ ପରାଗ     ବଧୂ ଅଙ୍ଗେ ଦେଇ ଆଣି
ପ୍ରଫୁଲ୍ଲ କରଇ ତାଙ୍କ ମନ । ୨୬ ।

ଉପବନ ପବନର ସଙ୍ଗେ ଉଡ଼ି ଅଳକୁଳ
ଅଙ୍ଗନାଗଣଙ୍କ ପରିମଳେ,
ମତ୍ତେ ଉଡ଼ି ଏଣେ ତେଣେ ନାରୀ ପଛେ ଗୁଞ୍ଜସ୍ୱନେ
ବିଭ୍ରାନ୍ତ ନାରୀଙ୍କୁ ସକଳେ । ୨୭ ।

ରଥର ଚରଣଧାରୀ ସୁମନସ ଅଦ୍ଧକର
ଅଙ୍ଗନା କର ସମ୍ପର୍କ ଯେଣୁ,
ସନ୍ତୁଷ୍ଟ ହେବାରୁ ମନ ଜଗତରେ ସେହିଦିନରୁ
ସୁମନା ନାମ ହୋଇଛି ତେଣୁ । ୨୮ ।

ଅଭିମୁଖରେ ପତିତ ଉଜ୍ଜ୍ୱଳ ତରୁପଲ୍ଲବ
ନାରୀକରେ ଯେଣୁ ପରାଜିତ,
ଅଙ୍ଗନାଙ୍କ ଜିତ କରେ ଗମନକାଳେ ମାର୍ଗରେ
ପଦେ ପଦେ ହେଲା ସୁଚ୍ଛେଦିତ । ୨୯ ।

ଶାଖୀ ଭୁଜରେ ଗୃହୀତ ଉନ୍ନତ ମଧୁପ୍ରଫୁଲ୍ଲ
ବଲ୍ଲରୀଙ୍କଲେ କରନ୍ତି ଚୁମ୍ବନ,
କମ୍ପିତ କରକଙ୍କଣ ଅନ୍ୟରୁ ସୁନ୍ଦରୀ ନାରୀ
ଶିରେ ତରୁ କୁସୁମ ବର୍ଷଣ । ୩୦ ।

ସନ୍ତତ ରସରେ ମାତି ସ୍ତନେ କରି ନଖକ୍ଷତ
ଯୁବକେ ହୋଇ ନିର୍ଦ୍ଦୟ ମନ,
ତରୁଣ ପଲ୍ଲବ ଘେନି ତରୁଣୀଗଣ ମୋଦରେ
କ୍ଷତସ୍ଥାନେ କରନ୍ତି ସ୍ଥାପନ । ୩୧ ।

କେ ନାରୀ ପୁଷ୍ପଚୟନେ ପ୍ରିୟାଗ୍ରେ ଉର୍ଦ୍ଧ୍ବ ଭୁଜ କରି
ନବ ନଖକ୍ଷତ କକ୍ଷସ୍ଥଳ—
ଦେଖାଏ, ଅପର କରେ ସ୍ତନ ଢାଙ୍କି ଅଂଶୁକରେ
ଚପଳ ସଞ୍ଚାରି ଭାବପର । ୩୨ ।

କେଉଁ ନାରୀ ଊର୍ଦ୍ଧ୍ବନେତ୍ରେ ଉନ୍ନମନ କରି ଗାତ୍ର
ପାଦପୁ ପୁଷ୍ପ କରେ ଚୟନ,
ପୃଥୁସ୍ତନ ସୁନ୍ଦିବଳି ଦର୍ଶନ-ଲୋଲୁପ ଯୁବା
ନିମିଷେ ନ ଫେରାଏ ନୟନ । ୩୩ ।

ଅତ୍ୟୁନ୍ନତ କୁଚଯୁଗ    ସୂକ୍ଷ୍ମବସ୍ତ୍ର ଢେଙ୍କା ଭଚେ
ଅକସ୍ମାତ ହେବାରୁ ସ୍ରଂସିତ,
ରହିଲ କହିଦେଶରେ    ଉଦରସ୍ଥ ନାଭିରନ୍ଧ୍ର
ଦେଖି ଯୁବା ହୁଏ ଆନନ୍ଦିତ । ୩୪ ।

କେଉଁ ନାରୀ ବନ ମଧ୍ୟେ    ସମ୍ମୁଖେ ସ୍ୱାମିଙ୍କ ସ୍ଥିତ
ନ ଜାଣି କୁସୁମ ତରୁ ଅଗ୍ର,
ଚୟନ ଛଳେ ସୁନ୍ଦରୀ    ବୃକ୍ଷେ ଏକ ପଦ ଦେଇ
ହସ୍ତ ସଞ୍ଚାଳନ କରେ ବ୍ୟଗ୍ର । ୩୫ ।

ଏହି ସ୍ଥାନେ ତବ ପ୍ରିୟ    ଅଛନ୍ତି ବୋଲି କେ ସଖୀ
କହିବାରୁ ରମଣୀ ତ୍ୱରିତ,
କୁସୁମ ଚୟନ ତେଜି    ଅଂଶୁକେ ଆଚ୍ଛାଦି ଅଙ୍ଗ
ଗଲେ କରି ନୂପୁର ଶିଞ୍ଜିତ । ୩୬ ।

ସହସା ସ୍ୱାମିଦର୍ଶନେ    ମନସିଜ ଗୁରୁ ଶିକ୍ଷା-
ଧାରି କଳକଣ୍ଠିତ ଆଚରି,
ହରଷ କୋଧାଶ୍ରୁ ଭୀତ-    ସଙ୍କର[୧] କଲା ଝଟିତ
ଘର୍ମ୍ମିତ ଚକିତ ମୁଖ କରି । ୩୭ ।

ନତ କରି ମୁଖଇନ୍ଦୁ    ସ୍ୱାମିଠାରୁ ଦୂରସ୍ଥିତ
ଅଭିଳାଷେ ଲଳନାରତନ,
ମନୋହର କ୍ରୀଡ଼ା ଭାବ    ଦେଖାଇ ହରିଲା ମନ
ତ୍ରପା ଅଟେ ରମଣୀଭୂଷଣ । ୩୮ ।

କିସଲୟ ଗୁରୁ ଲେଖ    ଅପାଠ୍ୟ ମୁକର ହେତୁ
ପ୍ରିୟା ପ୍ରିୟକରେ ସମର୍ପଣ—
କରିବାରୁ, କର ସ୍ପର୍ଶେ    ପୁଲକିତ ଲୋମରାଜି
ମନସିଜ କଲା ଆକ୍ରମଣ । ୩୯ ।

---

୧ । ହରଷ, କୋଧ, ଅଶ୍ରୁ, ଭୀତର ସଙ୍କର ।

କୃତକ ରୋଷରେ ନାରୀ ଅଳି-କଣ୍ଠ ମାଳା ନେଇ
ନଜାଣୁ କରାଇ ପରିଧାନ,
ସ୍ୱାମିପାର୍ଶ୍ୱେ ବସି କ୍ଷଣେ ଊର୍ଦ୍ଧ୍ୱ କରେ ଭୁଜମୂଳ
ଦେଖାଇ ଶିର କୁସୁମବାନ । ୪୦ ।

ମଧୁ ସୁରଭି ଲୋଭରେ ଅଳି ତବ ମୁଖାବ୍ଜରେ
ପତନ ଇଚ୍ଛାରେ ଅଛି ଧାଇଁ,
ବଦନସରୋଜ ତବ ଅକମ୍ପନେ ଥିବୁ ବୋଲି
ଅନ୍ୟ କହେ ଅଳି ପାଶେ ଯାଇ । ୪୧ ।

ସପରାଗ ମକରନ୍ଦ ପୂର୍ଣ୍ଣ, ତରୁ କୁସୁମରେ
ମଧୁପକୁଳ ଅଛନ୍ତି ବସି,
ତବ ମୁଖପଦ୍ମ ଦେଖି ମତ୍ତ ଅଳିକୁଳ ଭ୍ରମେ
ପଡିବେ ତବ ବଦନେ ଖସି । ୪୨ ।

ଅଳି ମୁଖୁଁ ଶୁଣି ଏହା ଭ୍ରମର ଭ୍ରାନ୍ତିରମଣୀ
ଭୟେ କରି ମୁଦ୍ରିତ ଲୋଚନ,
ବଲ୍ଲଭ ଅଙ୍କରେ ଆସି ପ୍ରବେଶିଲା ଭୟେ ବାମା
କାତରତା ଅଙ୍ଗନା ଲକ୍ଷଣ । ୪୩ ।

ନବପଲ୍ଲବତନୟନା ଅନ୍ୟମନା ଯୁବତିର
ମୁଖପଦ୍ମ ଯୁବକ ଚୁମ୍ବଇ,
ଉଦ୍‌ଗତଯୌବନା ଯେଣୁ ମୁଗ୍ଧ, ଭାବେ ସଦା ମତ୍ତ
କପୋଳ ଚୁମ୍ବନ ନ ଜାଣଇ । ୪୪ ।

ବ୍ରତତିବତତି ମଧ୍ୟେ ଲକ୍ଷିତ ସପତ୍ନୀ ଯୁବତୀ
ଅନ୍ୟ ନାରୀ ସ୍ୱାମି ସଙ୍ଗତରେ,
ବହରଇ ଦେଖି ରୋଷେ ଈର୍ଷାରେ କରକମ୍ପନେ
ରତ୍ନବଳୟ ଶିଞ୍ଜନ କରେ । ୪୫ ।

ଯେଉଁ ବମୁଗ୍ଧ ଯୁବତି ତରୁବେଷ୍ଟିତ ବଲ୍ଲୀର
ବଲୋକ କରେ ଅନୁକରଣ,
ଚପଳ ଦୋଷେ ଦୂଷିତ ହୋଇ ବାମା ଅଳି ଅଗ୍ରେ
ବଲ୍ଲଭକୁ କରେ ଆଲିଙ୍ଗନ । ୪୬ ।

ଉନ୍ନତ ସ୍ତବକଗୁଚ୍ଛ ତୋଳିବାକୁ କେଉଁ ନାରୀ
ସ୍ୱାମି ବାମସ୍କନ୍ଧେ ଦେଇ କର,
ଅବରୋହଣାଭିଳାଷିଣୀ କଳଭକୁମ୍ଭ ବିଭ୍ରମ-
ସ୍ତନେ ଭର ଅଚ୍ଛାଦେ ସତ୍ୱର । ୪୭ ।

କେ ରମଣୀ ତରୁଅଗ୍ର- କୁସୁମ ଗ୍ରହଣ ଇଚ୍ଛି
କୋମଳ ଚରଣେ ହୋଇ ସ୍ଥିତ,
ସ୍ତନଭରେ ହୋଇ ନମ୍ର ନିରବଲମ୍ବନା ନାରୀ
ସ୍ୱାମି ଅଙ୍ଗେ ହେଲା ନିପତିତ । ୪୮ ।

ପାଦପ ଅଗ୍ରଜ ପୁଷ୍ପ ତୋଳି ଦିଅ ବୋଲି କେଉଁ
ନାରୀ ନିଜ ବଲ୍ଲଭକୁ କହେ,
ତୁମ୍ଭେ ତୋଳ ବୋଲି ପୀନ— ସ୍ତନାକୁ ଉଞ୍ଚାଏ ଊର୍ଦ୍ଧ୍ୱେ
କାମଅଗ୍ନି ଯେଣୁ ତନୁ ଦହେ । ୪୯ ।

କେ ଯୁବକ ରମଣୀକି ପୁଷ୍ପ ତୋଳ ଏହା ତୋଳ
ବୋଲି ଘେନିଯାଏ ଅଗ୍ର ଅଗ୍ର,
ଏକାନ୍ତେ କରେ ରମଣ କୁସୁମ ଲୋଭ ଦେଖାଇ
ମନୋଭୂ ଜନକୁ କରେ ବ୍ୟଗ୍ର । ୫୦ ।

ବିଜନ ବିଲୋକି ନାରୀ ସ୍ୱାମିଙ୍କ ବଳେ ଆକର୍ଷୁ
ନିକଟେ ଦେଖି ସପତ୍ନୀ ଜନ,
ସ୍ୱାମି ତେଜ ଅପସୃତ ଇଚ୍ଛା କରି ଅଲକ୍ଷରେ
ବଲ୍ଲଭକୁ କରେ ଆଲିଙ୍ଗନ । ୫୧ ।

ସପତ୍ନୀ ଗୃହେ ରଜନୀ ଯାପିତ ଜାଣି କେ ନାରୀ
ଈର୍ଷା ରୋଷେ ଜର୍ଜରିତ ଗାତ୍ର,
ଏକ ପାଦ ମଧ୍ୟ ଯିବା ଭୟେ ନ ପାରଇ ଗୃହ
ଶକ୍ତି ହୃତ ହୁଏ ଭୀତ ମାତ୍ର । ୫୨ ।

ଖଣ୍ଡିତା ନାୟିକା ନମ୍ରେ ପୁଷ୍ପ ଦେଇ ତୋଷିବାରେ
କହେ ମୁହିଁ ନୁହେଁ ଯୋଗ୍ୟ ତବ,
ରଜନୀ ଯାପିଲ ଘେନି ତାକୁ ଦିଅ, ତୁଲ୍ୟଯୋଗ
ବିଟପଜ ତୁମ୍ଭେ ତ କତବ । ୫୩ ।

ସର୍ବଜନ ସୁପ୍ରସିଦ୍ଧ ତବ ଅପ୍ରିୟ କାର୍ଯ୍ୟରେ
କର୍ଣ୍ଣଯୁଗ ପୂରିଛି ମୋହର,
ନବପଲ୍ଲବ ପ୍ରସୂନେ କର୍ଣ୍ଣ ପୂର ଧାଇଁ କପଟ
ହେ କେଶବ ! ବୃଥା ଯତ୍ନ କର । ୫୪ ।

ଅଳିନାଦ ଉପହାସେ ଘଣୀକ ଭ୍ରମର କପଟ
ବ୍ୟର୍ଥେ ଦେଉଅଛ ଏକ୍କ କଳି[1],
ସପତ୍ନୀ ଗୃହରେ କାଶ ଯାପିଲ ଦନରୁ ସିନା
ପ୍ରିୟାକୁ ପ୍ରଦାନ ଅଛ କଳି[2] । ୫୫ ।

ଅନ୍ୟ ନାରୀ କହିବାରୁ ଅକର୍ଣ୍ଣ ଲୋଚନ ଟାଣି
ରୋଷେ ନୀଳଅମ୍ବୁରୁହେକ୍ଷଣା,
କାନ୍ତେ କୁସୁମବିଶିଖ ପ୍ରହାର କଲାଏ ବାମା
କାନ୍ତ ଭାବେ ଏ ଯେ ସୁଲକ୍ଷଣା । ୫୬ ।

ଆନନ ଅନଳେ କାନ୍ତ ପ୍ରିୟା ନେତ୍ର ପୁଷ୍ପରଜ
ଦୂର କରିବାରୁ ଅନ୍ୟ ନାରୀ,
ଈର୍ଷା ରୋଷେ ଦେଖି ତାହା ଉଭୟ ନେତ୍ରରୁ ଦ୍ରୁତ
ବହାଇଲା ଶୁଭ୍ର ରଜବାରି । ୫୭ ।

ଏହା ତ ଅଟେ ନିଶ୍ଚିତ ନାରୀ ଅଭଗ୍ନରମଣ
ସ୍ୱାମି ସଙ୍ଗେ ବିହାର ହର୍ଷିତ,
ସପତ୍ନୀକି ଦେଖି ହସି ପୁଷ୍ପ ଫୁଙ୍କି ସ୍ୱାମି ଅଙ୍ଗେ
ଦେଲେ ସପତ୍ନୀ ହୁଏ ମୂର୍ଚ୍ଛିତ । ୫୮ ।

ପ୍ରଣୟବାନ ବଲ୍ଲଭ ପ୍ରିୟାକର୍ଣ୍ଣେ ଅବତଂସ
କାମୋତ୍ସବେ ଅଳଙ୍କୃତ କରେ,
ସପତ୍ନୀ ସଦନେ ଯାଇ ଯାପନ କଲେ ରଜନୀ
କାଞ୍ଚନମଣ୍ଡନ ଭାର ଧରେ । ୫୯ ।

ଶ୍ରବଣର କୁବଳୟ ଲଜ୍ଜାରେ ହୋଇ ମଳିନ
ଅଧୋମୁଖେ ହୋଇ ବିନମିତ,
ଭ୍ରମରଛୁତରେ କର୍ଣ୍ଣେ କହେ ସଖି ! ତବ ନେତ୍ର-
ଶୋଭାରେ ମୁଁ ହେଲି ଅବଜ୍ଞାତ । ୬୦ ।

---

୧ । କଳି—ପୁଷ୍ପକଳିକା । ୨ । କଳି—କଳହ ।

ବିନାଶ କୁସୁମବଲ୍ଲୀ ତେଜି ମଧୁକରକୁଳ
ଗୁଞ୍ଜେ ଗାଇ ମଧୁର ସଙ୍ଗୀତ,
କୋମଳମାଳାଧାରିଣୀ— ଯୁବତିଙ୍କ ଅଙ୍ଗେ ସଙ୍ଗୀ
ନ ବିଶ୍ୱାସ କୁସ୍ମାତ୍ମାରେ ହିତ । ୬୧ ।

ଶ୍ଲଥନିତମ୍ବିନୀ ପାଣି— ପାତଭରେ ଅତିଶୟ
ଅଂସଭାଗ ହୋଇଛୁ ନମିତ,
ମନ୍ଥଭରେ ସୁଲୋଚନେ ମୁକୁଳିତ କ୍ଷଣ କ୍ଷଣ
ମୁଖଅରବିନ୍ଦ ବଶୋଭିତ । ୬୨ ।

ମଦନ ବିଳାସ କାଳେ ପ୍ରଣୟି ପରିରମ୍ଭନେ
କପୋଳୁ ଗଳିତ କୁଙ୍କୁମ ରେଣୁ,
ଉଜ୍ଜ୍ୱଳ ଅଣୀତରଣ୍ଣି— ଜାଲ ପ୍ରାପ୍ତ ଦଶେ ଶୋଭି
ଅରୁଣିମା ଧରିଅଛୁ ଯେଣୁ । ୬୩ ।

ପ୍ରସୂନଚୟନ ତେଜି ବର୍ତ୍ତୁଳ ବାହୁଯୁଗଳ
ଦୋଳାଇ ନବପଲ୍ଲବ ତୋଳି,
ଆରକ୍ତ ପାଣିପଙ୍କଜେ ଦ୍ୱିଗୁଣ ରକ୍ତିମା ପାଇଁ
ପଲ୍ଲବର ରସ ଦିଏ ବୋଳି । ୬୪ ।

ମନୋଭବ ଅନୁରାଗେ ବଲ୍ଲଭର ଉରସ୍ଥଳେ
ଦେଇଅଛୁ ଅଙ୍ଗରାଗ ଗନ୍ଧ,
ସ୍ତନଯୁଗର ଆଶ୍ଳେଷ ନିଶ୍ଚିତ ବୋଲି ସଙ୍କେତ
କରିଅଛୁ ଚିହ୍ନ ନୁହେ ଭିନ୍ନ । ୬୫ ।

ପୃଥୁଳ ବକ୍ଷୋଜଯୁଗ— ଭାରେ ଅବନତକାୟ
ସୁରତ ଜନିତ ଶ୍ରାନ୍ତ ନାରୀ,
ଅନଭ୍ୟାସ ଗମନରେ କରଭକରଜଘନା
କ୍ଲେଶିତ ଦ୍ରୁତ ଚାଲି ନପାରି । ୬୬ ।

ଚରଣିତ ଗମନରେ ନବ ଅଲକ୍ତ ରାଗ
ଚରଣରୁ ହେଲା ଅପଗତ,
ଏକନ୍ୟାସ ଅନ୍ୟୋତ୍ଥାନ କ୍ରମରେ ପାଦଚାଳନ
କରେ ବାମା ଦୁଃଖେ ଅବିରତ । ୬୭ ।

ଦୀର୍ଘ ବନଭ୍ରମଣରେ ଜିତମୃଣାଳିନୀଗଣ
ହେଲେ ଅତିଶୟ ପରିଶ୍ରାନ୍ତ,

ଏକେ ତ କୋମଳଅଙ୍ଗୀ ଭ୍ରମଣ ପ୍ରୟାସ ପୁଣି
ସୁରମଦେ ଅଳସ ନିତାନ୍ତ । ୬୮ ।

ରମଣୀଙ୍କ ଶ୍ରମଜାତ ମୌକ୍ତିକାଭ ସ୍ୱେଦବନ୍ଦୁ
ଅଦ୍ୱେୟ ଗଣ୍ଡମଣ୍ଡଳୁ ସ୍ରଂସିତ,
କଠିନ କୁଚାଗ୍ରେ ପଡ଼ି ଉଜ୍ଜ୍ୱଳବର୍ଣ୍ଣ ଧାରଣେ
ଅଧଃପାତେ ଶତଧା ଶୋଭିତ । ୬୯ ।

ଯୌବନ ଉଦ୍ଧତନାରୀ— ମାନଙ୍କ କୁଚମଣ୍ଡଳ
ପ୍ରିୟଦ୍ୱାରା ହୋଇ ବମର୍ଦ୍ଦିତ,
ଶୋଭା କରେ ବିବର୍ଦ୍ଧନ ଅଶୋଭାକୁ ପରିତେଜି
କୋମଳତା ଗୁଣ ବିବର୍ଦ୍ଧିତ । ୭୦ ।

କେ ରମଣୀ ନିରନ୍ତର କୁସୁମଚୟନେ ଶ୍ରାନ୍ତ-
ହୋଇ, ପ୍ରିୟକଣ୍ଠ ଅଲିଙ୍ଗନ—
କରି, ବିପୁଳ କୁଚରେ ପ୍ରିୟବକ୍ଷ ଆଚ୍ଛାଦଇ
ଶ୍ରାନ୍ତେ ପୁଣି ଇଚ୍ଛେ କି ରମଣ । ୭୧ ।

ବେଲ୍ଲିତ ବାହୁବଲ୍ଲରୀ ଊର୍ଦ୍ଧ୍ୱ କରି କେଉଁ ନାରୀ
କଚୋଲାତ ଦେଖାଇବା ଛଳେ,
କରେ କେତେ ଅଙ୍ଗଭଙ୍ଗୀ କ୍ଲମ ଦୂର ପାଇଁ ନିଜ
ଅଭିଳାଷ ଜଣାଏ କୌଶଳେ । ୭୨ ।

ହିମଳବର ସଦୃଶ ଶ୍ରମସ୍ୱେଦବନ୍ଦୁ ତତି
ଦୂରକରିବା ବେଳେ ନୂତନା,
କୁଚକଳଶକୁ ଦେଖି ସ୍ୱେଦ ପୋଛି ଦେବ ବୋଲି
ପ୍ରିୟକୁ ନ କଲା ନାରୀ ମନା । ୭୩ ।

ନାରୀସରିତର ସ୍ୱେଦ— ପ୍ରବାହ, ଭାଳୁ ପୁଳିନ-
ଚୁମ୍ବି ମଧ୍ୟ ଦ୍ରୁମ ଭୁଜଲତା—
ନାଭିହ୍ରଦ ପୂର୍ଣ୍ଣ କରି ଲଙ୍ଘି କୁଚତଟଭୂମି
ପ୍ରବାହିତ କ୍ରମେ ବହୁଳତା । ୭୪ ।

ପ୍ରିୟକର ସ୍ପର୍ଶେ ଅଙ୍ଗନାଗଣର
ସ୍ୱେଦଶ୍ରୀ ଅଧିକ କଲା ଧାରଣ,
ବନବିହରଣ ଖେଦ ମ୍ଳାନ ଶୋଭା
ଇଚ୍ଛିଲେ ଜଳରେ ତା ନିବାରଣ । ୭୫ ।



# ଅଷ୍ଟମ ସର୍ଗ

ପୃଥୁଳଜଘନା ଅବନତପଦ୍ମ-
ନୟନା ସୁଶ୍ରାନ୍ତ ରମଣୀଗଣ,
ବନ୍ଧୁଯତ୍ନେ ଜଳ— ନିକଟ [illegible]
ଭୂମିରେ ବିନ୍ୟାସି ଗୁରୁଚରଣ । ୧ ।

ପଂକ୍ତିକ୍ରମେ ନାରୀ— ଗମନ କାଳରେ
ନତଅଂସେ ଭୁଜଲତା ଗୁଞ୍ଜନେ,
ବିପୁଳନିତମ୍ବ— ସଂସକ୍ତ ମୁହୁର୍ମୁହୁ
ବିସ୍ତୃତ ବର୍ତ୍ମ ସଂକୀର୍ଣ୍ଣ ମିଳନେ । ୨ ।

ସାନ୍ଦ୍ରଦ୍ରୁମଚ୍ଛାୟା— ଭୂମିରେ ଗମନ-
କାରିଣୀ ନାରୀଙ୍କୁ ଭାସ୍ୱର କରେ,
ଅନିଳକମ୍ପିତ ଶାଖା ଅନ୍ତରାଳେ
ସ୍ପର୍ଶନ୍ତି ପରଦାରା ବୋଲି ଡରେ । ୩ ।

ବଦନସରୋଜେ ଚକିତ ଶଶୀ
ଚନ୍ଦ୍ରମା କେ ବାମା ଶିର ଉପରେ,
ତପନତାପରେ ପୀଡ଼ିତାକୁ ଅବା
ଶ୍ୱେତ ଆତପତ୍ର ଧାରଣ କରେ । ୪ ।

ସ୍ନେହରେ ଯୁବକ ତାପତପ୍ତ ପ୍ରିୟା-
ଶିରେ ଉତ୍ତରୀୟ କରେ ଧାରଣ,
ଛତ୍ରଧାରିଣୀ ଅନ୍ୟ ନାରୀଠାରୁ
ଅତ୍ୟଧିକ ତାପ କରେ ବାରଣ । ୫ ।

ସ୍ୱାମି କର ଧରି ନୀରଜଲୋଚନା
ଗମେ ପ୍ରିୟ-ସ୍ପର୍ଶପ୍ରଭବ ସୁଖେ,
ଦୃଢ଼ ନୀବିଗ୍ରନ୍ଥି— ସ୍ରଂସିତ ଦୁକୂଳ
ସ୍ୱରାନନ୍ଦ ଚନ୍ଦ୍ର ଶୋଭଇ ମୁଖେ । ୬ ।

ବର୍ହୀ ଅଳସ          ଗମନ ବିଲୋକି
ନାରୀଗଣ ତେଜିଲେ ଲୀଳାଗତି,
ଅନ୍ୟରେ ବିଜିତ          ସ୍ୱଗୁଣ କେ ଅବା
ନିର୍ଲଜ୍ଜରେ କାର୍ଯ୍ୟେ ବଳାଏ ମତି । ୭ ।

ନିବିଡ଼ ନିତମ୍ବ          ପୁରୋଭାଗ ସ୍ଥୁ-
ସ୍ଥଳେ ପରାଜିତ ଯେଣୁ ପୁଳିନ,
ଲଜ୍ଜାରେ ସାଗର—          ମହର୍ଷୀ ପାଷାଣେ
ମଜ୍ଜଯାଏ କରି ମନ ମଳିନ । ୮ ।

ଲଳନା ସକଳ          ସରିତ ସୈକତେ
ଶୁକ୍ତିଗର୍ଭମୁକ୍ତ ମୁକ୍ତା ଲୋକନେ,
ପଲ୍ୟଙ୍କେ ଶୟନ—          କାଳେ ମୁକ୍ତାହାର
ବିକୀର୍ଣ୍ଣ ପରାୟ ଭାବିଲେ ମନେ । ୯ ।

ଭ୍ରମର ଅନନ୍ୟ—          ଗନ୍ଧ ବନ୍ଧୁ, ନାରୀ
ନିଃଶ୍ୱାସ ମାରୁତ ଅଘ୍ରାଣ କରି,
ଅରଣ୍ୟ କୁସୁମ          ନ ଇଚ୍ଛିଲେ ଅଳି
ଉଚିତ ଗଣେ କି ସମ୍ବର ଅରି । ୧୦ ।

ବନ୍ଧୁ ଅସୁନ୍ଦ କି          ନିଜ ପ୍ରିୟା ବୋଲି
ଭୟେ ମୟୂରୀକି ଢାଙ୍କି ବର୍ହରେ,
ସ୍ଥିତ ମୟୂରକୁ          ଦେଖି ନାରୀଗଣ
କୁଟିଳତା ବିଶ୍ୱାସ କଲେ ନରେ । ୧୧ ।

ରମଣୀମାନଙ୍କ          ମଧୁର ଆଳାପେ
ତିରସ୍କୃତ ଯହୁଁ ହଂସକୂଜିତ,
ଉତ୍ପଳକାନନ          ତେଜିଗଲେ ହଂସେ
କେତା ଅଗ୍ରେ କେବେ ରହେ କି ଜିତ । ୧୨ ।

କନ୍ଦର୍ପ ଚେଷ୍ଟାରେ          ପ୍ରିୟ ଚୁମ୍ବନରେ
ମୁଗ୍ଧ, ଚକ୍ରବାକୀ କରେ ଶୀତ୍କାର,
ଶୀତ୍କାର ଉତ୍ତର          ଶ୍ରବଣେ ତରୁଣୀ
କୋଳହସ୍ତେ କରେ ପ୍ରିୟେ ଶୀତ୍କାର । ୧୩ ।

ଫୁଲ୍ଲ ଅରବିନ୍ଦ— ଅର୍ଘ୍ୟ, ଫେନହାସ
ପକ୍ଷିରୁତ ସ୍ମିତ ଅଭିଭାଷଣ,
ରମଣୀମାନଙ୍କୁ ସରସୀ ସସ୍ନେହେ
ଊର୍ମି ହସ୍ତେ ପାଦ୍ୟ କରେ ଅର୍ପଣ । ୧୪ ।

ହର ନାରୀଗଣ ରକ୍ତ କରତଳେ
ଅରବିନ୍ଦୁ ଶିରୀ ଦୂରୀକରଣ,
କରିବାରୁ, ଚିର ବସନ୍ତରୁ ବୀକ୍ତ-
ହେଲ ସପତ୍ନତା, ହରଷ ମନ । ୧୫ ।

ସ୍ୱାମିକର ଧରି ଭୀତା ନାରୀଗଣ
ଜଳେ ନିଜ ପ୍ରତିବିମ୍ବ ଲୋକନ—
କରିବା ପୂର୍ବରୁ ଅମ୍ବୁ ଉସ୍ତ୍ରକରେ
ତ୍ୱରିତ ତାହାଙ୍କୁ କଲ ଧାରଣ । ୧୬ ।

ସକଳ କାମିନୀ କାମିମନ ପରି
ଭୟେ ମୃଦୁପଦେ ପ୍ରବେଶି ଜଳେ,
ଅଙ୍ଗ ଅସ୍ଫାଳନେ ସ୍ୱଚ୍ଛ ଅମ୍ବୁରାଶି
ଗାନ୍ଧଲେପବର୍ଣ୍ଣେ ରଞ୍ଜନ କଲେ । ୧୭ ।

ଇଭକୁମ୍ଭ ସମ କୁଚଯୁଗଶୋଭୀ
ନାରୀଗଣ ଜଳ କଲେ ଚଞ୍ଚଳ,
ଚକ୍ରବାକଯୁଗ— ବିଶ୍ଳେଷ ଘଟିଲା
ଉଦ୍ବୃତ୍ତ[1] କି ଅନ୍ୟର ସୁଖସ୍ଥଳ ! ୧୮ ।

ଶୀତ ଅସହିଷ୍ଣୁ ହୋଇ କେଉଁ ନାରୀ
ଜଳେ ନ ଉତ୍ତରି ତଟରେ ସ୍ଥିତ
ଦେଖି, ଜଳମଧ୍ୟେ ଥାଇ ଯୁବା କରେ
ଜଳ ସିଞ୍ଚେ ତାକୁ ହୋଇ ସସ୍ମିତ । ୧୯ ।

ସ୍ୱାମି ସଙ୍ଗେ ଜଳେ ଅବଗାହନରେ
ସଖୀ ବଳାତ୍କାରେ କରଇ ନାହିଁ,
ଜଳସିକ୍ତେ ଭୟେ ସ୍ୱାମିଙ୍କି ଅଶ୍ଳେଷେ
ବିପଦେ ଅମର୍ଯ୍ୟାଦା ଦୋଷ କାହିଁ । ୨୦ ।

---

୧ । ଉଦ୍ବୃତ୍ତ—ଉଦ୍ବର୍ତ୍ତନ, ଉନ୍ମାର୍ଗବର୍ତ୍ତୀ ।

ଅଂସ ମାନ ଜଳେ ଥାଇ ଶୋଭନାଙ୍ଗୀ
ପୂରୁଷେ କରେ କଟାକ୍ଷ ପାତନ,
ମଗ୍ନ ହେବ ଜଳେ ବୋଲି ସେ ପୂରୁଷ
ଦ୍ରୁତ କରେ ନାରୀଙ୍କି ଆଲିଙ୍ଗନ । ୨୧ ।

ଅନାଭି ଜଳରେ ପ୍ରବେଶି କାମିନୀ
ସଲିଳ ଚପଳ ତରଙ୍ଗ କରେ,
ଉଚ୍ଛ୍ୱାସ ଛଳରେ ସ୍ତନଯୁଗ ସ୍ପର୍ଶେ
ଲବ୍ଧ ସ୍ପର୍ଶ କାହିଁ ମର୍ଯ୍ୟାଦା କରେ । ୨୨ ।

ଚଞ୍ଚଳ ଊର୍ମିରେ ଚଳକୁବଳୟ
ନାରୀ ମୁଖେ ମୁହିଁ ନୁହେଁ ବଜିତ,
କନୁ ନେବ ଶୋଭା ପରାଜୟ କରେ
ବୋଲି ଅଳି ସଙ୍ଗେ କଲହାସ୍ଥିତ । ୨୩ ।

ଚଞ୍ଚଳ ଶଫରୀ ବିଘଟ୍ଟିତ ଭ୍ରୁରୁ
ଭୟବିଳାସିନୀ ରମଣୀଗଣ,
ହସ୍ତ ସଞ୍ଚାଳନେ ବିଭ୍ରମ ବିଳାସ
କରନ୍ତି ଲୀଳାରେ ବିନା କାରଣ । ୨୪ ।

ସନ୍ତରଣ କାଳେ ରମ୍ୟବାହୁ ପକ୍ଷ
ଗୃହ୍ଣୁ ଉଦ୍ରେକ ଗଣ୍ଡଶୈଳୋପମ,
ସର ମହାର୍ଣ୍ଣବ ବକ୍ଷୋଭିତ ଜଳ
ମନ୍ଦର ଭୂଧର ମନ୍ଥନୋପମ । ୨୫ ।

ଗମ୍ଭୀରତା ଥିଲେ ମଧ୍ୟ ଜଳାଶୟ
ବାରକଅନନେ ବଲେକ ନାରୀ—
ଜଘନ ଗୂଳନ, ସଂକ୍ଷୋଭ ବକାରେ
ମର୍ଯ୍ୟାଦା¹ ଲଙ୍ଘିଲା ଉଚ୍ଛୁଳି ବାରି । ୨୬ ।

ଗଭୀର ଜଳରେ ସନ୍ତରଣ କାଳେ
ବଳାସଶାଳିନୀ କାମିନୀଗଣ,
ପୃଚ୍ଛକର କାର୍ଯ୍ୟ କରି ଜଳାଶୟ
ଊର୍ମିହସ୍ତେ କରେ କେଶ ଗ୍ରହଣ । ୨୭ ।

---

୧ । ମର୍ଯ୍ୟାଦା — ସୀମା ।

ବିକାଶ ବନ୍ଧୁକ　　　କୁସୁମ ଧବଳ-
　ନାସ୍ତିଅଙ୍ଗ ଜଳେ ଦିଶଇ ଫୁଟି,
ଅଚ୍ଛାଦିଲେ ମଧ୍ୟ　　　ଜଡ଼, ଜଳୌଘ
　ବିମଳ କି କେବେ ରହେ ନ ଉଠି । ୨୮ ।

କେ ବିଳାସୀ ଦୂରୁ　　　ସରୋବରେ ଦେଖେ
　ସରୋଜ କି ଏହା ଯୁବତି ମୁଖ,
କ୍ଷଣେ ସଂଶୟିତ　　　ବିବ୍ବୋକ୧-ରହିତ
　ନିଷ୍ଠୁରତା ଜ୍ଞାନେ ଲଭିଲା ସୁଖ । ୨୯ ।

ରମଣୀ ସଲିଳ—　　　ବିଳାସ ସାଧନ
　ଅମ୍ବୁଯନ୍ତ୍ର, ଗନ୍ଧ, ମୃଦ୍ୱୀକ୨ ବଧୂ,
ପୃଥୁକୁଚକୁମ୍ଭ—　　　ସଙ୍ଗି ରକ୍ତବାସ
　ପ୍ରିୟ ସନ୍ନିଧାନ, ଅଳସବଧୂ । ୩୦ ।

ଅନିଳେ ଚଞ୍ଚଳ—　　　ଅଂଶୁକ ଅଙ୍ଗନା
　ଉତୁଙ୍ଗ ତଟରେ ହୋଇ ସଂସ୍ଥିତ,
ପୃଥୁଳ ନିତମ୍ବ—　　　ଭରେ ଅବନତ
　ପ୍ରିୟ ଦେଖୁଁ ଜଳେ ହେଲା ପତିତ । ୩୧ ।

ବିମୁଗ୍ଧ ହେତୁରୁ　　　ଅଜ୍ଞାତ କୈତବ-
　ପ୍ରୟୋଗ ତରୁଣୀ କାନ୍ତର ସଙ୍ଗେ,
କରକମଳରେ　　　ଜଳ ଘେନି ଉଠେ
　ଫିଙ୍ଗାଫିଙ୍ଗି ଦୁହେଁ ହୁଅନ୍ତି ରଙ୍ଗେ । ୩୨ ।

ତ୍ରିନୟନ ନେତ୍ର　　　ଅନଳେ ନିର୍ଦ୍ଦଗ୍ଧ-
　ସ୍ମର ଅଧିରାଜ୍ୟ କାନ୍ତାର ମୁଖ—
ଚନ୍ଦ୍ରମାକୁ, କର—　　　କଳଶ ଜଳରେ
　ଅଭିଷେକେ କାମୀ ଲଭଇ ସୁଖ । ୩୩ ।

ମନସିଜ ଦୁଃଖ—　　　ଦୁର୍ବଳ କାମିନୀ
　ପତିଙ୍କି ସଲିଳ ସେଚନ କ୍ଷଣେ,
ଲାବଣ୍ୟ କରରୁ　　　କାଞ୍ଚନ ବଳୟ
　ଖସି ପଡିଗଲା ନହେଲା ମନେ । ୩୪ ।

---

୧ । ବିବ୍ବୋକ—ବିଳାସ । ୨ । ମୃଦ୍ୱୀକ – ଦ୍ରାକ୍ଷାମଦ୍ୟ ।

କନ୍ଦର୍ପ ପ୍ରବଣ— ମାନସା ରମଣୀ
ପୁରୁଷେ କର କଟାକ୍ଷ ପାତନ,
ଅନ୍ୟ ନାରୀ ସିକ୍ତ— ଛଳେ ପୁରୁଷକୁ
କର ଯୋଡ଼ି କରଇ ନିବେଦନ । ୩୫ ।

କ୍ରୀଡ଼ା ଅନାଦୃତ ମଧ୍ୟମ ଯୌବନା
ବଦନେ ଦୟିତ ଜଳସେଚନେ,
ସପତ୍ନୀ ବଦନ ନିରୀକ୍ଷଣ ମାତ୍ରେ
ଈର୍ଷ୍ୟା ତାମ୍ରମୁଖୀ ହେଲା ତତ୍‌କ୍ଷଣେ । ୩୬ ।

ସ୍ୱାମିକରେ ଅନ୍ୟ— ନାରୀ କୁଚଦ୍ୱୟ
ଜଳେ ଅଭିଷିକ୍ତ ହେବା ଦର୍ଶନେ,
ଈର୍ଷ୍ୟା କୋପେ ନିଜ— ସ୍ତନଦ୍ୱୟ ନେତ୍ର
ଜଳେ ଅଭିଷେକ କଲା ତତ୍‌କ୍ଷଣେ । ୩୭ ।

ନାରୀମୁଖ ରୁଚି ଉଜ୍ଜ୍ୱଳ ସକାଶେ
ଯେ ଜଳେ ବିଳାସୀ କରେ ସେଚନ,
ସେହି ଚନ୍ଦ୍ରୋଜ୍ଜ୍ୱଳ— ଜଳରେ ସପତ୍ନୀ-
ବଦନ ଦୂରରୁ କରେ ବିବର୍ଣ୍ଣ । ୩୮ ।

ରାଗ ଅଙ୍ଗୀକୃତ— ନୟନ ବଲ୍ଲଭ
ବିପକ୍ଷ ନାମରେ ଫିଙ୍ଗିଲା ଜଳ,
ହୃଦୟବିଦାରୀ ଉଦକ ଅଶନି
ମାନିନୀ ନେତ୍ରୁ ବହାଇଲା ଜଳ । ୩୯ ।

ପ୍ରଣୟୀ ପ୍ରିୟାର ଉରଃସ୍ଥଳେ ଜଳ-
ସେଚନେ ସନ୍ତାପ କଲା ଗ୍ରହଣ,
କଠିନ କୁଚରୁ ଜଳବିନ୍ଦୁ ପଡ଼ି
ସପତ୍ନୀ ହୃଦୟ କଲା ଦହନ । ୪୦ ।

ପ୍ରିୟତମ ବକ୍ଷେ ଅଙ୍ଗରାଗ ଚିହ୍ନ
ଜଳେ ଧୌତ ହେବା ଭାବି ଅଙ୍ଗନା,
କଣ୍ଠ ନିରୀକ୍ଷଣ ସ୍ତନେ ନଖଚିହ୍ନ
ସପତ୍ନୀର କୋପେ ହେଲା ବିମନା । ୪୧ ।

ପ୍ରିୟସଖୀପାଶେ ଅନ୍ୟନାରୀ ନାମ
ବଲ୍ଲଭ କରିବାରୁ ଉଚ୍ଚାରଣ,
ଇନ୍ଦୁମୁଖୀ ମ୍ଲାନ— କରି ଲଜ୍ଜାଭରେ
ଅଶ୍ରୁବର୍ଷେ ବାପୀ ଜଳବର୍ଦ୍ଧନ । ୪୨ ।

ଅଦ୍ୟ କ୍ଷଣେ ସ୍ୱାମୀ ସପତ୍ନୀ ଅଙ୍ଗରେ
ସଲିଳ ସେଚନରେ ଅନ୍ୟ ନାରୀ,
ଅଞ୍ଜନ ଅଶ୍ରୁରେ କାଳିମା ବଦନ
ଅଞ୍ଜନାଭ କଲା ସରସୀବାରି । ୪୩ ।

କନକ ଭୂଷଣ ବନ୍ଧନେ ଅକ୍ଷମ
ବଳୟିତ ହେଲା ମୃଣାଳସୂତ୍ର,
ସପତ୍ନୀ କଟାକ୍ଷ— ପାତ ଖର ହେଲା
ଈର୍ଷା ଅଙ୍ଗଭୂର ନ ହୁଏ କ୍ଷୁଦ୍ର । ୪୪ ।

ଅବିରତ ଜଳ— ଗାହନକୁଶଳା
ପ୍ରଚୁର କିଙ୍କିଣୀ ମେଖଳାନାଦ,
ନ କରେ ସକଳ— ଗୁଣେ[1] କାହିଁ କରେ
ବାଣୀରେ ମୁରୁଜ ସଙ୍ଗେ ବିବାଦ । ୪୫ ।

ସ୍ୱଚ୍ଛସରସୀରେ ଜଳାହୃତାଂଶୁକା
ଲୋଲାକ୍ଷ ବଲ୍ଲଭ କାମିନୀଅଙ୍ଗ,
ବିଲୋକେ, ଅବ୍ଜିନୀ ବୀଚିକରେ ଦଳ-
ବସ୍ତ୍ର ଦେଇ କରେ ସଖିତ୍ୱେ ସଙ୍ଗ । ୪୬ ।

ରମଣୀ ଜଘନ— ସ୍ଥଳରେ ଆହତ
ମୁଖେ ଅବ୍ଲୁଣିସ୍ୱୀ ହେବାରୁ ଜାତ,
ଚଞ୍ଚଳେ ନାରୀଙ୍କ ଅଙ୍ଗରାଗ ହରେ
ଜଳର[2] ଆଶୟ ସୁକଳୁଷିତ । ୪୭ ।

---

୧ । ଜଳଗୁଣ—ଜଡ଼ଗୁଣ, ଗୁଣ, ରଜ୍ଜୁ ।
୨ । ଜଳର—ଜଡ଼ର, ଔଜାଡ୍ୟର ।

ସୌରଭଧାରିଣୀ ପଦ୍ମିନୀ ବଗୃରେ
ଦୂରସ୍ଥ କାମିନୀ ଅନନତୁଲ୍ୟ,
ନିକଟେ ବଜାଉ ଅନନେ, ଶୋଭିତ-
ଜଳେ ମଗ୍ନ, ବୋଲି ନାହିଁ ମୋ ମୂର୍ଖ । ୪୮ ।

ଚଞ୍ଚଳ ଜଳରେ ସ୍ନାନ କ୍ରୀଡ଼ାଚ୍ୟୁତ
ବଧୂଙ୍କର କାଞ୍ଚନ ଆଭରଣ,
ବଦଳାଉ ହେମ— ପୁଷ୍ପିକା[1] ପିଶଙ୍ଗ
ସରଃ କି ଔର୍ବାଗ୍ନି[2] କରେ ଧାରଣ । ୪୯ ।

ସ୍ୱଚ୍ଛଜଳେ ନିଜ ନେତ୍ରଚ୍ଛାୟା ଦେଖି
ଈର୍ଷାରେ ସକୋପେ କାମିନୀଗଣ,
ଅମ୍ଭ ନେତ୍ରଶୋଭା ବାଧୀ ଧରେ ବୋଲି
ଧୌତ କଲେ ଦ୍ରୁତ ନେତ୍ରଅଞ୍ଜନ । ୫୦ ।

ବକ୍ଷୋଜଦ୍ୱୟର ହରିଚନ୍ଦନକୁ
ଜଳରେ ବିଧୌତ କାଲେ ଅଙ୍ଗନା,
ସ୍ୱର୍ଣ୍ଣହାର ଯଷ୍ଟି ଛୁଣ୍ଡିଗଲା ତାହା
କ୍ରୀଡ଼ାଶାଳିନୀଙ୍କ ନ ଗଲା ଜଣା । ୫୧ ।

ଫୁଲ୍ଲଅରବିନ୍ଦ— ଧମ୍ମିଲ୍ଲଭୂଷଣା
ମୃଦ୍ୱୀକ ମଧୁନିଷେବିଣୀ ନାରୀ,
ପ୍ରିୟସଙ୍ଗେ ରଙ୍ଗେ ଜଳକ୍ରୀଡ଼ା କରି
ଆରକ୍ତନୟନେ ସିଞ୍ଚଇ ବାରି । ୫୨ ।

ରୁଚିରଦୃଶାଙ୍କ ଉରୋଜକୁମ୍ଭରେ
ମୁକ୍ତାହାର ଯଷ୍ଟି ଦୋଳେ ଉପରେ,
ସ୍ୱଚ୍ଛଜଳବିନ୍ଦୁ ଚଳିତ ପରାୟେ
ଶୋଭେ ଗୁନ୍ଥା ହେଲା ପରି ତା ପରେ । ୫୩ ।

---

୧ । ହେମପୁଷ୍ପିକା—ପୀତଯୂଥିକା ।
୨ । ଔର୍ବାଗ୍ନି—ବାଡ଼ବାଗ୍ନି ।

ଯୁବକେ ଅଦ୍ଭୁତ ହୋଇ ଉଚ୍ଚସ୍ଥାନ
ଗର୍ବେ ସ୍ତନ କଲା ସୁଆରୋହଣ,
ଅତ୍ୟୁନ୍ନତ ଗର୍ବୀ— ହେଲେ ଅଳ୍ପକ୍ଷଣେ
ତାହାର ନିଶ୍ଚୟ ଅଧଃପତନ । ୫୪ ।

ସଲିଳ ମଧ୍ୟରେ ଧୌତ ଅଙ୍ଗରାଗ
ନାରୀଅଙ୍ଗେ ଦନ୍ତ ନଖର ଚିହ୍ନ,
ନବୀନ ସୁଷମା— ଧରେ, ସୁନ୍ଦରତା,
ଅଭାବରେ ମଧ୍ୟ ନ ହୁଏ ଖିନ୍ନ । ୫୫ ।

ଜଳେ କୁଚତଟ— ପତ୍ରାବଳି ଧୌତ
ଅର୍ଜବରେ ନାରୀ ସଲିଳ ଭରେ,
କଜ୍ଜଳପିଞ୍ଜର ଅଳକବଲ୍ଲରୀ
ମକରିକା ଶୋଭା ଧାରଣ କରେ । ୫୬ ।

ସଲିଳ ଯଦୁଙ୍କ ବକ୍ଷୁ ଅନୁଲେପ
ମୂର୍ଦ୍ଧାରୁ ଉତ୍ତଂସ କରେ ଗ୍ରହଣ,
ନେତ୍ରମଦରୁଚି ସମ୍ପାଦନ କରେ
ପରୀ ଲକ୍ଷ୍ୟ ଅଟେ ପ୍ରିୟଦର୍ଶନ । ୫୭ ।

ଯଦୁଙ୍କର ବାହ୍ୟ— ରାଗଜଳେ ଧୌତ
ଚିତ୍ତରାଗ ତଦବସ୍ଥରେ ଥାଏ,
ଧୀରଙ୍କ ବିଷୟ ଅନ୍ତର୍ଗତ ହେତୁ
ପର ଅଭିଭବେ ଭୟ ନ ପାଏ । ୫୮ ।

ଚ୍ୟୁତ ବିଭୂଷଣ ବଧୂଙ୍କ ସକାଶେ
ସଲିଳେ ସକଳ ଭୂଷଣ ପୂର୍ଣ୍ଣ,
ଫେନ ସ୍ତନହାର ଶୈବଳ ବସନ
ପଦ୍ମପତ୍ର ଛବି ଗଣ୍ଡରେ ତୂର୍ଣ୍ଣ । ୫୯ ।

ବଧୂଙ୍କ ଅଙ୍ଗରୁ ଚ୍ୟୁତ ଆଭରଣ
ଗୁରୁହେତୁ ନପାରେ ମଗ୍ନ ଜଳେ,
ଭୁକ୍ତୋଜ୍ଝିତମାଳା ସଲିଳେ ନାଚଇ
ତରଙ୍ଗିତ ଲଘୁ ନିର୍ମାଲ୍ୟ ବଳେ । ୬୦ ।

ଚନ୍ଦନକ୍ଷାଳିତ ସ୍ରକ ଦୂରୀଭୂତ
ସରଃସଲିଳେ ନୀରକ୍ତ ବସନ,
ଅଙ୍ଗରାଗ ଧୌତ ଅମଣ୍ଡନା ନାରୀ
କାମକରେ ସିନା ଶୋଭା ବର୍ଦ୍ଧନ । ୬୧ ।

ସଲିଳ ସେଚନେ ଶୀତକଳେବରା
ଶିଶିର ସମୀରେ ହୋଇ କମ୍ପିତ,
ନବୀନ ଯୌବନ— ଉଷ୍ମାଶାଳିନୀଙ୍କ
ସ୍ତନତଟ ଅଂଶୁକ ହେଲା ଶ୍ରିତ । ୬୨ ।

ଜଳକ୍ରୀଡ଼ା ପରେ ଲାବଣ୍ୟମୂରତି
କର ବସ୍ତ୍ରାଞ୍ଚଳୁଁ ଜଳ କ୍ଷରଣ,
ତରଳ ତରଙ୍ଗ— ରଙ୍ଗ ଲୀଳାପଠୁ
ଜଳୁ ବାହାରିଲେ ତରୁଣୀଗଣ । ୬୩ ।

ଦେବଙ୍କୁ ବସ୍ତ୍ରୁ କରାଇ ସୁଗୃହୁ-
କରେ ଅରବିନ୍ଦ ଧାରଣ କରି,
ଲକ୍ଷ୍ମୀ ପରି ଜଳୁଁ ବାହାରିବା ଦେଖି
ସମୁଦ୍ର ମନ୍ଥନ ସ୍ମରିଲେ ହରି । ୬୪ ।

ଉରୁ ଆଚ୍ଛାଦନ— ପାଇଁ ପରିହିତ-
ଦୁକୂଳ ଜଳାର୍ଦ୍ରେ ହେବାରୁ ସକ୍ତ,
ରମଣୀମାନଙ୍କ ସୁବିମଳ ଉରୁ-
ଦ୍ୟୁତି ବସ୍ତ୍ରଫୁଟି ହୁଏ ସୁବ୍ୟକ୍ତ । ୬୫ ।

ଶୁଭ୍ର ଅଭ୍ର ଦ୍ୟୁତି ନାରୀଙ୍କ ବସନ
ପରିଧାନକାଳେ ଧବଳହାସ,
ଜଳସ୍ରାବି ବସ୍ତ୍ର ତ୍ୟାଗରେ ଜଳାଶ୍ରୁ-
ସ୍ରୁତିରେ ରୋଦନ କରେ ପ୍ରକାଶ । ୬୬ ।

ଆର୍ଦ୍ର ବସ୍ତ୍ର ଅଙ୍ଗେ ବିଜଡିତ ଯୋଗୁଁ
ବହୁ ଯତ୍ନରେ କରି ନିଷ୍କାସନ,
ଲୋହିତ ବସନ ପରିଧାନ କଲେ
ହରଷରେ ବାମଲୋଚନାଗଣ । ୬୭ ।

କେଉଁ ନାରୀ ଅଂସ— ଲମ୍ବିତ ମୂର୍ଦ୍ଧଜ
ସ୍ନାନାର୍ଦ୍ର ଅଙ୍ଗକୁ ଶୁଖାଏ ବସି,
ଅନ୍ତିକେ ତଦ୍ରୂପ ସ୍ୱାମିଙ୍କି ବିଲୋକି
ସ୍ନେହାର୍ଦ୍ରେ ବଚନ ପ୍ରକାଶେ ହସି । ୬୮ ।

ଊର୍ଦ୍ଧ୍ୱକରେ କେଶ— ବନ୍ଧନରେ ନାରୀ-
ସ୍ତନତଟ ବାହୁମୂଳ ଲୋକନ—
କରି ଅନ୍ୟାସକ୍ତ ସ୍ୱାମୀ ଧ୍ୟାନ କରେ
ଜପଯୋଗେଁ ଚିତ୍ତ ହୁଏ କା ମନ । ୬୯ ।

ସ୍ୱଚ୍ଛଅମ୍ବୁଃ ସ୍ନାନେ ପ୍ରକ୍ଷାଳିତ ଅଙ୍ଗ
ତାମ୍ବୂଳ ଦ୍ୟୁତିରେ ଲୋହିତାଧର,
ବିଳାସିନୀଗଣ ଖୋଜିଲେ ନିର୍ଜନ
କୁସୁମେଷୁବାଣେ ହୋଇ କାତର । ୭୦ ।

ସରୋବର ମଜ୍ଜନରେ ସୁବିମଳ ଅଙ୍ଗଶୋଭା
ଧୌତ କରି ପୁରନ୍ଧ୍ରି ମାନ,
ଅତଶମ୍ଭୁ ଶ୍ରୀସମ୍ପନ୍ନ ଯାଦବଗଣଙ୍କୁ ଦେଖି
ସାଗରେ ପଶିଲ ଅଂଶୁମାନ । ୭୧ ।



# ନବମ ସର୍ଗ

ନିଜତେଜେ ସୂର୍ଯ୍ୟ ଅସହ୍ୟ ତାପିତ,
ଅସ୍ତଗିରି ରଶ୍ମି ସାଗରେ ପତିତ । ୧ ।

ରତ ଭୀଷ୍ମ କ୍ୟରେ ଗବାକ୍ଷର ଅଗ୍ରେ,
ସୂର୍ଯ୍ୟ ଅସ୍ତାଦ୍ରି-ଭୂ ନାସ୍ତି ଦେଖେ ବ୍ୟଗ୍ରେ । ୨ ।

ପରିଣାମ ପାଣ୍ଡୁ ଲୋହିତବରଣ,
ଦିଶିଲେ ସବତା ଦିବସ ନୟନ । ୩ ।

ଦିନାନ୍ତ ଅନିଳେ ଲତା ଅଙ୍ଗୁଳିରେ,
ନାଡ଼େ ଡ଼ାକେ ଶାଖୀ କ୍ରିବା ଖଗଗିରେ । ୪ ।

ଅସ୍ତ ସୂର୍ଯ୍ୟ ତେଜ ଶିଖରେ ଶିଖରେ,
ସାଧୁ ଅସ୍ତେ ମଧ୍ୟ ଥାଏ ଉନ୍ନତରେ । ୫ ।

ପାତୋନ୍ମୁଖ ସୂର୍ଯ୍ୟ କର ସହସ୍ରରେ,
ଶ୍ରମ୍ଭ ବ୍ୟର୍ଥ ଯତ୍ନ ବାଧି ବପକ୍ଷରେ । ୬ ।

କୁଙ୍କୁମ ଅରୁଣ ପାଣି୨ ଦିଗଙ୍ଗନା,
ସୂର୍ଯ୍ୟ କରେ ସିନା ରୁଚିରବରଣା । ୭ ।

ମନ୍ଦାରକୁସୁମ— ଦ୍ୟୁତି ଦିନକର,
ଅସ୍ତରାଗାରୁଣ କକୁଭନାକର । ୮ ।

ସ୍ୱର୍ଣ୍ଣନିଭକଳେ ସୂର୍ଯ୍ୟ ଅର୍ଦ୍ଧମଗ୍ନ,
ବ୍ରହ୍ମାଣ୍ଡ ଖଣ୍ଡ କି ପାତାଳଖେ ଭଗ୍ନ । ୯ ।

ଆସକ୍ତ ରବିଙ୍କି ନିରଶ୍ମି୩ ଲୋଚନ,
ପଶ୍ଚିମାଶା ବେଶ୍ୟା କଲା ନିଷ୍କାସନ । ୧୦ ।

ନଳିନୀ ରବିଙ୍କ ଅସ୍ତ ଗମନରେ,
ଦୁଃଖେ ଅବ୍ଜନେତ୍ର ନିମୀଳନ କରେ । ୧୧ ।

---

୧ । ଶ୍ରମ୍ଭ—ଅବଲମ୍ବନ, କର, ଅଂଶୁ ।
୨ । ପାଣି—କିରଣ । ୩ । ନିରଶ୍ମି—ନିର୍ଦ୍ଧନ, ତେଜଶୂନ୍ୟ ।

ଅତାରା ଅଚନ୍ଦ୍ର    ଅସ୍ତଭାନୁ ନଭ,
ନାସ୍ତାପ ନାସ୍ତମ    ଦିଶେ କ୍ଷୀଣପ୍ରଭ । ୧୨ ।

ସୂର୍ଯ୍ୟ ପରଲୋକେ    ସ୍ପର୍ଶିଲା କିରଣ,
ଜନ୍ମାନ୍ତର ସ୍ୱାମୀ    ସକାଶେ ଜ୍ୱଳନ । ୧୩ ।

କୁସୁମ୍ଭ କୁସୁମ    ଅରୁଣବରଣ,
ଜଗଦ୍ବନ୍ଦ୍ୟା ସନ୍ଧ୍ୟା    କଲା ସୁଧାରଣ,
ପିତାମହ ସର୍ଜି    ମୂର୍ତ୍ତି ତ୍ୟାଗ ପରେ,
ସାୟଂ ପ୍ରାତରୂପେ    ଜଗତେ ବହରେ । ୧୪ ।

ସନ୍ଧ୍ୟାର କିରଣ    ଅରୁଣ ବରଣ,
ବିରହାର୍ତ୍ତିହୃଦ    ରୁଧିର ଲେପନ-
ପରାୟେ ଦିଶଇ    ସାନ୍ଦ୍ର ସନ୍ଧ୍ୟା ଅଙ୍ଗ,
ଚକ୍ରବାକଯୁଗ    ତ୍ୟାଗ କଲେ ସଙ୍ଗ । ୧୫ ।

ଜଳଜ ସନ୍ତତ    କମଳାନିଳୟ,
ଦିନାନ୍ତେ ସୁତ୍ୟକ୍ତ    ଚପଳର କ୍ଷୟ । ୧୬ ।

ଦିବସ ସବିତା    ସଙ୍ଗରେ ବିଲୟ,
ସ୍ୱାମିବିରହିଣୀ    ସନ୍ଧ୍ୟା ଗଲା କ୍ଷୟ । ୧୭ ।

ସୂର୍ଯ୍ୟ ସିଂହ ଛାୟା—    ସିଂହେ କଲେ ହତ,
ନାଗଯୂଥ ତମ    ଘୋଟିଲା ଜଗତ । ୧୮ ।

ଉଜ୍ଜ୍ୱଳ ଦିବସ    ଯହୁଁ ଅବସାନ,
ଅଦ୍ରି ଗୁହା ମଧ୍ୟ    ତିମିର ସନ୍ତାନ[1] । ୧୯ ।

ବମନ୍ତୁ ଅଧଃକୁ    ଚଳୁ ଊର୍ଦ୍ଧ୍ୱେ ମିଶେ,
ଦିଗନ୍ତ ବିସ୍ତୃତେ    ଗାଢ଼ତମଃ ଦିଶେ । ୨୦ ।

ଘୋଟିଲା ତିମିର    ଅମ୍ବର ଭୂତଳ,
ଜନଲୋଚନକୁ    ଅଦୃଶ୍ୟ ସକଳ
କିନ୍ତୁ ନାରୀନେତ୍ରେ    ରଞ୍ଜି ର-ସାଞ୍ଜନ,
ପ୍ରିୟ ବେଶ୍ମବର୍ତ୍ମ    ଦେଖିଲେ ତତ୍କ୍ଷଣ । ୨୧ ।

ତାମସୀ ରାତିରେ    ପ୍ରିୟ ଭୋଗ ପାଇଁ,
ରମଣୀ ଦୟିତ    ଅଭିସାରେ ଧାଇଁ । ୨୨ ।

୧ । ସନ୍ତାନ — ବଂଶ ।

ଯେଉଁ ଗ୍ରହଗଣ    ସବିତା ତେଜରେ,
ଅଲକ୍ଷିତ ହୋଇ—    ଥିଲେ ଦିବସରେ,
ଅନ୍ଧକାରେ ହେଲେ    ସେ ଗ୍ରହେ ପ୍ରଦୀପ୍ତ,
ମଳ[illegible] ଅଣ୍ଡସ୍ତେ    ଲଘୁ ଯଥା ଦୀପ୍ତ । ୨୩ ।

ଚନ୍ଦନ କୁସୁମ    ପ୍ରଦୀପ ଜ୍ୱାଳନ,
କୋପିନୀ, କନ୍ଦର୍ପ—    କରେ ଉଦ୍‌ବୋଧନ । ୨୪ ।

ଭୂପ୍ରାପ୍ତ ନିଃସୃତ    ଶେଷଫଣାମଣି-
ସହସ୍ର କିରଣ    ନ ହୁଅଇ ଗଣି,
ତାଦୃଶ ଚନ୍ଦ୍ରଙ୍କ    କିରଣେ ଭାସ୍ୱର,
ମାଧବନନ୍ଦଗ୨    ଦିଶେ ମନୋହର । ୨୫ ।

ଶୁଭ୍ରକାନ୍ତି ବ୍ୟାପ୍ତ    ଉଦୟ ଅଚଳ,
ବ୍ୟବଧେ, ନ ଦିଶେ    ଶଶାଙ୍କମଣ୍ଡଳ,
ଅପ୍ରକାଶ ଦନ୍ତ    ପରାୟୁ ବଦନ,
ଶଙ୍କଦଗସ୍ମିତ    ହାସ ବିଶୋଭନ । ୨୬ ।

ଅଗ୍ରେ ଚନ୍ଦ୍ରକଳା    ତମୋଜଟା ଭିନ୍ନ,
କ୍ଷଣ ମୂର୍ତ୍ତି ପ୍ରାୟୁ    ଲକ୍ଷିତ ଅଖିନ୍ନ । ୨୭ ।

ନବୀନ ଚନ୍ଦ୍ରିକା    କୁସୁମ ଉଡ଼ନ୍ତ-
କବରୀଧାରିଣୀ    ମହେନ୍ଦ୍ର ହରିତ,-
ଅଗ୍ରେ ଇନ୍ଦୁଖଣ୍ଡ    ହେବାରୁ ପତିତ,
ଲଲାଟ ତଟେ କି    ଚନ୍ଦନ ଶୋଭିତ । ୨୮ ।

ଅଦେୟ ଚନ୍ଦ୍ରକଳା,    ତହୁଁ ଅର୍ଦ୍ଧମାନ,
ସମ୍ପୂର୍ଣ୍ଣ ଉଦୟେ    ସୁମହାନଗାନ,
ଏହା ତ ପ୍ରସିଦ୍ଧ    ଅଟେ ଜଗତରେ,
ଦ୍ୟୁତିଶାଳୀ କମେ    ଅଭ୍ୟୁନ୍ନତି କରେ । ୨୯ ।

ଅପନିଦ୍ର ଅବ୍ଜ    ଦ୍ୟୁତି ଶଶଧର,
ପ୍ରଥମ ପ୍ରବୃଦ୍ଧ    ସେ ନଦରାଜର—
ଅମ୍ବିକା ବଦନ    ପରାୟୁ ଶୋଭନ,
ହରଶଯ୍ୟନରୁ    ଅବା ଉନ୍ନଗନ । ୩୦ ।

---

୧ । ମଳିନ— ମଳୃଷ୍ଟ ।    ୨ । ମାଧବନନ୍ଦଗ —ପୂର୍ବଦିଗ ।

ଲକ୍ଷଣାନୁଗତ୧ ମନୋହର ଅଙ୍ଗ,
ଋକ୍ଷଗଣ୨ ସୂତେ— ସ୍ଥିତେ ହୋଇ ସଙ୍ଗ,
ଶଶି ଦାଶରଥି ଜଳଧି ଲଙ୍ଘନ,
ତିମିରରାକ୍ଷସ କଲେ ବିନାଶନ । ୩୧ ।

ଅମ୍ଭୋନିଧି ନିଜେ ଶଶାଙ୍କ ପ୍ରଦାନ-
କରି ସ୍ଫୀତାମ୍ବୁରେ ବଢ଼ାଏ ସମ୍ମାନ । ୩୨ ।

ଶଶି ରଜନୀର ଶୋଭା ବିବର୍ଦ୍ଧନ-
କରେ ରାତ୍ରିଶୋଭା ଚନ୍ଦ୍ରର ବର୍ଦ୍ଧନ,
ମହତ ଚରିତ ଉପକାର ସ୍ଥଳ,
ପରସ୍ପର ଅବ— ଲମ୍ବନା କେବଳ । ୩୩ ।

ଦିବସରେ ଜନ୍ତୁ— ରୁଚି କରେ୩ ହତ,
ମଧୁକର ରୁତେ କ୍ରନ୍ଦନ ସତତ,
କୁମୁଦିନୀ ନାରୀ ଚନ୍ଦ୍ର ଅଗ୍ର କରେ୪-
ସ୍ପର୍ଶି ହର୍ଷ ଜାତ କରାଏ ମନରେ । ୩୪ ।

କେ ରମଣୀ ଚନ୍ଦ୍ର— କାନ୍ତଶିଳା ନାରୀ-
ମୂର୍ତ୍ତି, ଚନ୍ଦ୍ର ଅଂଶୁ ସିକ୍ତ ବିନ୍ଦୁବାରି,
ସ୍ୱାମି ପାଶେ ଦେଖି ଭ୍ରାନ୍ତିରେ ଚକିତ-
ହୋଇ ସପତ୍ନୀକି ବୋଲି ପ୍ରକୋପିତ । ୩୫ ।

ଓଷଧିଅଧିପ୫ ଅମୃତକରରେ୬,
ଅଙ୍ଗନାଙ୍କ ଅଙ୍ଗ— ସୁମାର୍ଜ୍ଜନ କରେ,
ଅଭିମାନ ବଶେ ହେଉଥାନ୍ତି ଘାରି,
ଉର୍ଦ୍ଧ୍ୱାପନେ ଅଙ୍ଗୁ ଦିଅଇ ଉତାରି । ୩୬ ।

ରମଣୀ ନିର୍ମଳ କପୋଳଦେଶରେ,
ଇନ୍ଦୁଜ୍ୟୋତ୍ସ୍ନା ପଡ଼ି ଶ୍ୱେତ ବୃଦ୍ଧି କରେ । ୩୭ ।

ଗମ୍ଭୀର ଅବ୍ଧିକି କରାଏ ଚଞ୍ଚଳ,
କାମ ଲଘୁ ଯଦ୍ୟ, ଚନ୍ଦ୍ରରେ ପ୍ରବଳ । ୩୮ ।

---

୧ । ଲକ୍ଷଣ—ଲାଞ୍ଛନ, ରାମାନୁଜ । ୨ । ଋକ୍ଷ—ନକ୍ଷତ୍ର, ଭଲ୍ଲୁକ ।
୩ । କର—କିରଣ । ୪ । କର—କିରଣ, ହସ୍ତ ।
୫ । ଓଷଧିପତି—ଚନ୍ଦ୍ର, ବୈଦ୍ୟ ।
୬ । ଅମୃତକରରେ—ଜ୍ୟୋତ୍ସ୍ନା କିରଣରେ, ଅମୃତ ହସ୍ତେ ।

ଗବାକ୍ଷେ ଭବନେ ଜ୍ୟୋତ୍ସ୍ନା ନିପତିତ,
କନ୍ଦର୍ପ ଧାରଣେ ଯଷ୍ଟି କି ଲମ୍ବିତ । ୩୯ ।

କନ୍ଦର୍ପ ଭମିରେ ବାଣ ବ୍ୟର୍ଥ ଲକ୍ଷ୍ୟ,
ଭାବି, ଚନ୍ଦ୍ରୋଦୟେ କଲା ତା ପ୍ରତ୍ୟକ୍ଷ । ୪୦ ।

ଚନ୍ଦ୍ର ଉଦୟରେ ପ୍ରଫୁଲ୍ଲ କୁମୁଦ,
ଅଙ୍ଗନା ମାନସ କାମୋତ୍ସବେ ମୁଦ । ୪୧ ।

କଳୁଭର ମୁଖ ସହସା ଉଜ୍ଜ୍ୱଳ-
କର ଯୁବା ମନ ରତାର୍ଥ ପ୍ରବଳ,
ତ୍ରିନେତ୍ର ବହ୍ନିରୁ ଅପର ଦହନ,
କାମଅଗ୍ନି ଇନ୍ଦୁ କଲା ଉଦ୍ଦୀପନ । ୪୨ ।

ଶଶାଙ୍କ ଉଦୟେ ସକଳ ଅବଲା,
ପ୍ରିୟ ଆଗମନ ବଗୁର ଚଞ୍ଚଳା,
ପ୍ରସାଧନେ ହୃଷ୍ଟ ବିବିଧ ପ୍ରକାର,
ଯଥାକାଳେ କୃତ କରେ ଉପକାର । ୪୩ ।

ଉରୋଜତଟରେ ବହୁମୂଲ୍ୟହାର,
ନାରୀଗଣ ପିନ୍ଧି ଇଚ୍ଛିଲେ ବିହାର । ୪୪ ।
ରମ୍ଭାତରୁ ପ୍ରାୟ ଉରୁ ସୁରୁଚିର,
ରଶନା ଗୁଣରେ କାମ ବନ୍ଧାଚିର । ୪୫ ।

ଅଲକ୍ତକରସ ଅଧରେ ରଞ୍ଜନ,
ଗଣ୍ଡେ ଲୋଧ୍ରରଜ ନୟନେ ଅଞ୍ଜନ,
କ୍ଷୀରେ ଶଙ୍ଖ ଯଥା ନ ଦିଶଇ ଭିନ୍ନ,
ସାମ୍ୟଗୁଣ ହେତୁ ଦିଶଇ ଅଭିନ୍ନ । ୪୬ ।

ଆରକ୍ତଅଧର ଦଳର ମଧ୍ୟରେ,
ଦଶନ କିରଣ କେଶରୀଭ୍ରମରେ,
କପୋଳ କର୍ଣ୍ଣିକା ବଦନ କମଳ,
ପ୍ରମଦା ସରସୀ ବିଭାସେ ଉଜ୍ଜ୍ୱଳ । ୪୭ ।

ଦେଖନ୍ତି ଭ୍ରମରେ ଗଗନେ ଚନ୍ଦ୍ରମା,
ନାରୀମୁଖ ଦେଖି ଭୂତଳଚନ୍ଦ୍ରମା । ୪୮ ।

କଠିନ ଉରୋଜେ  ମଦନର ଶର,
ସନ୍ତତ ଆଘାତେ  ନମ୍ର ତତପର । ୪୯ ।

ପ୍ରିୟ ଆଗମନ  ଭାବ ଉତ୍ସୁକରେ,
ନାରୀ ପ୍ରସାଧନ  ନ କଲା ମନରେ,
ଅଙ୍ଗରାଗ ପୁଷ୍ପ  ବସନ ଭୂଷଣ,
ବିସ୍ମୃତ ବିମୁଗ୍ଧା  କାମୋତ୍ସବେ ମନ । ୫୦ ।

ପ୍ରିୟ ପରିରମ୍ଭ  ବିଚ୍ଛେଦ ଭୟରେ,
ନାରୀ ଅଙ୍ଗରାଗ  ନ ଦେଏ ଅଙ୍ଗରେ । ୫୧ ।

ଏକ ନାରୀ ପାଣି—  ପଲ୍ଲବ ତଳରେ,
ଢାଙ୍କେ, କର ଲାଗି  ନାସିକା ବିବରେ,
ଘ୍ରାଣେ ଗନ୍ଧ ପାଇ  ଆନନ୍ଦିତ ଅଳୀ,
ବଲ୍ଲଭେ ନ କୋପ  କଲା ବୋଲି ଭାଳି । ୫୨ ।

ପରିପୂର୍ଣ୍ଣ ଚନ୍ଦ୍ର—  ମଣ୍ଡଳ ଗଗନେ,
ନାରୀମୁଖ, ବିମ୍ବେ  ସାମ୍ୟ ଘେନେ ମନେ । ୫୩ ।

କର ପଲ୍ଲବରେ  ନ୍ୟସ୍ତ ଗଣ୍ଡସ୍ଥଳ,
ଅଧିଜାନୁ ବାହୁ  ବଦନକମଳ,
ସ୍ୱାମି ଅପେକ୍ଷାରେ  ଅଧ୍ୱନି ଅତାନ,
ଅବ୍ୟକ୍ତ ମଧୁରେ  କରେ ମୃଦୁଗାନ । ୫୪ ।

ପ୍ରଣୟ ପ୍ରକାଶେ  ଅତ୍ୟନ୍ତ ପ୍ରବଣ,
ମନୋଜ ମୋହିତ  ବିଳାସିନୀଗଣ,
ବଲ୍ଲଭମାନସ  ଇଚ୍ଛାରେ ହରଣ,
ସ୍ୱାମିଅଙ୍ଗେ କଲେ  କଟାକ୍ଷ ପ୍ରେରଣ । ୫୫ ।

କୋପ ଅନୁତପ୍ତା  ଭାମିନୀ ବିରହେ,
ଦୂତକି ସବିଧେ  ଡାକି ଧୀରେ କହେ,
ଯାଅ ଦୂତି ବେଗେ  ବଲ୍ଲଭଙ୍କ ପାଶେ,
ବୁଝାଇବ ଯଥା  ଦୟା ପରକାଶେ । ୫୬ ।

ମାନବତୀ ନାରୀ  ନ କହିବା ଅଗ୍ରେ,
ସ୍ୱାମି ଆଣିବାକୁ  ଦୂତୀ ଗଲା ବ୍ୟଗ୍ରେ,
ନାରୀ ଦୁଃଖ ଦେଖି  ବୁଝାଇଲା ଧବ,
ପରହିତକାରୀ  ଅଟନ୍ତି ମାଧବ । ୫୭ ।

ଅପରାଧୀ ସ୍ୱାମୀ  ନହୋଇ ତିରସ୍କୃତ,
ପୁଣି ମୋଠାରେ ସେ  ହେଲେ ପୁରସ୍କୃତ,
ଉଚିତ ଅଟଇ  ସିନା ଅଟଗୋ ସଖି !
ନିଜର ସମ୍ମାନ  ନିଜେ ସିନା ରଖି । ୫୮ ।

ଧୈର୍ଯ୍ୟ ଧର ସ୍ୱାମୀ  କର ପରିତ୍ୟାଗ,
ବିରୋଧ ବାନ୍ଧିଲେ  ତାଙ୍କ ସଙ୍ଗେ ଆଗ,
ତବ ଆଗେ ସଖି !  ନ କରେଁ ଗୋପନ,
ଦୁଃସାହସ କାର୍ଯ୍ୟେ  ନାହିଁ ଆଉ ମନ । ୫୯ ।

ନ ଜାଣୁଁ ତ ତବ  ସ୍ୱାମି ଅପରାଧ,
ଯାଅ ସ୍ୱାମିପାଶେ  ମାନିନି ! ନିର୍ବାଧ,
ଏହା କହି ଦୋଷୀ  ସ୍ୱାମି ନିକଟରେ,
ନାୟିକା ପ୍ରବେଶ  କରାଇଲା ଖରେ । ୬୦ ।

କୃଶତନୁ ଦେଖି  ସଖୀ ଆଗେ କହେ,
କହ ସ୍ୱାମିଙ୍କି ଅ—  ଦେହ ଦେହଦହେ । ୬୧ ।

ପ୍ରଗଲ୍ଭ ପ୍ରତିଭା—  ସାରଗର୍ଭ ବାଣୀ,
ଦୂତୀ ନର ଆଗେ  କହେ ଯୋଡ଼ି ପାଣି,
ନିମୀଷୁ ସୁହୃଦ  ଅଭୀପ୍ସିତ ଯାହା,
ପ୍ରକୃତିବିରୁଦ୍ଧ  ହେଲେ ଶୋଭେ ତାହା । ୬୨ ।

ଯା ରୂପରେ ଅଦ୍ୟେ  ଥିଲ ବିମୋହିତ,
ସେ ତବ ବନିତା  ହୃଦୟୁ ସେବିତ,
କାମ ତୃଷ୍ଣାଠାରେ  ହୋଇ ବୀତଦୟ,
କରୁଅଛୁ ମୃଦୁ—  ଅଙ୍ଗୀ ତନୁ କ୍ଷୟ । ୬୩ ।

ନାମକୀର୍ତ୍ତନରେ  ହୋଇ ସେ ଉତ୍କର୍ଣ୍ଣ,
ତବ ଗୁଣଗୀତ  କରଇ ଶ୍ରବଣ । ୬୪ ।

ତପ୍ୟମାନ ଦେହ  ଉଷ୍ଣଶ୍ୱାସାନିଳ-
ବହି ଶୁଷ୍କାଧର  ନ କରେ ଦୁର୍ବଳ । ୬୫ ।

ଅତ୍ୟନ୍ତ କଠିନ  ସ୍ତନ ଆବରଣ,
ଭେଦେ ପ୍ରିୟାହୃଦ  କନ୍ଦର୍ପ ମାର୍ଗଣ । ୬୬ ।

କୁସୁମରୁ ଅଙ୍ଗ ଅତ୍ୟନ୍ତ କୋମଳ,
ସ୍ମରନୟନାର ନ ଭାବ ସକଳ,
କ୍ଳିଷ୍ଟରୁଣ ଭାବେ କୃଶା ନାରୀ ଦୀନା,
କୁସୁମେଷୁବାଣେ ଦଗ୍ଧକରେ ସିନା । ୬୭ ।

ବିପରୀତ ପ୍ରୟୋ— ଗରେ ସର୍ବାହିତ,
ଅମୃତ ବଷନ୍ତେ ଚଏ କି ରହିତ,
ତବ ସଙ୍ଗେ ପ୍ରିୟା ଥିଲେ ଯାହା ହିତ,
ତବ ବରହରେ ଜ୍ୟୋତ୍ସ୍ନାଦି ଅହିତ । ୬୮ ।

ଦୂତୀ ବାକ୍ୟ ସତ୍ୟ ଭାବି ପ୍ରିୟା ପ୍ରତି,
ବିଶ୍ୱାସ ସ୍ନେହକୁ ଦେଖାଏ ଝଟିତି,
ବିଦିତ ଇଙ୍ଗିତ ସର୍ବସଖୀଜନ,
ପ୍ରିୟାକୁ ବଲ୍ଲଭେ କଲେ ସମର୍ପଣ । ୬୯ ।

ଦୟିତାରେ ମନ— ଦେଇ ଯୁବାଗଣ,
ଜ୍ୟୋତ୍ସ୍ନାରାତ୍ରେ କଲେ ପ୍ରିୟା ଅନ୍ୱେଷଣ । ୭୦ ।

ଦୟିତାକୁ ଗୃହେ କରି ବିଲୋକନ,
କାମେ ଦଗ୍ଧ ହୃଦ ସମସ୍ତ କମନ । ୭୧ ।

ସହସା ଆଗତ ଦେଖି ଯୁବକର,
ନାରୀ ଅଭ୍ୟୁତ୍ଥାନ କଲା ତତପର,
ନମ୍ର ପୀନକୁଚ— ଯୁଗ ଦୋଳ ଶୋଭେ,
ଯୁବା ଆଲିଙ୍ଗନ କଲା ଗୃହେଁ ଲୋଭେ । ୭୨ ।

ଧୀରେ ଧୀରେ ଯୁବା ନାରୀପୃଷ୍ଠଦେଶେ,
ପ୍ରବେଶିଲା ଆସି ସୁରକ୍ରୀଡ଼ା ବେଶେ,
ପ୍ରତିବିମ୍ବ ଦେଖି ମୁକୁରେ ରମଣୀ,
ଯୁବାକୁ ଆଶ୍ଳେଷେ ବ୍ରୀଡ଼ାକୁ ନ ଗଣି । ୭୩ ।

ଗାଢ଼ଆଲିଙ୍ଗନେ ନତ କୁଚଦ୍ୱୟ,
ରଶନା କିଙ୍କିଣୀ— ରବ ଡାକେ ଜୟ । ୭୪ ।

ପ୍ରିୟ ଉପଗତେ ସହସା ଉଚ୍ଛ୍ୱସିତ,
କର ଲୁଣ୍ଠନୀବି ବସନ ଗଳିତ,
କ୍ଷଣେ ହେମଶଳା ସଦୃଶ ଜଘନ,
ଦେଖି ଯୁବକର ସମ୍ମୁଗ୍ଧ କ ମନ । ୭୫ ।

ପୁଷ୍ପଭାଗୁଁ ଅସି ନାସ୍ୱି ନେଇବ୍ରସ୍ୱି,
ଅଚ୍ଛାଦେ ଦେଇ ତା କରକିଶଲୟ୍;
କିଏ କିଏ ବୋଲ ପଶ୍ଚରେ ରମଣୀ,
ନ କହେ ପୁଲକେ ସୁବାଣିଶ୍ରୋମଣି । ୭୬ ।

ଭର୍ତ୍ତୃ ସମକ୍ଷରେ ନ ବଳେ ଚରଣ,
ଲଜ୍ଜା ବିକ୍ଲବତା ପୁଲକ କମ୍ପନ,
ପ୍ରଭପଉମ୍ମୂଢ଼ା ନବୋଢ଼ା ଯୁବତ,
ସାତ୍ତ୍ୱିକେ କାନ୍ତର ଆଦରଣୀ ଅଭ । ୭୭ ।

ନିଜ ସଦନରେ ଉପଚରେ ପତ,
ଉଲ୍ଲସରେ ପର— ମନ୍ଥର ଯୁବତି,
ମନ୍ଦଗମନରେ ସ୍ଖଳିତ ଚରଣ,
ପ୍ରେମିକର କରେ ପ୍ରେମ ଅକର୍ଷଣ । ୭୮ ।

ଚଳିତ ଭ୍ରୂଲତା ଚଞ୍ଚଳ ଚରଣ,
କରସଂଗ୍ଚଳନ ଚତୁରବଚନ,
ହେଳେହେଁ ସ୍ୱଭାବ, ନିପୁଣ ଶିକ୍ଷିତ,
ରମଣୀର ନୃତ୍ୟ— ଲୀଳା ବିଶୋଭିତ । ୭୯ ।

ବିଶ୍ୱକର୍ତ୍ତା ତବ ସହସ୍ରଲୋଚନ-
କରନାହାନ୍ତି ଏ ଅଯୁକ୍ତ ବଚନ,
ଗୋସଂ ଭେଦନରେ ଅଦ୍ୟ ଜଗତରେ,
ଇନ୍ଦ୍ରତା ପ୍ରକାଶ ହୁଏ ମୋ ମତରେ । ୮୦ ।

ନିକଟସ୍ଥାୟିନୀ ମୋତେ ସମ୍ଭାଷଣ-
ନ କରନ୍ତି, ଅନ୍ୟା ହୃଦୟଭୂଷଣ । ୮୧ ।

ଏହା କହ ଅଗ୍ରେ ଜଗମିଷୁ ନାସ୍ୱୀ,
ଉରସ୍କଙ୍କ ନେସ— ପାତ ହାସ୍ୟକାସ୍ୱୀ,
ପରସ୍ପର ଉଭେ ପ୍ରେମଅଲିଙ୍ଗନେ,
କାମ ବଜେ କସ— ଇଲେ କାଞ୍ଚୀ ସ୍ୱନେ । ୮୨ ।

---

୧ । ଗୋତ୍ର — ପର୍ବତ, ବଂଶ । ଗୋତ୍ରଭେଦନ — ନାମ ଉଚାରଣ, ଇନ୍ଦ୍ର ।

କୋପରେ ରମଣୀ     ସ୍ୱାମି ନିଷ୍ଠାଶନ-
କର, ପୁଣି କରେ     ସୁକୃତ୍ରିମ ସ୍ୱନ,
ସ୍ୱାମୀ ଜାଣି ନାରୀ     କୋପ ଅକାରଣ,
ସ୍ଥିତ ହେଲା ବୋଲି     ସ୍ଖଳିତ ଚରଣ । ୮୩ ।

ମାନିନୀ କାମିନୀ     ବଲ୍ଲଭ ଲୋକନେ,
ନତମୁଖେ ନୀବ     ଆଚ୍ଛାଦେ ବଦନେ,
ସ୍ୱାମିଙ୍କ ପ୍ରସ୍ଥାନେ     ମାନ ହେଲା ଅସ୍ତ,
ପଦଚିହ୍ନେ ଖୋଜେ     ହୋଇ ଅତି ବ୍ୟସ୍ତ । ୮୪ ।

ପତିର ନୂତନ     ଦୋଷମାନେ ତପ୍ତ,
ଯୌବନ ଉଷାରେ     ହୁଏ ଅଭିତପ୍ତ,
ସ୍ମରାନଳେ ପୁଣି     ବିବିଧ ଉପତ,
ସ୍ତନ ସ୍ପର୍ଶେ ହୁଏ     ନଖକ୍ଷତ ବତ । ୮୫ ।

ସ୍ମର ଯୌବନରେ     ଅତି ଅଶୀତଳ,
ପୀନ ସ୍ତନଦ୍ୱୟେ     ଶୋଭେ ବକ୍ଷସ୍ଥଳ,
ଉର୍ବଶୀ ଭୂତଳେ     କରେ କି ବିହାର,
ମେନକାରୁ ଶୋଭା     ଅଧିକ ତାହାର । ୮୬ ।

ଚନ୍ଦ୍ର ରଜନୀରେ     ଶାନ୍ତ ନାରୀମାନ
କାମ ଶ୍ରୀ ବିଳାସଭରେ,
ଲଜ୍ଜା ନିବାରକା     ରତିରେ ମଦିରା
ଆଶ୍ଚର୍ଯ୍ୟର କାର୍ଯ୍ୟ କରେ । ୮୭ ।

—୦*୦*୦—

# ଦଶମ ସର୍ଗ

କ୍ଷାଳିତନୟନ ଉତ୍ପଳ
ମୁଖ ସୌରଭଭରେ,
ଯୁବକେ ନାରୀମୁଖ ସୁରା
ପିଅନ୍ତି ବିଲୋଭରେ । ୧ ।
ଯୁବକେ ବିନୟେ ବଧୂଙ୍କ
ଅପସାରିଲେ ମାନ,
ନିଃଶଙ୍କେ ମଧୁର ମଦିରା
କରାଇଲେ ସୁପାନ । ୨ ।
କାନ୍ତ କାନ୍ତମୁଖ ବିମ୍ବରେ
ସହକାର ସୌରଭେ,
ମତ୍ତଅଳି ଗୁଞ୍ଜେ, ରହିଲେ
ପଞ୍ଚେନ୍ଦ୍ରିୟ ନିସ୍ତ୍ରବେ । ୩ ।
ଉନ୍ମଦ ମଧୁକର ଭ୍ରମେ
କାପିଶାୟନ୧ ବାସେ,
ଫୁଲ୍ଲ ଦୃଷ୍ଟି ନାରୀ ବଦନେ
ପାନପାତ୍ରର ଅଶେ । ୪ ।
ଅବଳା ଲୋଚନ ଜଳଜ
ବୋଲି ଅଳି ପତିତ,
ମଦ୍ୟପ ଭ୍ରାନ୍ତମାନର କି
ହୁଏ ବିବେକ ହିତ । ୫ ।
ପ୍ରେୟସୀଦତ୍ତ ମଦ୍ୟ ସ୍ୱାମୀ
ପାନେ ଲଭେ ସୁସ୍ୱାଦ,
ସୁବର୍ଣ୍ଣମୁକୁଟ ଅଂଶୁରେ
ଅଚେତନେ ବିବାଦ । ୬ ।

---

୧ । କାପିଶାୟନ – ମଦ୍ୟ ।

ଅଙ୍ଗଣଯେ ନାରୀ ଅଧର—
 ମଧୁପାନ ଅସ୍ୱାଦ,
ଅନୁଭବ କଲେ ଯୁବକେ
 ଅପୂର୍ବ ଅପ୍ରମାଦ । ୭ ।
କାମଗଣ ବିଜୃମ୍ଭମାଣ
 ମୁଖେ ପିଇଲେ ମଦ୍ୟ,
ନାସାରନ୍ଧ୍ର ଉତ୍ପଳ ଗନ୍ଧେ
 ଗନ୍ଧ ମିଶିଲା ସଦ୍ୟ । ୮ ।
କାମିନୀ ଅଧର ଯାବକ[1]
 କାମି ଅଧରେ ଶୋଭେ,
ମଦ୍ୟ ତୁଲ୍ୟ ଅଧର ରସ
 ଯେଣୁ ପିଇଲା ଲୋଭେ । ୯ ।
ସୁବର୍ଣ୍ଣ ଯୁବକ ପ୍ରେୟସୀ—
 ମଦକାନ୍ତି ବଦନ,
ଚୁମ୍ବନେ ପିଏ ସୁରା ଯେଣୁ
 କାମକ୍ରୀଡ଼ାସଦନ । ୧୦ ।
ମଧୁପାନେ ମତ୍ତ କାମୁକ—
 କାମିନୀଙ୍କ ଆନନେ,
ନେତ୍ର ନୀଳୋତ୍ପଳ ଲଜ୍ଜାରେ
 ରହେ ଅଧୋଗମନେ । ୧୧ ।
ନିସବକେ[2] ପ୍ରାଢଭ[3]ଗତ
 ପରିହସେ ରମଣୀ,
ବକ୍ରବାକ୍ୟ ବ୍ୟଙ୍ଗ୍ୟେ ସୂଚିଲେ
 ଗୂଢ଼ ରହସ୍ୟଖଣି । ୧୨ ।
ତରୁଣେ ତରୁଣୀ ଉତ୍କଣ୍ଠ—
 ମଦେ ଦୃଷ୍ଟିବିକାର,
ରମ୍ୟଭାବ ମୁହାସ କଲେ
 ବକ୍ରବାକ୍ୟ ପ୍ରଚୁର । ୧୩ ।

---

୧ । ଯାବକ – ଲକ୍ଷାରସ । ୨ । ନିସବକ—ନିବାର ମଦ୍ୟପାନ ।
୩ । ପ୍ରାଢଭ—ପ୍ରଢଭବିଶେଷ ।

ଅପରାଧି ବଲ୍ଲଭେ କୋପ—
ଦୀପ୍ତ ନାରୀହୃଦୟ୍ନ,
ମଧୁରସେ ଧୌତ ଶମିତ
ଦ୍ରାବତେ ହେଲା ଅସ୍ନ । ୧୪ ।

ଅପ୍ରକାଶିତ ସୁବିଭ୍ରମ
ପ୍ରମଦାଗଣ ଅଙ୍ଗେ,
ମଧୁ ପ୍ରକାଶେ ଧାତୁ ଲୀନ—
ଉପସର୍ଗର ସଙ୍ଗେ । ୧୫ ।

ସ୍ରସ୍ତମାଲ୍ୟ ବସ୍ତ୍ରାଭରଣେ
ମଦେ ସ୍ନେହ ନ କରେ,
ଉଦ୍ଭ୍ରାନ୍ତି ଉଚାର ଉର୍ଥିତ
ରମଣୀ ବିଭ୍ରମରେ । ୧୬ ।

ମଦ୍ୟମାନେ ନିପା ବଢୁର—
କର ନବୀନ ବଧୂ,
ବଳନେବେ କାମିଙ୍କ ଦେଖେ
କି ନ କରଇ ମଧୁ । ୧୭ ।

ସଖୀ ବିନୟେ ଯେଉଁ ନାରୀ
କଷ୍ଟେ ସ୍ୱାମି ପାଶରେ,
ଯାଏ, ବ୍ରୀଡ଼ା ତେଜି ସେ ଏବେ
ମଦ୍ୟ କିବା ନ କରେ । ୧୮ ।

ନାରୀରାଗ ପ୍ରିୟେ ନିଧାରେ
ଯାହା ଥିଲା ଛାଦିତ,
ବାରୁଣୀମଦରେ କାଃଶଙ୍କେ
ଏବେ ହେଲା ଉଦିତ । ୧୯ ।

ଚନ୍ଦ୍ରୋଦୟେ ଅଭିସାରରେ
ଯେବା ଅନୁତାପିନୀ,
ସେ ବାମାଗଣ ମଦ୍ୟପାନେ
ଏବେ ସ୍ୱୟଂ ଗାମିନୀ । ୨୦ ।

ମଦବଶମୋହିତ ମାନସେ
ନ ଛୁଇଁ ଧୂର୍ତ୍ତପ୍ରଜ,
ନ ଇଚ୍ଛଇ ସୁରା, ସୁଖରୁ
ମାନ ଅଟେ ଦୁସ୍ତ୍ୟଜ । ୨୧ ।
ନାରୀ ଲଜ୍ଜା ହର ଦୟିତ—
ଧାରେ ନଅଇ ଧଦ୍ୟ,
ରତସୁଖରେ ସୁପ୍ରସନ୍ନା
ମଧୁ ଫଳଦ ସଦ୍ୟ । ୨୨ ।
ଦୟିତ ପ୍ରଦତ୍ତ ମଦନେ—
ମତ୍ତ ଦୟିତାଗଣ,
ମଦ୍ୟର ପ୍ରକୃଷ୍ଟ ମଦରେ
ନାମ ପ୍ରମଦା୧ଗଣ । ୨୩ ।
ପରସ୍ପର ମିଳନ ହେତୁ
ନାରୀ ଅସ୍ୟ ଚଷକ,-
ମଦ୍ୱାରୀ ସୌରଭ ମୋଦିତ—
କ୍ଷଣେ ଚିତ୍ତାକର୍ଷକ । ୨୪ ।
ମାନଭଙ୍ଗପୁଷ୍ଟ ବଲ୍ଲଭ
ସୁରତାଭିଳାଷରେ,
ଯୋଷିତଗଣଙ୍କୁ ସନ୍ତୋଷ
କଲେ କାମମଦରେ । ୨୫ ।
ନିଭୃତ ଚୁମ୍ବନ ଚତୁର
ପ୍ରିୟାଧର ଚୁମ୍ବନେ,
ଯାବକରାଗରେ ରଞ୍ଜିତ
ନିଜ ଓଷ୍ଠ ନ ଗଣେ । ୨୬ ।
ଅନ୍ୟ ନାରୀନାମ ଉଚ୍ଚାର
ପ୍ରିୟ ପ୍ରଦତ୍ତ ମଦ୍ୟ,
ପାନେ ଅପ୍ରମତ୍ତ, ଅପାନେ
ଅନ୍ୟ ପ୍ରମତ୍ତ ସଦ୍ୟ । ୨୭ ।

---

୧ । ପ୍ରମଦା—ପ୍ରକୃଷ୍ଟମଦଯୁକ୍ତା, ଗର୍ବ, ଉନ୍ମାଦଯୁକ୍ତା ।

ପତି ଅନ୍ୟ ନାରୀ ଅସକ୍ତ
ଭାବ କେଉଁ ନବୀନା,
ମଦ୍ୟପାନରେ ଅପ୍ରମତ୍ତ
ନିବୃତ୍ତି ହେତୁ ସିନା । ୨୮ ।

ଅଦ୍ୟେ କୋପବତୀ ତହିଁରେ
ମଦବହ୍ୱଳ ଚିତ୍ତ,
କାନ୍ତରେ ବଳୀତା, ମତ୍ତରେ—
କିବା ଅସମ୍ଭାବିତ । ୨୯ ।

ମୁକୁଳିତ ନେତ୍ର ନିଶ୍ଚେଷ୍ଟ—
ଅଙ୍ଗ ଲଜ୍ଜାହାରିତ,
ଈର୍ଷ୍ୟା ଦୂରକାରୀ ଅନଙ୍ଗେ
ମଦ୍ୟ ମଦ ମିଳିତ । ୩୦ ।

ଚନ୍ଦ୍ରବିମ୍ବ ସମ ରମଣୀ
ଅପୀତ ଗଣ୍ଡସ୍ଥଳ,
ମଦ୍ୟପାନ ପରେ ଆରକ୍ତ
ଦଶେ ଗଣ୍ଡମଣ୍ଡଳ । ୩୧ ।

ଦୃଢ଼ତପର କୁଚକୁମ୍ଭ
ପରସ୍ପର ସଙ୍ଗରେ,
ବିବାଦେ ପୁରୁଷ କରରେ
ଆଶ୍ରୟ ନେଲେ ଖରେ । ୩୨ ।

ନାରୀ ଅଙ୍ଗେ ଗୁରୁତା ଶୋଭେ
ତହିଁ ଯୌବନ ଯୋଗ,
ସେ ଯୋଗ କନ୍ଦର୍ପରେ ଶୋଭେ
ତାହା ପୁରୁଷ ଭୋଗ । ୩୩ ।

ମତ୍ତ ହୋଇ ନାରୀ ସର୍ବଦା
ରୋଷ ପରିତୋଷରେ,
ଥିବାରୁ, ଅନଙ୍ଗ ଧନୁରୁ
ବିଶିଖ ତ୍ୟାଗକରେ । ୩୪ ।

ଅନ୍ୟ ନାରୀସଙ୍ଗ ଶଙ୍କାରେ
ସ୍ୱାମିଠାରେ କୋପିନୀ,
ଈର୍ଷ୍ୟା ଗୁପ୍ତ ମନଭିତର
କାହିଁ ଅନୁସଙ୍ଗିନୀ । ୩୫ ।

ବଲ୍ଲଭ ସମକ୍ଷେ ନାରୀଙ୍କ
ମୁଖ ହୁଏ ବିକାଶ,
ବଚନରେ ରୋଷ, ହୃଦୟ
ଆର୍ଦ୍ର, କ୍ଷଣେ ସୁହାସ । ୩୬ ।

ସ୍ୱଭାବ ସୁନ୍ଦର, ସ୍ୱରୂପ,
କାର୍ଯ୍ୟ, ଅବଲୋକନ,
ବର୍ଦ୍ଧମାନ ପ୍ରେମେ ଲଳନା
ବଶ କଲା ରମଣ । ୩୭ ।

ରମ୍ୟ ମାନବଞ୍ଚନଦକ୍ଷା—
ନାରୀ, ଇନ୍ଦୁବଦନେ,
ଲୀଳାରେ ଦୟିତ ହୃଦୟ
ବଶ କଲା ତତ୍କ୍ଷଣେ । ୩୮ ।

ସ୍ପର୍ଶ ସୁଖ ଶୁଭ୍ର ସୁନ୍ଦର—
ତଳ୍ପେ ସ୍ୱାମିଶୟନ,
ବଲେକ ହରଣନେବାଙ୍କ
ଫେରୁନାହିଁ ନୟନ । ୩୯ ।

ଦର୍ଶନ ଉତ୍ସୁକ ଭାମିନୀ—
ନେବ, ବଙ୍କ ପତନେ,
ଯୁବକେ, ଅଯୃତ ହେଲେହେଁ
ଶ୍ରୋବ ନ ଲଙ୍ଘେ କ୍ଷଣେ । ୪୦ ।

କଥନରେ ନାରୀ ଅକ୍ଷମା
ସମ୍ମୁଖରେ ନ ରହେ,
ପ୍ରିୟାଙ୍ଗ ସଙ୍ଗରେ ଚପଳା
କମ୍ପେ ହୃଦ ବରହେ । ୪୧ ।

କୁଚାଂଶୁକ ଅକର୍ଷଣରେ
ରମଣୀ ଲଜ୍ଜାଭରେ,
କୁଚମଣ୍ଡଳକୁ ବଲ୍ଲଭ
ବକ୍ଷେ ଛାଦନ କରେ । ୪୨ ।

ଅଂଶୁକହାରକ ବଲ୍ଲଭ
ନାରୀ ବାହୁ ଯୁଗଳ,
ପୃଷ୍ଠେ ବନ୍ଧ ଦେଇ ଅଶ୍ଳେଷେ
କାର ଅନଙ୍ଗବଳ । ୪୩ ।

ପ୍ରଣୟ କୋପ ତେଜ ନାରୀ
ପତିରେ ଅଲିଙ୍ଗିତ,
ରତିପତି ଶର ପ୍ରହାରେ
କାମରସେ ମୋହିତ । ୪୪ ।

ରାଗାନ୍ଧ ସ୍ୱାମିରେ ସପତ୍ନୀ
ହେବାରୁ ଅଲିଙ୍ଗିତ,
ଭ୍ରଶ୍ୟମାନ ସ୍ୱେଦାକ୍ତ ବସ୍ତ୍ର
ଜଘନେ ଅଚ୍ଛାଦନ । ୪୫ ।

ସପତ୍ନୀ ସମକ୍ଷେ ଯୁବତୀ—
ସ୍ତନଯୁଗ ଦଳନ,
ଯୁବା କରିବାରୁ, ତନ୍ମୟ
ହୃଦ କଲା ଧାରଣ । ୪୬ ।

ଦୀପିତ କନ୍ଦର୍ପ ପ୍ରଣୟୀ
ନାରୀ କୁଚପୀଡ଼ନେ,
ବକ୍ରତା ନ ଭଜେ କଠିନ—
ହେତୁ ଗାଢ଼ାଲିଙ୍ଗନେ । ୪୭ ।

ଅଲିଙ୍ଗିତ ନାରୀ ପତିର
ହୃଦେ ଇଚ୍ଛେ ପ୍ରବେଶ,
ନ ଜାଣେ ସ୍ୱାମି ଅନ୍ତର୍ହୃଦେ
କରିଅଛି ପ୍ରବେଶ । ୪୮ ।

ପ୍ରେମରସପୂର୍ଣ୍ଣ ଅଙ୍ଗନା
ଦେହ ଗାଢ଼ାଶ୍ଳେଷଣେ,
ଅର୍ଦ୍ଧବସ୍ତ୍ର, ସାତ୍ତ୍ୱିକ ସ୍ୱେଦ—
ଅମ୍ବୁବିନ୍ଦୁ ସେଚନେ । ୪୯ ।

ପ୍ରଣୟୀ ଅଙ୍ଗସଙ୍ଗ ଜାତ—
ହର୍ଷ ନାୟିକାହୃଦରେ,
ରହି ନ ପାରି ପୁଲକରେ
ଉଚ୍ଛୁଳେ ଅତି ଖରେ । ୫୦ ।

ଅଙ୍ଗନା ସ୍ୱାମିଙ୍କ ସଙ୍ଗମେ
ସର୍ବାଙ୍ଗ ପୁଲକିତ,
କାମରସରେ ଉଚ୍ଛ୍ୱସିତ
ନୀବବନ୍ଧ ମୋଚିତ । ୫୧ ।

ଶ୍ୱେତଦଳ ଆନନପଦ୍ମ
ଲଜ୍ଜାଭରିବନତ,
କାମୀ ନାୟିକେଣ ଆକର୍ଷି
ଚୁମ୍ବନେ ହେଲା ରତ । ୫୨ ।

ଅଧରପଲ୍ଲବ ପ୍ରଣୟୀ
କରିବାରୁ ଦଂଶନ,
ନାୟିକରଲୋଲ ବଳୟ
ସୌହାର୍ଦ୍ଦେ କରେ ସ୍ୱନ । ୫୩ ।

କେ ଯୁବା ଆରକ୍ତ ବିରହ—
ବାଷ୍ପ ତପ୍ତ ଅଧର,
ତ୍ୟାଗ କରି ଉତ୍ପଳନେତ୍ର
ରାଗେ ଚୁମ୍ବେ ସତର । ୫୪ ।

ଦମ୍ପତୀ ରମନ୍ତି ବିଜନ
ରମ୍ୟ କେଳିସଦନେ,
ଯୁଗାନ୍ତ ଅବ୍ଧିରେ କମଳା—
ସଖ ଯଥା ନିର୍ଜନେ । ୫୫ ।

ଅବୃତ ଜଙ୍ଘତ ଉଦ୍ରେକ—
ଦ୍ୱୟ ପ୍ରେମିକକର—
ସ୍ପର୍ଶେ, ବାମାଙ୍କର ହୃଦୟ
ହରଷ ବହୁତର । ୫୬ ।

କାମିଗଣ ସ୍ୱେଦାମ୍ବୁ ମୃଦୁ
ନମ୍ର ନଖରେ କ୍ଷତ—
କରନ୍ତି, କାମିନୀ କଠିନ
କୁଚତଟେ ସତତ । ୫୭ ।

ଯୌବନୋଷ୍ମ ସ୍ତନ-ଶିଳାଗ୍ରେ
କାମିକର ବହ୍ନର,
ନିମ୍ନନାଭି ସରସୀ ମଧ୍ୟେ
ପତିତ ତପ୍ତ ପର । ୫୮ ।

କାମିନୀ ତ୍ରିବଳୀ ବୀଚରେ
କାମୀ ଚଞ୍ଚଳକର—
ପ୍ରସାର ମୁଷ୍ଟିମେୟ ମଧ୍ୟ
ବୋଲି ଭ୍ରବେ ସତ୍ୱର । ୫୯ ।

ନାଭିହ୍ରଦେ କର ମଜ୍ଜନ
ବସନ ଆକର୍ଷଣ,
ଉପନୀବି କାମିକରଙ୍କୁ
ନାରୀ କରେ ରୋଧନ । ୬୦ ।

କାଞ୍ଚୀସୂତ୍ର ଶ୍ଲିଷ୍ଟେ ମୁକ୍ତ ନ—
ହେଲା ଅଧୋବସନ,
ରତୋତ୍ସବ କାଳକ୍ଷେପରେ
ଯୁବା ଆକୁଳମନ । ୬୧ ।

ବସ୍ତ୍ରଦୂରକାରୀ ସ୍ୱାମିର
କର ଯୋଷିତ କରେ,
ନିବାରଣ କଲେହେ କାଞ୍ଚୀ—
ବଳୟ ଶିଞ୍ଜେ ଖରେ । ୬୨ ।

ପ୍ରିୟବସନ ଗ୍ରନ୍ଥି ମୁକ୍ତ—
କାଳେ ସେ ମାନଧନା,
ଭ୍ରୂଭଙ୍ଗେ ପୁଲକେ ସାତ୍ତ୍ୱିକ—
ଭାବେ ହରଷମନା । ୬୩ ।

ପତି କଣ୍ଠେ ନୀବ ସ୍ଖଳିତ
ଦେଖି ମୁଗ୍ଧନୟନେ,
ବୈଣିକ୧ ନାରୀ ଶବ୍ଦକଲା
ଉଦ୍ଭୂତ କଣ୍ଠସ୍ୱନେ । ୬୪ ।

କୃଶମଧ୍ୟଭାଗ ପ୍ରଣୟୀ
କର ଲଗ୍ନେ ଅଧିକ,
ଦଶଲ୍ୟ, ଅନ୍ତର୍ଭାଗ ଶ୍ରୋଣି—
ସ୍ପର୍ଶେ ରାଗ ଅଧିକ । ୬୫ ।

ସ୍ପର୍ଶ ଲୋଭବଶେ ପ୍ରଣୟୀ
କାମିନୀ ଊରୁସ୍ଥଳେ,
ନଖାଘାତ କରେ ଚଞ୍ଚଳେ
ରମ୍ଭାସ୍ତମ୍ଭ କୋମଳେ । ୬୬ ।

ଉରୁମୂଳ-ଚପଳେକ୍ଷଣ
ପତିଙ୍କି କର୍ଣ୍ଣପୁରେ,
ପ୍ରହାର ପୁଷ୍ପାୟୁଧ ନାମ
ସାର୍ଥ ରମଣୀକୁଳେ । ୬୭ ।

ଉଲ୍ବଣ୨ ମନୋଭବ ଭାବେ
ବପୁ କର ଅର୍ପଣ,
ସ୍ୱାମିସଙ୍ଗେ ଗୂଢ଼ ସୁରତେ
ମାତିଲେ ନାରୀଗଣ । ୬୮ ।

ସ୍ମିତହାସ୍ୟେ ଗତେ ବ୍ୟର୍ଥରେ
ରୋଧେ ସ୍ୱାମିର କର,
ଅଧର ଦଂଶନେ, ରମଣୀ
ଶୀତ୍କାର ସୂକ୍ଷ୍ମତର । ୬୯ ।

---

୧ । ବୈଣିକ—ବୀଣାବାଦ୍ୟକୁଶଳ ।  ୨ । ଉଲ୍ବଣ—ଉତ୍କଟ ।

ଅତିପୀଡ଼ାଭୟରେ ରମଣୀ
ଛଳେ କରେ ବାରଣ,
ସେ ବାରଣ ହୁଏ ଯୁବାକୁ
ଅନୁକୂଳ କାରଣ । ୭୦ ।

ରତିଭିନ୍ନକାଳେ ସର୍ବଦା
ସୁତ୍ୟକ୍ତ ଦୁରକ୍ତଥା,
ରତୋତ୍ସବେ ନାସ୍ତି ଧୃଷ୍ଟତା
ସ୍ୱାମି କର୍ଦ୍ଦନ୍ତ ବ୍ୟଥା । ୭୧ ।

ତରୁଣୀ ତନୁରେ ସୁଗୁପ୍ତ
କାମ ବାନ୍ଧୁ ପୀଡ଼ନେ,
ନଖ ଦନ୍ତ କ୍ଷତେ ଉଦ୍ବୁଦ୍ଧ
ହୁଏ କେଶଗ୍ରହଣେ । ୭୨ ।

କେ ଯୁବା କ୍ଲାନ୍ତକ୍ଲିଷ୍ଟ ହୋଇ
ସ୍ତନୁ ବସନ ଦୂର,
କରିବା ପୂର୍ବରୁ ଅଂଶୁକ
ହୋଇଅଛୁ ବଦୂର । ୭୩ ।

କୁଚତଟ ଅହତ ଯୋଗୁଁ
ଛିନ୍ନ ମୁକୁତାହାର,
ପ୍ରିୟତମ ବକ୍ଷେ ପତିତ
ପୁଷ୍ପବୃଷ୍ଟି ପ୍ରକାର । ୭୪ ।

ରମଣୀ ସୀତ୍କୃତ ମଣିତ୧
କରୁଣୋକ୍ତିବାରଣ,
ହାସ ଭୂଷଣ ରବ ରତେ
କାମସୂତ୍ର ଗଠନ । ୭୫ ।

ହରିଣନୟନାଙ୍କ କଳ—
କାଞ୍ଚୀ ନୂପୁର ସ୍ୱନେ,
ଉଦ୍ଧତେ କନ୍ଦର୍ପ କ୍ରୀଡ଼େ କି
ମୋଦେ ଘଣ୍ଟି ବାଦନେ । ୭୬ ।

---

୧ । ମଣିତ—ରତିକାଳରେ ସ୍ତ୍ରୀମାନଙ୍କ କଣ୍ଠଧ୍ୱନିବିଶେଷ ।

ରତେ କାଞ୍ଚିଦାମଭୂମିରେ
ପଡି ହୋଇ ଲମ୍ବିତ,
ଜଘନ ନିତମ୍ବ ମହତ୍ତ୍ୱ
ବୃଦ୍ଧି କରେ ଦ୍ବିଗୁଣିତ । ୭୭ ।
ସୁରତ ବିମର୍ଦ୍ଦ ପ୍ରମୃଷ୍ଟ—
ତିଳକ, କୁସୁମ ଛିନ୍ନ,
ଅଳକଅଗ୍ରେ ସ୍ୱେଦବିନ୍ଦୁ
ମୁକ୍ତା ପରି ବିଭିନ୍ନ । ୭୮ ।
ରୁଚିମତେ ନାରୀ ପୁରୁଷେ
କଲେ ଗୁପ୍ତବିହାର,
ନାରୀ ଅନୁକୂଳ ବେଣୀଙ୍କ
ହୁଏ ସୁଖ ଅପାର । ୭୯ ।
ମନ୍ମଥ ରସର ସୀମାରେ
ପ୍ରବେଶି ନାରୀଗଣ,
ଶ୍ରମଜଳେ ସିକ୍ତ ଲଲାଟ
କେଶ, ଶ୍ରମେ ବିବର୍ଣ୍ଣ । ୮୦ ।
ପତି ପତ୍ନୀଙ୍କର ସଙ୍ଗମେ
ଲଜ୍ଜା ଥିଲା ପଳାଇ,
ରତାନ୍ତେ ବିରହିଣୀ ଲଜ୍ଜା
ପୁଣି ଆସିଲା ଧାଇଁ । ୮୧ ।
ସୁରତଶେଷେ ନାରୀଗଣ
ଲଜ୍ଜାଭରେ ସତର,
ଦୁକୂଳ ଆଚ୍ଛାଦନ କଲେ
ଅଙ୍ଗେ ଶ୍ରମକାତର । ୮୨ ।
ସ୍ୱାମୀ ଅଞ୍ଚଳ ଗ୍ରହଣରେ
ଏକ ଉରୁ ଦଶାଇ,
ଲଜ୍ଜାରେ ବ୍ୟଗ୍ର କରେ ନାରୀ
ଅଂଶୁକେ ଆଚ୍ଛାଦଇ । ୮୩ ।
ପ୍ରମୃଷ୍ଟ ଚନ୍ଦନ ବିଚ୍ୟୁତ—
ଭୂଷଣମାଲ୍ୟ ଛିନ୍ନ,
ମଣ୍ଡନବିହୀନ ଅଙ୍ଗନା
କ୍ଳାନ୍ତେ ଦିଶନ୍ତି ଖିନ୍ନ । ୮୪ ।

ସୁରତ ସମ୍ଭ୍ରମେ କାଞ୍ଚନ—
କାଞ୍ଚୀ ହୋଇ୍ ପଡ଼ିତ,
ନଖକ୍ଷତ ଚିହ୍ନ ନିତମ୍ବେ
କାଞ୍ଚୀ ପରି ଶୋଭିତ । ୮୫ ।

ରମଣୀ ଧବଳ ଗଣ୍ଡରେ
ଅରୁଣ ଦନ୍ତଚିହ୍ନ,
ଶୋଭେ, ବିମ୍ବ ପରି ଅଧରେ
କ୍ଷତ ନ ଦଶେ ଭିନ୍ନ । ୮୬ ।

ସ୍ୱାମି ପୀଡ଼ିତ ସ୍ତନତଟୁ
ଛିଣ୍ଡି ମୁକ୍ତାହାର,
ସୂତ୍ରମାତ୍ର ଶେଷ ତଥାପି
ଗୁଣ୍ଠୁଲିବ ତାହାର । ୮୭ ।

ପ୍ରଥମ ସୁରତାବସାନେ
ନାରୀ ସ୍ୱାମିଅଙ୍ଗରେ,
ବଶମୁଁ ମନ୍ମଥ ଉଦିତ
ପୁଣି ମାତେ ରଙ୍ଗରେ । ୮୮ ।

କୁସୁମ ସଜ୍ଜିତ ଶଯ୍ୟାରେ
କରିବାକୁ ଶୟନ,
ଅନାରତରତେ, କ୍ଷଣଦା
ତାଙ୍କୁ ନ ଦେଲା କ୍ଷଣ । ୮୯ ।

ନଖକ୍ଷତ-ଉଜ୍ଜ୍ୱଳତମ
ନାରୀମାନଙ୍କ ଗାତ୍ର,
ପୁଣି ଯାଦବଙ୍କ ହୃଦୟ
ଶୋଭିଲା ଅତିମାତ୍ର । ୯୦ ।

ମଦନମଦରେ କାମିକାମିନୀଙ୍କି
ରତଶ୍ରୀ ବିଲୋକି ଚନ୍ଦ୍ର ରଜନୀ,
ନକ୍ଷତ୍ରବେଷ୍ଟିତ ଅବନତ ଇନ୍ଦୁ
ନିଜେ ଧୀରେ ତ୍ୟାଗକଲା ଅବନୀ ।

ପୂର୍ବାର୍ଦ୍ଧ ସମାପ୍ତ ।



# ଏକାଦଶ ସର୍ଗ

ଷଡ଼୍‌ଜ୧ ସ୍ୱର ପର ତେଜି        ଋଷଭ୨ ସ୍ୱରବିହୀନ
ଶ୍ରୁତି୩ କ୍ରମେ ପଞ୍ଚମ୪ସ୍ଥାନରେ,
ବୈତାଳିକେ ସ୍ନିଗ୍ଧକଣ୍ଠେ        ରଜନୀର ପରିଣତି
ମାଧବଙ୍କୁ କହିଲେ ଗାନରେ । ୧ ।

ସୁରତ ବିଳାସକ୍ଳାନ୍ତ        କାମିନୀଙ୍କ ନୟନଯୁଗ
ନ ହେବା ପୂର୍ବରୁ ମୁକୁଳିତ,
ନିଶାବସାନସୂଚକ        ନାରୀ ବିରହଦାୟକ
ନିଦ୍ରାଭଙ୍ଗ ମୃଦଙ୍ଗ ବାଦିତ । ୨ ।

ଦୂରହେତୁ ସୂକ୍ଷ୍ମମୂର୍ତ୍ତି—        ଧ୍ରୁବଙ୍କ ଉପରଭାଗେ
ବିରାଜନ୍ତି ସପ୍ତର୍ଷିମଣ୍ଡଳ,
ଶୈଶବେ ଶାର୍ଙ୍ଗପାଣିଙ୍କ        ଚପଳ ଚରଣୋନ୍ନୀତ
ଶକଟ ପ୍ରାୟ ଦିଶେ ଉଜ୍ଜ୍ୱଳ । ୩ ।

ନିଜ ଯାମର ପ୍ରହରୀ        ଶେଷେ, ସୁଷୁପ୍ତଙ୍କୁ କେଉଁ
ପ୍ରହରୀ ଡାକଇ ଉଚ୍ଚସ୍ୱରେ,
ଅବ୍ୟକ୍ତ ଅନର୍ଥ ବାଣୀ—        କହି, ନ ଉଠି ମନୁଷ୍ୟ
ପୁଣି ନେତ୍ର ବୁଜେ ନିଦ୍ରାଭରେ । ୪ ।

ବିପୁଳ ନିତମ୍ବ ହେତୁ        ଶଯ୍ୟାରେ ଶୋଇ ନ ପାରି
ଜୀବିତେଶ ସଙ୍ଗେ ରତେ ମା'ତ,
ସୁରତ ଉନ୍ନିଦ୍ରାଳସା        ଶୟନ ଅଭିଳାଷିଣୀ
କି କରିବ ଯାମିନୀ ଗଲା ବିତି । ୫ ।

---

୧ । ଷଡ଼୍‌ଜ — ମୟୂର ସ୍ୱର ।   ୨ । ଋଷଭ — ବୃଷଭଗର୍ଜିତ ଅନୁକାର ।
୩ । ଶ୍ରୁତି — ସ୍ୱରଗ୍ରାମର ଅବୟବ ।   ୪ । ପଞ୍ଚମ — କୋକିଳସ୍ୱର ।

ମହାନ୍ଦ, କବୀନ୍ଦ୍ର ଦୁଇ ଉଦଧି-ସମ ଗମ୍ଭୀର
ଦୁର୍ବିଗାହ ରାଜ୍ୟରେ କାବ୍ୟରେ,
ଦେଇ ମନ ଅର୍ଥଜାତ[୧] ପ୍ରୟୋଗ[୨] ଭାବି ନିଶିର
କଲନ୍ତି ସେ ପଶ୍ଚିମ ଯାମରେ । ୬ ।

ନିତିଶୟନୁ ଉଠି ତ— ଦାନପଙ୍କ ପ୍ଳୁତଦେହ-
ଗଜେ କରିବାକୁ ଆରୋହଣ,
ଶୟନ କରଇ ପୁଣି, ଶୃଙ୍ଖଳା ଶବଦ କରେ
ସଙ୍କୋଚରେ ପଶ୍ଚିମଚରଣ । ୭ ।

ଅବ୍ଧି ପ୍ରାୟ ଦଧିପାତ୍ରେ ଶୈଳ ପରି ବୈଶାଖଙ୍କୁ[୩]
ବଲ୍ଲବମାନେ[୪] ନିକ୍ଷେପ କରି,
ଚନ୍ଦ୍ର ପରି ନବନୀତ ଉଦ୍ଧାର କରିବାପାଇଁ
ମନ୍ଥନ କରନ୍ତି ରଜ୍ଜୁ ଧରି । ୮ ।

ନ ଦେଲା ପ୍ରିୟ-ପ୍ରାର୍ଥନା ପରାଙ୍ମୁଖୀ କେଉଁ ନାରୀ
ଶୋଇ ଥିଲେ ବ୍ୟାଜଶୟନରେ,
ଶୁଣି କୃକବାକସ୍ୱନ ସମ୍ମୁଖୀନା, ବଲ୍ଲଭଙ୍କୁ
ଆଶ୍ଳେଷେ ମୁଦ୍ରିତ ନୟନରେ । ୯ ।

ବୀଣା ଅନୁସୃତ ବେଣୁ— ନାଦ ଅବ୍ୟକ୍ତ ମଧୁରେ
ସ୍ୱର ଦେଇ ବୈତାଳିକଗଣ,
ଉଦ୍‌ବୋଧନ ପାଇଁ ଗୀତ— ଗାଆନ୍ତି ତା ଶୁଣି ନୃପେ
ସୁଖାଧିକ୍ୟେ କରନ୍ତି ଶୟନ । ୧୦ ।

ଶିଥିଳିତ କଣ୍ଠଗ୍ରୀବା ନିମୀଳିତ ଅକ୍ଷିଯୁଗ
ଊର୍ଦ୍ଧ୍ୱଜାନୁ ହୋଇ ଅଶ୍ୱଗଣ,
କ୍ଷଣେ ଶୟନରେ ରହି ଚଞ୍ଚଳ ଓଷ୍ଠଦ୍ୱୟରେ
ତୃଣରାଜି କରନ୍ତି ଭକ୍ଷଣ । ୧୧ ।

---

୧ । ଅର୍ଥଜାତ—ନିବର୍ଗ, ବାଚ୍ୟ; ଲକ୍ଷ୍ୟ, ବ୍ୟଙ୍ଗ୍ୟ, ଭାବ-ରେ ।
୨ । ପ୍ରୟୋଗ—ଯାଜାଦିଉପାୟ ଅନୁଷ୍ଠାନ, ସାଧୁଶବ୍ଦଯୋଜନା ।
୩ । ବୈଶାଖ—ମନ୍ଥନଦଣ୍ଡ । ୪ । ବଲ୍ଲବ—ଗୋପାଳ ।

ପୂର୍ବଦିଗଙ୍ଗନା ପାଶେ ଯେଉଁ ଇନ୍ଦୁ ଥାଇ, ଧରେ
ପଶ୍ଚିମଦିଗଅଙ୍ଗନା ପାଶେ—
ଯିବାରୁ, ପାତିତ୍ୟ ଦୋଷେ ପ୍ରାଚୀନାରୀ ହସେ ତୋଷେ
ପଳାଇଲେ ଚନ୍ଦ୍ର ଲଜ୍ଜା ନାଶେ । ୧୨ ।

ସର୍ବ ପଶ୍ଚାତ ଶୟନ ସର୍ବ ଆଦ୍ୟ ଜାଗରଣ
ପତିବ୍ରତା ନାରୀଙ୍କ ନିୟମ,
ରତିଖେଦ ସୁନିଦ୍ରିତ ସ୍ୱାମି ହସ୍ତ ସ୍ୱଦେହରୁ
ନିଦ୍ରାଭଙ୍ଗେ ନ ନିଏ ଏ କ୍ରମ । ୧୩ ।

ରସଚ୍ଛେଦ ଗୌରଚନ୍ଦ୍ର ପଶ୍ଚିମାଶା ବଧୂ ପାଶେ
କୁଙ୍କୁମରେ ଲୋହିତବରଣ,
ଧବଳ ଲୋହିତ ମିଶା ବର୍ଣ୍ଣେ ହୋଇ ବିଭୂଷିତ
ବିରାଜଇ ପଶ୍ଚିମ ଗଗନ । ୧୪ ।

କୁମୁଦ କଦମ୍ବ ନତ ପଦ୍ମ କ୍ରମେ ବିକସିତ
ଚଞ୍ଚରୀକ କଳଗୀତ ସ୍ୱନେ,
ଉଭୟଙ୍କ କ୍ଷୟବୃଦ୍ଧି ସହଜେ ନୋହେ କଳିତ
ତୁଲ୍ୟ ରୂପ ବୋଲି ହୁଏ ମନେ । ୧୫ ।

ଶଶଧର କରଜାଳ କୁଙ୍କୁମ ବରଣ ଦେଖି
ତରଲଜ୍ଜା କରି ପରିତ୍ୟାଗ,
ବାସବାଶା ବଧୂ ମୁଖ— ବସନ ହୋଇ ସ୍ରଂସିତ
ପ୍ରକାଶିଲା ଦିବ୍ୟଶୋଭା ଅଗ । ୧୬ ।

ଅବିରତ ରତ ଲୀଳା— ପ୍ରୟାସଜନିତ ଖେଦ
ଅଙ୍ଗନାଙ୍କ ହେଉଁ ଉପଶମ,
ପ୍ରଭାତ ମାଳତୀ ରେଣୁ ଅନିଳେ ହୋଇ ଆନୀତ
ପୁଣି କାମାଗ୍ନି ଜାଳନେ କ୍ଷମ । ୧୭ ।

କାମୀ କାମିନୀଗଣଙ୍କ ଅବିରାମ ନିଧୁବନ-
କ୍ରୀଡ଼ା ଅବସିତେ ବିଲୋକନ—
କରି, କ୍ଷୀଣଦୀପ ଅର୍ଚ୍ଚି ସାତ୍ତ୍ୱିକ ପରାୟୁ ହୋଇ
ଘୂରେ ଯଥା ଭବନନୟନ । ୧୮ ।

ପ୍ରମଦ ମଦନମତ୍ତ— ଯୌବନୋଦ୍ଦାମ ରମଣୀ-
ରତ ଖେଦ-ସ୍ୱେଦ-ଦୂରକାରୀ,
ବକଚ କମଳ ଗନ୍ଧେ ଅନ୍ଧ କରି ଭୃଙ୍ଗମାଳା
ବହେ ପ୍ରାତଃବାତ ତାପହାରୀ । ୧୯ ।

ଲୁଲିତ ନୟନ ତାରା କ୍ଷାମବକ୍ଷ ଇନ୍ଦୁବନ୍ଧ
ନିଦ୍ରାକ୍ଲାନ୍ତ ଉତ୍ପଳନୟନ,
ନିଶା ପରି, ବେଶ୍ୟାଗଣ ଅସଂଯତ କେଶେ, ରାଜ-
ଭବନୁ କରନ୍ତି ନିର୍ଗମନ । ୨୦ ।

ରଜନୀ, ବାସର ଅନ୍ତେ ଶୀତକିରଣ କାନ୍ତଙ୍କ
ସନ୍ତତ କରି ଅନୁସରଣ,
ଶ୍ୱସନ ସୁରଭି ଗନ୍ଧେ ମୟୂଖ ଅଙ୍ଗରାଗରେ
ରଞ୍ଜିତେ କରେ ଦ୍ରୁତଗମନ । ୨୧ ।

ନବକୁମୁଦ ବନର ହାସକେଳି ପ୍ରସଙ୍ଗରେ
ସବରାଏ କରି ଜାଗରଣ,
ସ୍ରସ୍ତ ହସ୍ତ ଚନ୍ଦ୍ର, କଲେ ଶିଶୟିଷୁ ପରି ମ୍ଲାନେ
ଅନ୍ୟ ଦିଗ ଅଙ୍କରେ ଶୟନ । ୨୨ ।

ସୁରତକ୍ରୀଡ଼ାରେ ମାତି ନିଶାରେ ନାରୀବସନ
ମୋଦେ ବଲ୍ଲଭ କରି ହରଣ,
ନିତମ୍ବ ଦର୍ଶନ ଲୋଭେ ଲୋଲନେତ୍ର ନ ଫେରାଇ
ନିଶାନ୍ତେ ନ କରେ ସମର୍ପଣ । ୨୩ ।

ହା ! ରଜନୀ ହେଲା ଶେଷ, କୁମୁଦିନୀ ବିମୁଦ୍ରିତ
ତାରକାଶୂନ୍ୟ ଦିଶେ ଗଗନ,
ଦୟିତ କଳଙ୍କ ଭାବ ଚିନ୍ତି, କୃଶଅଙ୍ଗ ଇନ୍ଦୁ-
ପତ୍ନୀ ନାଶେ ସର୍ବେ କ୍ଷୀଣମନ । ୨୪ ।

ଭାସ୍କର ଦର୍ଶନ ପୂର୍ବେ ତରୁଣ ଅରୁଣ ଆସି
ସର୍ବ ତିମିର କଲା ଅନ୍ତର,
ପରତିରସ୍କାରୀ ତେଜ ସୁବସ୍ତ୍ରାରେ ଅଗ୍ରସର
ହୁଏ ଶତ୍ରୁ ଛେଦନେ ତତ୍ପର । ୨୫ ।

ବିଗତ ତିମିରପଙ୍କ    ବ୍ୟୋମ ଦେଖି ଚକ୍ରବାକ
ଆନନ୍ଦିତ ମନ ତେଜି ଖିନ୍ନ,
ଉତ୍ପତନ ପୂର୍ବ ଚକ୍ରୀ    ସହିତ ଅନ୍ୟ ଚକ୍ରକୁ
ଆସି ମିଳେ, ରବେ ଥିଲା ଭିନ୍ନ । ୨୬ ।

ଯୁବକମନତୋଷିଣୀ    ପ୍ରଦୋଷେ ଭୂଷିତଅଙ୍ଗୀ
କାନ୍ତରେ ମର୍ଦ୍ଦିତ ନାରୀଗଣ,
ପ୍ରଭାତେ କାନ୍ତରେ ତ୍ୟକ୍ତ,    ଯୁବତିରେ ମାଳା ତ୍ୟକ୍ତ
ଅପ୍ରଭାତ ନ ଶୋଭେ ରମଣ । ୨୭ ।

ବିକଶିତ ପଦ୍ମଗନ୍ଧ    ନାନା କୁସୁମ ସୁରଭି-
ଯୋଗେ ଧୀରେ ବହେ ସମୀରଣ,
ସକଳ ସଦ୍ମ ମଧ୍ୟରେ    ସ୍ଥାୟୀ ସୁରଭି ସକାଶେ
ସଞ୍ଚରେ ତୋଷି ଦମ୍ପତିଗଣ । ୨୮ ।

ଶିଥିଳ ନୀବି ସନ୍ଧିରେ    ଅଧର କପୋଳ ଦେଶେ
ନଖ ଦଶନର ଚିହ୍ନଗଣ,
ବାଣୀହୀନ ହେଲେ ମଧ୍ୟ    ସୁଗୁପ୍ତ ସୁରତକ୍ରୀଡ଼ା
ପ୍ରକାଶ କରନ୍ତି ଅନୁକ୍ଷଣ । ୨୯ ।

ପ୍ରତ୍ୟୁଷରେ ଗତଶୋଭା    ପ୍ରକାଶ ମଳିନ ଚିହ୍ନ
ଚନ୍ଦ୍ର ଗଗନୁ ହେଉଁ ପତିତ,
ପରିଣତଶର କାଣ୍ଡ—    ପାଣ୍ଡୁ ନାରୀଗଣ୍ଡସ୍ଥଳ
ବିବର୍ଣ୍ଣେ ହୁଏ ଉପହସିତ । ୩୦ ।

କେଉଁ ନାରୀ ନିଜ ସ୍ୱାମି—    ଆଗେ ଉଭା ହୋଇ କହେ
ସପତ୍ନୀ ସଙ୍ଗେ କରି ବିଳାସ,
ଭିନ୍ନ ହେଲା ଅଙ୍ଗରାଗ    ମୁଖ ତ ଅଟଇ ଅଙ୍ଗ
ତା ରାଗ କିପାଁ ନ ହେଲା ହ୍ରାସ । ୩୧ ।

ପ୍ରକାଶିତ ନଖଚିହ୍ନ    ସପତ୍ନୀ ନ ଦେଖୁ ବୋଲି
କେଉଁ ନାରୀ ସଶଙ୍କମନରେ,
ଚରଣତଳ-ରଞ୍ଜିତ    ଲାକ୍ଷାରସ ଅଣି ବେଗେ
ସ୍ତନସ୍ଥାନେ ବିଲେପନ କରେ । ୩୨ ।

ତୁମ୍ଭେ ମମ ପ୍ରାଣପ୍ରିୟା— ବୋଲି ଯାହା କହ ପ୍ରଭୁ
ତାହା ତ ସତ୍ୟ ଅଟେ ନିଶ୍ଚୟ,
ଯେଣୁ ସପତ୍ନୀର ଭୋଗ— ବସନ ପିନ୍ଧି ମୋ ଗୃହେ
ପ୍ରବେଶ ସାଧୁ ତବ ହୃଦୟ । ୩୩ ।

ଅଙ୍ଗରେ ନଖର ଚିହ୍ନ ଅଂଶୁକେ କର ଗୋପନ
ଦନ୍ତଦଷ୍ଟ ଓଷ୍ଠ ପାଣିତଳେ,
ଅନ୍ୟନାରୀ ସଙ୍ଗଶଂସୀ ପରିମଳ ଗନ୍ଧ କାହିଁ
ଗୋପନ ନ କର କଉଶଳେ । ୩୪ ।

ଏହାପର ତିରସ୍କାର କରି ନାରୀ ବାରବାର
କରୁଣେ କଲା ଯହୁଁ କ୍ରନ୍ଦନ,
ଅଧୈର୍ଯ୍ୟେ ଯୁବକ ତହୁଁ ପାଦରେ ପଡ଼ିଲା ଆସି
ଅମୋଘାସ୍ତ୍ର ରମଣୀ ରୋଦନ । ୩୫ ।

ମଦନବିକାରେ ନାରୀ ପ୍ରଗଲ୍ଭତା ଅନୁସରି
ପ୍ରଣୟ କଲହେ ସ୍ୱାମିସଙ୍ଗେ,
ଭୂଷଣ ବିକୀର୍ଣ୍ଣ ଗୃହେ ବୟସ୍ୟା ବିନୟ ଯତ୍ନ
ନ ମାନିଲା କଲହ ପ୍ରସଙ୍ଗେ । ୩୬ ।

ଅନ୍ୟ ରମଣୀର କୃତ କରଜ ଦଶନ ଚିହ୍ନ
ଦେଖି ଯୁବା ସଶଙ୍କ ମନରେ,
ମତ୍ତରେ ଏ ତୁମ୍ଭ କୃତ ଦେଖ, ପ୍ରିୟେ ! ନ ସ୍ମର କି
ବୋଲି ପ୍ରବଞ୍ଚିଲ ଯତନରେ । ୩୭ ।

ପ୍ରଣୟୀର ଆଲିଙ୍ଗନେ ସ୍ତନତଟ ମୁକ୍ତାହାର
ଛିନ୍ନହୋଇ ସ୍ତନେ ବିଲମ୍ବିତ,
ଜଗମିଷୁ ସ୍ୱାମି ପାଇଁ ବାଷ୍ପ ବିନ୍ଦୁ ତେଜେ କିବା
ସ୍ତନଯୁଗ ହୋଇ ବିରହିତ । ୩୮ ।

ମୁଗ୍ଧବଧୂ ବୟସ୍ୟାଙ୍କ ଆଗରେ କହେ ଏ ବାଣୀ
ପ୍ରିୟଙ୍କୁ କହିଲି ବହୁକଥା,
ଜାଣି ଅଛି ସଖୀଠାରୁ ତବ ସଖିର ବୃତ୍ତାନ୍ତ-
ବୋଲି ତାଙ୍କ ମନେ ଦେଲି ବ୍ୟଥା । ୩୯

ଅରୁଣ ଜଳଜରାଜି          ଯାର ହସ୍ତ ପାଦ ପତ୍ର
ପଦ୍ମନେତ୍ରେ ଅଳି ସୁଅଞ୍ଜନ,
ବିହଙ୍ଗ ବିରାବେ କଥା—          କହି ଧାଏଁ ସୁତା ପଛ
ଉଷା, ରଜନୀ ମାତାରେ ମନ । ୪୦ ।

ଘୃତଗୃହରେ ଅକ୍ଷତ—          ଅର୍ଗ୍ଘି କରି ସମ୍ପାଦନ
ବିଧି ବିଧାନେ ଉଚ୍ଚାରି ସ୍ୱର,
ଋତ୍ୱିକେ ସାମାଦଗାନ          କରି ପାପବିନାଶନ
ପ୍ରାତଃହବନ କଲେ ତତ୍ପର । ୪୧ ।

ନୀଡ଼ସ୍ଥମୀ ତପସ୍ୱିଗଣ          ଔଷ୍ଣ୍ୟ ବର୍ଣ୍ଣେ ଉଚ୍ଚାରଣି-
କରି ଜପ ହୋମ ସମ୍ପାଦନ,
ଉଚ୍ଚାରଣକାଳେ ମୁଖ          ଦଶନ ସୁରୁଚି ଘଛ
କରୁଥିଲା ଅଧଃ ଉଦ୍ଗମନ । ୪୨ ।

ନବ କନକ ପିଶଙ୍ଗ—          ବର୍ଣ୍ଣେ ବାସର ବିଧାତା,
ବାସବ କକୁଭେ କରି ବିଜେ,
ସାଗର ଦହନ କରି          ଭୁବନ ଦାହ ଇଚ୍ଛାରେ
ଅର୍ବ୍ବି ଉର୍ଦ୍ଧ୍ୱେ ଉଠନ୍ତି କି ନିଜେ । ୪୩ ।

କଳଶ ପରି ରବିଙ୍କ          ସମୁଦ୍ର ଜଳ ମଧ୍ୟରୁ
ଦୀର୍ଘ କିରଣ ରଜ୍ଜୁ ବଳରେ,
ବିହଙ୍ଗ କୂଜନେ ଦଗ—          କୂଳ କରି କୋଳାହଳ
ଆକର୍ଷନ୍ତି କର କୌଶଳରେ । ୪୪ ।

ରାତ୍ରିରେ ପୟୋଧି ଜଳେ—          ମଗ୍ନହୋଇ ବିବସ୍ୱାନ
ବାଡ଼ବାଗ୍ନି ଜ୍ୱାଳାରେ ତାପିତ,
ଜ୍ୱଳିତ ଖଦିରକାଷ୍ଠ—          ଅଙ୍ଗାର ବରଣ ଧରି
ଯେଣୁ ହୋଇଅଛନ୍ତି ଉଦିତ । ୪୫ ।

କେବଳ ଉଦୟ ଅଦ୍ରି          ଶୃଙ୍ଗଦେଶକୁ ଭାସ୍କର
ପକାଇ ନାହାନ୍ତି ନିଜ କର,
ସକଳ ପର୍ବତଶିରେ          ସ୍ୱକର ସ୍ଥାପନ ହେତୁ
ବିକଶିତ ବନ୍ଧୂକନିକର । ୪୬ ।

ଉଦୟସ୍ଥ ଗିରି ଶୃଙ୍ଗର— ପ୍ରାଙ୍ଗଣରେ ସଞ୍ଚରଣ-
କରି ବାଳସୂର୍ଯ୍ୟ କ୍ରୀଡ଼ାଭରେ,
ବହୁଙ୍ଗ ଲୁତେ ତାକର ଧବମାତା ଅସ ବୋଲି
କର ଦେଇ ଅଙ୍କେ ପଡ଼େ ଖରେ । ୪୭ ।

କ୍ଷିତିଧର ତଟ ପୀଠେ ଲେଙ୍କର ପ୍ରଣତ ଯେହ୍ନ
କ୍ଷିତିତଳେ ପାଦ କରି ନ୍ୟସ୍ତ,
ଅଶେଷ ଭୁବନ ତଳ ଦର୍ଶନ କୌତୁକେ ଅର୍କ
ଉଠିଲେ କ୍ରମେ ହୋଇ ଅବ୍ୟସ୍ତ । ୪୮ ।

ଉଭସ୍ଥ ରୋଧ ବାରିତ ବାଳାତପେ ଅରୁଣିତ
ନଦୀ ସୁପ୍ରସନ୍ନେ ଉଚ୍ଛ୍ୱସିତ,
ଭାସ୍କର ଅଂଶୁବାଣେ କ ତମିର-କରି ସମୂହ-
କ୍ଷତରକ୍ତ ଯେହ୍ନ ପ୍ରବାହିତ । ୪୯ ।

ବାତାୟନେ ଭବନର ମଧ୍ୟରେ ବାଳାର୍କ ଅଂଶୁ
ପତନ ଦେଖି ବନିତାଗଣ,
ଧ୍ରୁବେତେ ପ୍ରଣୟିଠାରେ ଗମନ ଇଚ୍ଛାରୁ କୋପେ
ତପ୍ତଶର ବନ୍ଧେ କି ମଦନ । ୫୦ ।

ରଜନୀରେ ବଧୂଗଣ ମଦ୍ୟ ପିଇ ତେଜିଥିବା
କନକଚଷକ ହୋଇ ସ୍ଥିତ,
ବାଳାତପ ପଡି ତହିଁ ମଦ୍ୟପୂର୍ଣ୍ଣ ପାତ୍ର ପରି
ଦୂରରୁ ଦିଶଇ ବିଶୋଭିତ । ୫୧ ।

ରଜନୀରେ ଶୁକ୍ଳବର୍ଣ୍ଣ— ତଳ୍ପରେ ତ୍ୟକ୍ତ ଅଂଶୁକ,
ବାଳାତପେ କୌସୁମ୍ଭବରଣ—
ସ୍ୱାମିବସ୍ତ୍ର ନିଜ ବୋଲି ଗ୍ରହଣ କରିବା ଦେଖି
ନାୟିକ ହସନ୍ତି ଆଳୀଗଣ । ୫୨ ।

ରଜତାଦ୍ରି ସମ ଶୁଭ୍ର ଚନ୍ଦ୍ରଜ୍ୟୋତ୍ସ୍ନା ପଡି ତହିଁ,
ଯେଉଁ ସୌଧ ସ୍ଫଟିକବରଣ—
ଦିଶୁଥିଲା, ଏବେ ନବ— ଉଦିତ ଅର୍କକିରଣେ
ଦିଶେ କୁଙ୍କୁମ ଧୌତବରଣ । ୫୩ ।

ତରୁଣୀଙ୍କ ଅଙ୍ଗଦେଶେ— ନଖ ଦଶନ ଚିହ୍ନକୁ
ଲଗ୍ନକେଶ କରୁଁ ଉନ୍ମୋଚନ,
କ୍ଳେଶ ସୀତ୍କୃତ ବଦନ— ଦଶନେ ବାଳାର୍କ ଅଂଶୁ
ପଡ଼ି ଦିଶେ ପଦ୍ମରାଗବର୍ଣ୍ଣ । ୫୪ ।

ଅବରତ ବାଞ୍ଛିତଙ୍କ ଅଙ୍ଗ ସମ୍ମର୍ଦ୍ଦକାଙ୍କ୍ଷିଣୀ
କନକବରଣୀ ନାସ୍ୱିଗଣ,
ଏବେ ତ କନକକାନ୍ତ ଭୁଜେ କୁଙ୍କୁମେ ରଞ୍ଜିତ
ବାଳାତପେ ଅପୂର୍ବ ଶୋଭନ୍ତି । ୫୫ ।

ସରସିଜ ବନମୋଦ— ବିଧାୟକ ଉଷ୍ଣରଶ୍ମି
ସହସ୍ର ଅଂଶୁନେତ୍ରେ ଭୂତଳ,
ବିଲୋକ ଦିଅନ୍ତ ଶିକ୍ଷା ଲୋକଙ୍କୁ ସାଧୁ ଅସାଧୁ
ଦେଖିକର ନୟନ ଉଜ୍ଜ୍ୱଳ । ୫୬ ।

ତମଧ୍ୱଂସକାରୀ ଇନ ଉନିଭମଧ୍ୟବଶୋଭ
ନକ୍ଷତ୍ରଗଣଙ୍କୁ କଲେ ନାଶ,
ଅରିବଧରେ ଇଚ୍ଛୁକ ଅରି ନାଶି ଅରିପକ୍ଷ-
ଗଣଙ୍କୁ ମଧ୍ୟ କରଇ ନାଶ । ୫୭ ।

ଚନ୍ଦ୍ର ଅଂଶୁ ଗୌରବକ କନ୍ଦର ସମ୍ମୁଖେ ଥାଇ
ରଜତ ଭଣ୍ଡରେ ସ୍ୱକିରଣ—
ଦେଇ, ପ୍ରତିବିମ୍ବ ଛଳେ କନ୍ଦର ସଂହତି ତମଃ
ଦ୍ରୁତ କରନ୍ତ ଦୂରୀକରଣ । ୫୮ ।

ବାହାରେ ସଞ୍ଚର ମଧ୍ୟ ଦିବସକରର ରୁଚି
ଅନ୍ତର୍ଗୃହଧ୍ୱାନ୍ତ ନାଶ କରେ,
ତେଜସ୍ୱିର ତେଜଃ ସଦା ନିକଟରେ ଥିଲେ ମଧ୍ୟ
ଶତ୍ରୁ ବିନାଶ ସ୍ୱଭାବ ଧରେ । ୫୯ ।

ଅତିଶୟ ରସଲୁବ୍ଧ ମଧୁପ ପଦ୍ମକୋଷରେ
ରଜନୀରେ ଥିଲା ବନ୍ଧନରେ,
ବିବସ୍ୱାନ ଉଦୟରେ ବିକାଶ ପଦ୍ମିନୀ ଅନ୍ତୁଁ
ମୁକ୍ତ ଉଡ଼େ ଆନନ୍ଦମନରେ । ୬୦ ।

ସହସ୍ରକରଣେ ଅର୍କ ସହସ୍ରପତ୍ରକୁ ଦ୍ରୁତ
ଯୁଗପତ କର ବିକାଶନ,
ପଙ୍କଜଗୃହଶାୟିନୀ ଲକ୍ଷ୍ମୀଙ୍କି ଅଳି ଗୀତରେ
ସ୍ତୁତି ପଢ଼ି କଲେ କି ଦର୍ଶନ । ୬୧ ।

ପ୍ରଭାତରେ ଉଷ୍ଣରଶ୍ମି କରାଗ୍ରେ ଶଶଧରଙ୍କୁ
ନୀଦ୍ୟରେ କର ନିକ୍ଷେପଣ,
ମେଘଁ ସ୍ରୁତଜଳ ପରି ଚନ୍ଦ୍ରକାନ୍ତସାର ଅଣି
ପୁଣ୍ଡ୍ରାକେ କଲେ ସୁବର୍ଷଣ । ୬୨ ।

ସର୍ବଲୋକପ୍ରକାଶକ ଦଶଶତକର ମୂର୍ତ୍ତ
ଗଗନର ଦ୍ୱିତୀୟ ନୟନ,
ଉଦିତେ ନିଷ୍ପ୍ରଭ ଚନ୍ଦ୍ର ବିକଳାଙ୍ଗ ଏକଚକ୍ଷୁ
ଦବ ଏବେ ବ୍ୟାକୁଳିତମନ । ୬୩ ।

କୁମୁଦବନ ଶ୍ରୀହୀନ ଅମ୍ଭୋଜଖଣ୍ଡ ଶ୍ରୀମାନ
ପ୍ରୀତିମାନ ହୁଏ ଚକ୍ରବାକ,
ଉଲ୍ଲୂକ ତେଜଇ ମୁଦ ଅର୍କୋଦୟ, ଚନ୍ଦ୍ରଅସ୍ତ
ଦୁଷ୍ଟ ଦୈବ ବଶକ ବିପାକ । ୬୪ ।

ଦଗ୍ଧୁଙ୍କ ସଙ୍ଗ ପରି ଅର୍କ ପ୍ରବାସରେ ରହି
ପୁଣି ପୂର୍ବମାର୍ଗେ ଆଗମନ—
କରିବାରୁ, ଜାରପରି ଚ୍ୟୁତଅଂଶୁ ଚନ୍ଦ୍ର ଦ୍ରୁତ
ପଶ୍ଚିମରେ କରେ ପଳାୟନ । ୬୫ ।

ଅଖିଳ ତାରାଲୋକର ପ୍ରଳୟ ସାଧି ଅଚରେ
ଅତ୍ୟନ୍ତ ଶୋଭା କରି ଧାରଣ,
ରବିକଳ୍ପ ଅବସାନେ ମଧୁରିପୁ ପରି ସୂର୍ଯ୍ୟ
ଗଗନଜଳେ କଲେ ଶୟନ । ୬୬ ।

ଜଗତବବୋଧା ତମୋଦୂରକାରୀ
କୁମୁଦ-ତାରାଶ୍ରୀ ବିନାଶ କରି,
ଭାମିଙ୍କ ବିଯୋଗ— ଦାତା ଅର୍କ, ତବ
ସୁପ୍ରାତ କରନ୍ତୁ ନଭୋବିହାରୀ । ୬୭ ।



## ଦ୍ୱାଦଶ ସର୍ଗ

ପ୍ରାତେ ନୃପଗଣ      ରଥ ଗଜ ଅଶ୍ୱ<br>
ଶୀଘ୍ର କର ଅରୋହଣ,<br>
ପ୍ରସ୍ଥାନ କାଳର      ବେଶେ ଅପେକ୍ଷିଲେ<br>
ଅଚ୍ୟୁତଙ୍କୁ ବହୁକ୍ଷଣ । ୧ ।

ତାର୍କ୍ଷ୍ୟଗତ ପର      କନକ ରଚିତ<br>
ଉଜ୍ଜ୍ୱଳ ରଥ ଉପରେ,<br>
ଅରୋହି ଅଚ୍ୟୁତ      ନଭସ୍ଥଳ ପର<br>
ଭୂତଳେ ଗମିଲେ ଖରେ । ୨ ।

କରଚନ୍ଦ୍ରଶୋଭୀ      ରମାଶ୍ରିତ ବକ୍ଷ<br>
ସତ୍ୟା ଅନୁରାଗବାନ,<br>
ହରଙ୍କ ପଶ୍ଚାତ      ସର୍ବ ମନ୍ତ୍ରୀପନ୍ଥ<br>
ସଧୀରେ କଲେ ପ୍ରସ୍ଥାନ । ୩ ।

ଶୁକ୍ଳ ରଙ୍ଗଯୁକ୍ତ      ସୁଦୀର୍ଘ ବିତାନ<br>
କୁମୁଦାକରର ପରି,<br>
ପ୍ରଭାତ ପ୍ରୟାଣ      ବିୟୋଗଦୁଃଖିନୀ<br>
କୁମୁଦିନୀ-ନାରୀ ପରି । ୪ ।

ଉନ୍ନମିତ କାୟ      ନଗେନ୍ଦ୍ରାନୁକାରୀ<br>
ଅଗ୍ରପଦ ଆକୁଞ୍ଚନ—<br>
କରି ମହାଗଜ      ନିଷାଦଙ୍କୁ ଶୁଣ୍ଡେ<br>
କରାଉଛନ୍ତି ଅରୋହଣ । ୫ ।

ଅଶ୍ୱାରୋହୀଗଣ      ଅଶ୍ୱଙ୍କ ପୃଷ୍ଠରେ<br>
କର ଦେଇ ଅଙ୍ଗୁଳିନି,<br>
ବଲ୍ଗା ଧରି ଉଚ୍ଚ—      ଲମ୍ଫ ଦେଇ କଲେ<br>
ଅଶ୍ୱପୃଷ୍ଠେ ଅରୋହଣ । ୬ ।

ଦୂରପଥ ବୋଲି ଝଟିତି ନିଷାଦୀ-
ଆସନ ବନ୍ଧର ଆଗେ,
ସତ୍ୱର ଉର୍ଦ୍ଧ୍ୱିତ— ହୋଇ କମେଲକ
ବିଶୃଙ୍ଖଳଭାବେ ଭାଗେ । ୭ ।

ଉଚ୍ଛ୍ୱଳ ଚନ୍ଦ୍ରରେ ବୈଷମ୍ୟ ଗଠିଛ
ଦୂହୁ ଦଶେ ମନୋହର,
ସାରଥି ରଥକୁ ଯୋଜନା କରଇ
ସ୍ୱଭାବେ କାର୍ଯ୍ୟତତ୍ପର । ୮ ।

କମେଲକପୃଷ୍ଠେ ଦ୍ରବ୍ୟ ପୂର୍ଣ୍ଣସ୍ଥଳୀ
କରିବାରୁ ସଂସ୍ଥାପନ,
ଉଠି ଭାରଭରେ ଦୀର୍ଘ ରାବେ କଲେ
ସ୍ୱନାମ ସାର୍ଥ ରବଣ । ୯ ।

ଧୃତନାସାରଜ୍ଜୁ ହୋଇଥିଲେ ମଧ୍ୟ
ବିଷାଣ କରି କମ୍ପନ,
ବଳୀବର୍ଦ୍ଦକୁଳ ନ କରାନ୍ତି ଜନେ
ଭାର ପୃଷ୍ଠେ ସଂସ୍ଥାପନ । ୧୦ ।

ବିବଧାବଷ୍ଟୃତ ସାମସ୍ୱର୧ କରି
ସହସ୍ର ବର୍ତ୍ମେ୨ ପ୍ରୟାଣି,
ଚପଳ ଗନ୍ଧର୍ବେ ଦୁରଧ୍ୟସ୍ତ ହେଲା
ସେନାବ୍ଧି ସାମ୩ ସମାନ । ୧୧ ।

ଅନ୍ୟଗଜ ପ୍ରତି ଚଳଇ ମାତଙ୍ଗ
ଦୀର୍ଘଦନ୍ତ ଉର୍ଦ୍ଧ୍ୱ କରି,
କମ୍ପାଏ ମସ୍ତକ ପ୍ରହାରେ ନିଷାଦୀ
ସୁତୀକ୍ଷ୍ଣ ଅଙ୍କୁଶ ଧରି । ୧୨ ।

---

୧ । ସାମସ୍ୱର—ଗଜସ୍ୱର, ସାମବେଦସ୍ୱର ।
୨ । ସହସ୍ରବର୍ତ୍ମ—ବହୁପଥମାର୍ଗ, ସହସ୍ରଶାଖା ।
୩ । ସାମ—ସାମବେଦ ।

ହରିଙ୍କ ପ୍ରସ୍ଥାନେ ସର୍ବବ୍ୟାପୀ ଶଙ୍ଖ-
ଢକା ପଟହ ନିସ୍ୱନ,
ଭୂଭୃତଂ ଦ୍ୱିଷଙ୍କ[1] ମହାନ ସତ୍ତ୍ୱରେ[2]
ବ୍ୟଥା ହେଲା ତତକ୍ଷଣେ । ୧୩ ।

ଅଶ୍ୱଖୁରୋତ୍ଥିତ କାଞ୍ଚନରେଣୁରେ
ଟିରିଭଲ ଅଚ୍ଛାଦିତ,
କୁଙ୍କୁମଚୂର୍ଣ୍ଣରେ ବିଲେପନ ପ୍ରାୟ
ଦିଗ ଦିଗେ ବିଶୋଭିତ । ୧୪ ।

ରଥ ମନ୍ଦ୍ର ସ୍ୱନ ମାତଙ୍ଗ ବୃଂହିତ
ଉଭୟ ସ୍ୱର ସମାନ,
ତୁରଗ ହ୍ରେଷିତ ପରିସ୍ଫୁଟ ହେଲା
ଉଭୟଙ୍କୁ ଅସମାନ । ୧୫ ।

ଅନ୍ତିକେ କରିଣୀ ଦେଖି ମହାଗଜ
ତା, ପଛେ କରେ ଗମନ,
ଅଙ୍କୁଶପ୍ରହାରେ ବଙ୍କ କରି ଶିର
ତା, ଅଙ୍ଗେ ଶୁଣ୍ଡ ଗୁଳନ । ୧୬ ।

ବେଗଗମନରେ ଭୂମି ନସ୍ପର୍ଶିଲା-
ଧରାଯ୍ୟ ତୁରଗଗଣ,
ଦାଣ୍ଡେ, ଅଦ୍ୟାପି ଅଲୂନ ପକ୍ଷ ବି
ବୋଲି ସୁବିସ୍ମିତ ଜନ । ୧୭ ।

ବଙ୍କ କରି ଗ୍ରୀବା କ୍ରମେଳକକୁଳ
ମସ୍ତକ କରନ୍ତି କମ୍ପନ,
ଦ୍ରୁତପଦକ୍ଷେପେ ଦୂର ପଥ କଲେ
ସହଜେ ଅତିକ୍ରମଣ । ୧୮ ।

ସାରଥି ଚାଳିତ ସଙ୍କୀର୍ଣ୍ଣ ସୁଗା
ନେମିକ୍ଷତ ରେଣୁ ଅଙ୍ଗେ,
ନପଡ଼ୁଁ ଶକଟ ଯେଣି ଦ୍ରୁତପଦେ
ଧାଇଁଲେ ଅପର ସଙ୍ଗେ । ୧୯ ।

---

୧ । ଭୂଭୃତ—ପର୍ବତ । ୨ । ସତ୍ତ୍ୱ—ବଳ, ଜନ୍ତୁ ।

ଅଶ୍ୱଆରୋହଣୀ     ଅବରୋଧ ନାରୀ-
ସ୍ତନକଞ୍ଚୁକ କମ୍ପନ,
ବଲୋକ ବନ୍ଧୁର—     ମୁଖେ ଚମୂଚରେ
ମାର୍ଗରେ କଲେ ଗମନ । ୨୦ ।

ଅଗ୍ରେ ରଥଚକ୍ର—     ନେମି ବଦାରିତ
ଭୂମିତଳ ନମ୍ନୋନ୍ନତ,
ପଶ୍ଚାତ ଗଜଙ୍କ     ପଦକ୍ରମେ ହୋଇ
ସମୀକୃତ ମାର୍ଗବତ । ୨୧ ।

ଦୁର୍ଦ୍ଦାନ୍ତ ତୁରଙ୍ଗ     ନିଷାଦକୁ ଫିଙ୍ଗି
ବିଲମ୍ବି ପର୍ଯ୍ୟାଣ ଧରି,
ଅଲକ୍ଷିତ ଦାଗେ     ଧାଏଁ ବେଗେ ଦେଖି
ଜନେ ହସନ୍ତି ହା' କରି । ୨୨ ।

ଅନ୍ୟ ସରିତଙ୍କୁ     ମହିମାରେ ଟାଳି
ତ୍ରିମାର୍ଗଗା ଲୋକେ ଖ୍ୟାତ,
ନୃପ ସେନାଗଣ     ଅସଂଖ୍ୟ ମାର୍ଗଗ
ଗଙ୍ଗାରୁ ଅଧିକ ଖ୍ୟାତ । ୨୩ ।

ନିକଟେ କରେଣୁ     ଦେଖି ଉଷ୍ଟ୍ରଯୁଗ
ଭୟେ ଉତ୍ପଥେ ଗମନ,
ସାରଥି ସହିତ     ଅବରୋଧାଙ୍ଗନା
ପତିତ, ରଥଭଞ୍ଜନ । ୨୪ ।

ରଥ ଭଗ୍ନଅଂଶ     ତକ୍ଷା ଆସି ବେଗେ
ଯାଜେ ଶସ୍ତ୍ର ଚେନ କରେ,
ଅବରୋଧ ନାରୀ—     କ୍ଷତସ୍ଥାନେ ବୈଦ୍ୟ
ଲେପାଦି ଚିକିତ୍ସା କରେ । ୨୫ ।

ଶକଟ ଭଙ୍ଗରେ     ଉଷ୍ଟ୍ରିକା୧ ଛିଦ୍ରରୁ
ସ୍ରୁତ ମଦ୍ୟେ ସିକ୍ତାର୍ଯ୍ୟୁନ,
ଲଭପାଇଁ କିଣି     ମୂଳନାଶ ଯୋଗୁଁ
ବଣିକ ବିଷଣ୍ଣମନ । ୨୬ ।

---

୧ । ଉଷ୍ଟ୍ରିକା – ମଦ୍ୟଭାଣ୍ଡ ।

ଭେସ୍ୱରେ ନିର୍ଜିତ     ମହାଗୁହା ମୁଖେ
ଧ୍ୱଜାଂଶୁକେ ରମ୍ଭାବନ,
ମାତଙ୍ଗେ ବଜାଉ     ଉପଳ, ଶୈଳକୁ
ପଛକଲେ ସୈନ୍ୟଗଣ ।୨୭।

ବନ୍ୟଇଭ ମଦ—     ଗନ୍ଧରେ କୁପିତ
ତରୁଶାଖା ଭଙ୍ଗ କରି,
ଦୁଷ୍ଟ ମତଙ୍ଗଜ     ଅଧୋରଣ ସହ
କୁପଥେ ଯାଏ ସଞ୍ଚରି ।୨୮।

ପତାକା କାନନ     ଗଜ ଗିରିପରି
ବହୁ ଜନତାସରିତ,
ରୈବତକଗିରି     ତେଜି, ଅବନୀରେ
ହେଲା କ୍ରମେ ବଦୂରିତ ।୨୯।

ହରିଣୀଲୋଚନ     ପ୍ରାପ୍ତ ନାସ୍ୱନେତ୍ର
ଦେଖି ମୃଗଗଣ କ୍ଷଣେ,
ବିଭ୍ରମ ବିଳାସ     ଦେଖି ଏଣେତେଣେ
ପଳାଇଲେ ଭୟମନେ ।୩୦।

ସାଦୀ ଶିଥିଳିତ     ବଲ୍ଗା, ଅଶ୍ୱକୁଳ
ନିମ୍ନଭୂମି ଅବତରି,
ଉଚ୍ଚ ଶଙ୍ଖ ଶବ୍ଦେ     ଆନନ୍ଦ ହ୍ରେଷିତ
ଧାଇଁଲେ ଶୃଙ୍ଖଳାଧରି ।୩୧।

କେ କାହାକୁ ମାର୍ଗେ     ସୁପ୍ରତୀକ୍ଷା କରୁଁ
ନାଧାରନ୍ତୁ ଧରି କରେ,
ଅଗ୍ରେ ପିଚୁମର୍ଦ୍ଦ     ଦେଖି କ୍ରମେଳକ
ସାଗ୍ରହେ ଭକ୍ଷଣ କରେ ।୩୨।

ହର ସେନାଗଣ     ବହୁଛନ୍ଦ ଧର
କରନ୍ତି ଦ୍ରୁତଗମନ,
ସର୍ବ ଛନ୍ଦ ମିଶି     ଏକ ଅତପନ୍ଦ
ପରାୟୁ ଦଶେ ଶୋଭନ ।୩୩।

ପଶ୍ଚାତ ଆଗତ ଗଜ ଘଣ୍ଟି ସ୍ୱନ
ଶୁଣି ସକଳ ଅଙ୍ଗନା,
ଘରବାହାରକୁ ସେ ଦୂରୁ ଅପସାର
ସୈନିକଙ୍କୁ ମୋଦମନା । ୩୪ ।

ଓଜସ୍ୱୀବର୍ଣ୍ଣରେ ସମୁଜ୍ଜ୍ୱଳ ବଂଶ
କୀର୍ତ୍ତି ଲୁଚର ଶ୍ଳୋକରେ,
ଉପେନ୍ଦ୍ରଙ୍କ ସ୍ତୁତି ବନ୍ଦୀଗଣ ତହିଁ
କରନ୍ତି ମଧୁର ସ୍ୱରେ । ୩୫ ।

ଜଳରେ ନିଃଶେଷ— ଅକାନ୍ତ ଭୂତଳ
ସମୁଦ୍ର ତେଜଇ ସ୍ଥିତି,
କେଶବ ଚଳନ୍ତେ ଅବାରିତ ସୈନ୍ୟ-
ନ-ଅସ୍ଥିତ, କର ଭୀତି । ୩୬ ।

ଗ୍ରାମ୍ୟ ନାରୀଗଣ ବକଶିତନେତ୍ରେ
ନିଜବୃତ୍ତି ମଧ୍ୟେ ଥାଇ,
ସେନାଙ୍କ ଅଲକ୍ଷ୍ୟେ ଗ୍ରାମ ମଧ୍ୟଗାମୀ
କୃଷ୍ଣଙ୍କୁ ଦେଖନ୍ତି ଯାଇ । ୩୭ ।

ଗୋଷ୍ଠେ ଗୋଷ୍ଠୀକୃତ ଗୋପାଳବାଳକ
ଉଠି ମଦ୍ୟ ପିଇ ବସି,
ହରିନାମ ଗାଉ— ଥିବା ଗୋପାଳଙ୍କୁ
ଦେଖନ୍ତି ଶ୍ରୀକୃଷ୍ଣ ହସି । ୩୮ ।

ଏକାନ୍ତ ମୁଗ୍ଧରେ ବଳାସବସ୍ଥାନ
ବସ୍ତ୍ରାଚିତ ବିଲୋଚନେ,
ଗୋପାଙ୍ଗନାଗଣ କୃଷ୍ଣଙ୍କୁ ବିଲୋକ
ତୃପ୍ତ ନ ହୁଅନ୍ତି ମନେ । ୩୯ ।

ଧେନୁ ଅଗ୍ରପଦେ ବତ୍ସା ଗ୍ରୀବା ବାନ୍ଧି
ଉଭୟ ଜାନୁଉପରେ,
ପାତ୍ର ରଖି, ଦୁଗ୍ଧ— ଦୋହନକାରୀଙ୍କ
କୃଷ୍ଣ ଦେଖନ୍ତି ହର୍ଷରେ । ୪୦ ।

ଧେନୁ ଅଭିମୁଖେ ଆଗତ ତର୍ଣ୍ଣକ[୧]
ନିର୍ଯ୍ୟାଣ[୨]-ହସ୍ତ ବଲ୍ଲବ,
ଦେଖିଲେ ଅଚ୍ୟୁତ ଗୋମତଲ୍ଲିକାକୁ
ବିକାଶି ନେତ୍ରପଲ୍ଲବ । ୪୧ ।

ଧାନ୍ୟାଦ ଶୁକଙ୍କୁ ଦେଖୁଁ ପୃଷ୍ଠଭାଗୁଁ
ମୃଗଯୂଥ ଆସି କ୍ଷେତ୍ରେ,
ଶସ୍ୟ ଖାଉଁ ଗୋପୀ ବ୍ୟାକୁଳ, ଶ୍ରୀହରି
ଦେଖନ୍ତି କୌତୁକ ନେତ୍ରେ । ୪୨ ।

ଶାଳି ଗୋପୀଙ୍କର ସଂଗୀତ ଶ୍ରବଣେ
ମୃଗଯୂଥ ଡେରି କର୍ଣ୍ଣ,
ଶସ୍ୟ ନ ଖାଆନ୍ତି, ସ୍ଥିତ, ମଧୁରିପୁ
ମୋଦେ କରନ୍ତି ଲୋକନ । ୪୩ ।

ନାରୀ ଲୀଳା ଗତି ଚରଣ ନୂପୁର
ଶିଞ୍ଜିତ ପରାୟ ସ୍ୱନ,
ଶୁଣନ୍ତି ଅଚ୍ୟୁତ ଜଳ ସମୀପରେ
ରମ୍ୟ ସାରସ କୂଜନ । ୪୪ ।

ସୈନ୍ୟ ଗମନରେ ରେଣୁ ଉର୍ଦ୍ଧ୍ୱେ ଉଠି
ପଡ଼େ ପର୍ବତ ଉପରେ,
ଅଚ୍ୟୁତ ଆଜ୍ଞା କି ମସ୍ତକେ ଧରନ୍ତି
ଉଭୟ ଭୂଭୃତବରେ । ୪୫ ।

ସମତଳ ପଥେ ଚାଲନ୍ତି ମାନବେ
ଏହା ତ ଲୋକ ପ୍ରସିଦ୍ଧ,
ମୁରାରିଙ୍କ ସେନା ବନ୍ଧୁରେ ପର୍ବତେ
ଚାଲନ୍ତି ନୋହି ନିଷିଦ୍ଧ । ୪୬ ।

ଗଜଗଣ ଉର୍ଦ୍ଧ୍ୱ— ଦନ୍ତେ ମେଘଭେଦୀ
ମଦଜଳ ପ୍ରବାହରେ,
ତରୁଶାଖା ଭଗ୍ନ— କରି ଆରୋହନ୍ତି
ଅଦ୍ରିକି ହରଷଭରେ । ୪୭ ।

୧ । ତର୍ଣ୍ଣକ—ବାଳବତ୍ସ । ୨ । ନିର୍ଯ୍ୟାଣ—ପଶୁବନ୍ଧନରଜ୍ଜୁ ।

ଜୀମୂତ କଦମ୍ବ— ଦୁ୍ୟତ ମତଙ୍ଗଜ
ଜନମାର୍ଗ ରୋଧେ ଯଥା,
ତରୁଲତା ପୂର୍ଣ୍ଣ ସ୍ରୋତସ୍ୱିନୀଧାରୀ
ଉଚ୍ଚମହୀଧ୍ର ନ ତଥା । ୪୮ ।

ମତ୍ତମାତଙ୍ଗରେ ଭଗ୍ନ ତରୁରାଜ
ପଡ଼ିଯାଇ ଇତସ୍ତତ,
ସୁଗମ, ଦୁର୍ଗମ, ଅଚଳର ନାମ
ହେଲା ଏବେ ଯଥାର୍ଥତଃ । ୪୯ ।

ଅଦ୍ରି ଆରୋହଣ କରୁଥିବା ଶତ-
ଶତ ଗଜ ଦେଖି ହରି,
ଭାବିଲେ ଉତ୍ପାତ— ପବନପାତିତ
ପ୍ରତିକୂଳ ଶିଳା ପରି । ୫୦ ।

ଶୈଳ ଆରୋହଣ ଅଭ୍ୟାସଚତୁରା
ଉନ୍ନତସ୍ତନମଣ୍ଡଳା,
ପର୍ବତୀୟ ନାରୀ ହରଙ୍କି ଦେଖିଲେ
ନେତ୍ରବିଭ୍ରମକୁଶଳା । ୫୧ ।

ଏକବାର ନେତ୍ର ଉନ୍ମୀଳନ କରି
ଶୟନେଚ୍ଛାରେ କେଶରୀ,
ପଶୁରାଜ ଯେଣୁ ସୈନ୍ୟ ଗଲେ ପାଶେ
ନ ପଳାଏ ଥିଲେ ଡରି । ୫୨ ।

ମହାଶିଳା ଖଣ୍ଡ ସମ ଗଜଗଣ
ରୋଧିଲେ ସବୁତ ଜଲ,
ମସ୍ପୃକ୍ତତରୁଙ୍କ ମାର୍ଗକୁ ନ ଗଣି
ଗମିଲେ ସୈନ୍ୟ ସକଳ । ୫୩ ।

ତରୁ ସ୍କନ୍ଧଦେଶେ କପୋଳ ଘର୍ଷଣ
କରିବାରୁ ଗଜପତି,
ମଧୁଚକ୍ର କ୍ଷୁଦ୍ର ସରଘା ଦଂଶିଲେ
ରୋଷେ ଜନଙ୍କୁ ତ୍ୱରିତ । ୫୪ ।

ଦୁର୍ଦ୍ଦାନ୍ତ ମାତଙ୍ଗ— ଦ୍ୱାର ତରୁ ଭଗ୍ନ
କରିବାରୁ ବଲୋକନ,
ପଳାଶ ଦ୍ରୁମରେ ବସି ପ୍ଲବଙ୍ଗମ
କରେ କଚ କଚ ସ୍ୱନ । ୫୫ ।

କାହିଁ ସମୁନ୍ନତ କାହିଁ ନିମ୍ନତର
ଗିରିକି ଯାଦବ ବଳ,
ଉଲ୍ଲଙ୍ଘନ କଲେ ହରଷେ ସହଜେ
ଲଙ୍ଘି ସ୍ରୋତସ୍ୱିନୀ ଜଳ । ୫୬ ।

ଯୁଗପତ ସେନା— ଗଣଙ୍କ ପ୍ରବେଶେ
ଉଚ୍ଛୁଳି ନଦୀର ଜଳ,
ପ୍ରତିକୂଳ ଗତେ ପ୍ରତୀପ ନାମରେ
ଖ୍ୟାତ ନିମ୍ନଗା ସକଳ । ୫୭ ।

ଗଜଙ୍କ ପ୍ରବେଶ— ପୂର୍ବରୁ ତୁରଙ୍ଗ
ସମୁତ୍ଥିତ ଧୂଳିରାଶି,
ସରିତେ ପତିତ— ହେବାରୁ ସଲିଳ
ପଙ୍କିଳା ହୋଇଲା ଆସି । ୫୮ ।

ଦନ୍ତେ କ୍ଷତ କରି ଉତ୍ତୁଙ୍ଗ ନିତମ୍ବ
କରେ ଶୈବାଳ ବସନ,
ଦୂର କରି ସିନ୍ଧୁ— ପତ୍ନୀଙ୍କ ଦୋଷିଣୀ
କରିବାକୁ ଗଜ ମନ । ୫୯ ।

ପଦେ ରୋଧଃ ଭାଙ୍ଗି ପୁରାତନ ନଦୀ
କରି ସ୍ଥଳର ସମାନ,
ନିଜ ମଦାମ୍ବୁରେ ନବୀନ ସରିତ
ସତ୍ୱର ପ୍ରବହମାନ । ୬୦ ।

ବଧୂଙ୍କ ବଦନେ ବଜିତ ପଦ୍ମିନୀ
ଅତଏବେ ହଂସଜିତ,
ଗଜେ ଶିଳାଜିତ ଭୋଜବଲ ହେଲେ
ନିମ୍ନଗାଠାରୁ ଅତୀତ । ୬୧ ।

ସ୍ନିଗ୍ଧାଞ୍ଜନ ଶ୍ୟାମ କର କଦମ୍ବରେ
ନୀରନ୍ଧ୍ର ଯାଦବ ବଳ,
ସୁଧା ବଳେପିତ ପୁର ସୌଧଶୋଭା
ଦୂରସ୍ଥ କଲେ ସକଳ । ୬୨ ।

ପଥେ ସୌଧୋପମ ପ୍ରଭୁଙ୍କ ନିବାସ
ଶୋଭେ ବସନ ସଦନ,
ପୁରୁ୧ ପ୍ରସ୍ଥାନେ କ କଲେ କୃଷ୍ଣସହ
ପୁରଲକ୍ଷ୍ମୀ୨ ଅଗମନ । ୬୩ ।

ଗଣ୍ଡ ଘର୍ଷଣରେ ମଦ ତରୁ ସ୍କନ୍ଧେ
ଲଗିବାରୁ ସକ୍ତ ଅଳି—
ଗୁଞ୍ଜି ଗଜସଂଖ୍ୟା ବନଚରଙ୍କୁ କି
ପ୍ରକାଶେ ହୃଦରେ କଳି । ୬୪ ।

ସମୁନ୍ନତ ଗଜ— ସମୂହ ଗମନେ
ଉଚ୍ଚ ସଦନ ବଜିତ,
ପୁର ପରେ ପୁର ଅତିକ୍ରମ କଲେ
ପୃଥିବୀ ହୁଏ ଶୋଭିତ । ୬୫ ।

ସେନା ସମୁତ୍ଥିତ ଭାସ୍କର ସନ୍ତପ୍ତ
ରଜୋରାଶି ପ୍ରାଣୀ ପ୍ରାୟ,
ଅହ୍ଲାଦଦାୟକ କହ୍ଲାର ସମୀରେ
ଯାମୁନାମ୍ବେ ଦେଲେ କାୟ । ୬୬ ।

ଉଷ୍ଣାଂଶୁତନୟା, ଅଟେ ସୁଶୀତଳ
ଯମସ୍ୱସା, ଲୋକଙ୍କର—
ଜୀବନ ଅଟଇ, କୃଷ୍ଣା, ଅତିଶୁଦ୍ଧ
ପାପନାଶନେ ତତ୍ପର । ୬୭ ।

ହିମପିଣ୍ଡ ପାଣ୍ଡୁ ଜଳଧର ଯାଳ-
କୃଷ୍ଣଜଳ କରି ପାନ,
ମହାନୀଳ କାନ୍ତି— ଧାରଣ କଲା ସେ
ଅଞ୍ଜନ ବର୍ଣ୍ଣ ସମାନ । ୬୮ ।

---

୧ । ପୁରୁ—ଦ୍ୱାରବାହୁ । ୨ । ପୁରଲକ୍ଷ୍ମୀ—ଦ୍ୱାରବାଣୀ ।

ଅଗମ ପ୍ରମାଣେ ଜାହ୍ନବୀ ଜଳରେ
ଜଳନିଧି ହୁଏ ପୂର୍ଣ୍ଣ,
ଗଙ୍ଗାଓଘେ ଭସ୍ମ— ହରକଣ୍ଠ, ବର୍ଣ୍ଣ
ଧରେ କି ଯମୁନା ଘୂର୍ଣ୍ଣ । ୬୯ ।

ତମାଳ ସୁନୀଳ ଅତି ଦୀର୍ଘଭୂମି
କ୍ରମଣର ଇଚ୍ଛା କରି—
ସ୍ଥିତ, ହରିଙ୍କର ସେନା ସମୁଦ୍ରର
ଦୂରୁ ଦିଶେ ବେଳା ପରି । ୭୦ ।

ନୌକା ଦୁଇପାର୍ଶ୍ୱେ କ୍ଷେପଣୀ ଗୁଳନେ
ଜାତ ହେଲା ଜଳଭ୍ରମ,
ଭ୍ରମୀ ଭୀତ ନାସ୍ୱ ସ୍ୱାମି ଅବଲମ୍ବି
ମହାନଦୀ ଅତିକ୍ରମ । ୭୧ ।

ଗଜଗଣ ଅଂଶ— ପ୍ରମାଣ ଯମୁନା-
ଜଳରେ କରି ଗାହନ,
ଅବିରତ ସ୍ରୁତ— ଦାନ ଜଳେ କଲେ
ଉଚ୍ଛ୍ୱାସ ଯମୁନା ଅର୍ଣ୍ଣଃ । ୭୨ ।

ହ୍ରେଷାନାଦେ ପ୍ରୋଥ— କରି ସଙ୍ଗୁଳନ
ଉହର୍ଣ୍ଣ ଊର୍ଦ୍ଧ୍ୱକନ୍ଧର,
ଅଗ୍ରତଟେ ଦୃଷ୍ଟି ଦେଇ ତୁରଙ୍ଗମେ
ନଦୀ ତରିଲେ ସତ୍ୱର । ୭୩ ।

ନିତାନ୍ତ ଦୁସ୍ତର କଠିନ ପ୍ରତିଜ୍ଞା-
ପରି ସରିତକୁ ତରି,
ତଟଦେଶେ ଶୃଙ୍ଗେ ଖୋଳିଲେ ମୃତ୍ତିକା
ବୃଷଭେ ଗର୍ଜ୍ଜନ କରି । ୭୪ ।

ଭୋଜବଳ ନଦୀ ସନ୍ତରଣ କାଳେ
ଗବଳ[୧] ମେଚକ ଦ୍ୟୁତି,
ସୀମନ୍ତ ସିନ୍ଦୂର ଧରାସ୍ତୁ ଶୋଭିଲା
ପୃଥିବୀ ବେଣୀ ବିଭୂତି । ୭୫ ।

---

୧ । ଗବଳ—ମହିଷଶୃଙ୍ଗ

ଯମୁନା ଜଳର କୁଣ୍ଡଳ ତରଙ୍ଗ
ଭେଦ କର କେଉଁ ଜନ,
ନିଜ ଭୁଜବଳ ଅନ୍ୟଙ୍କୁ ଦେଖାଏ
ପୁ ନିପୁଣ ସନ୍ତରଣ । ୭୬ ।

କକୁଦ୍ମାନ ଶୃଙ୍ଗଘାତେ ବଦଳିତ ହେଲା କୂଳ
ଗ୍ରାହା ଅକୃଷ୍ଟ ମାତଙ୍ଗପଦେ,
ରଥେ ଜଳ ସମାକୁଳ— କର ଶ୍ରୀଭର୍ତ୍ତାଙ୍କ ସେନା
ଲଙ୍ଘିଲେ ଯମୁନା ବାରମଦେ । ୭୭ ।



## ତ୍ରୟୋଦଶ ସର୍ଗ

ଅଚ୍ୟୁତ ଯମୁନା ପାର ହେଲେ ବୋଲି
ଶୁଣିଲେ ଧର୍ମ୍ମନନ୍ଦନ,
ଏ ନୋହେ, ପ୍ରସ୍ୱାରୁ[୧] ବାହାରିଲ ଧନୁ
ସର୍ବ ଶୁଣି ତୋଷମନ । ୧ ।

ଯମୁନା ତରଣ ଶୁଣି ଧର୍ମ୍ମସୁତ
ଅନୁଜଙ୍କୁ ଘେନି ସଙ୍ଗେ,
ଯଦୁନାଥଙ୍କର ସମ୍ମୁଖକୁ ଯିବା-
ପାଇଁ ବାହାରଲେ ରଙ୍ଗେ । ୨ ।

ପାଣ୍ଡବ ସେନାଙ୍କ ଦୁନ୍ଦୁଭି ନିନାଦେ
ବଧିର ତ ହେଲ କର୍ଣ୍ଣ,
କଥନେ କଥନ ହସ୍ତେ ସଙ୍କେତରେ
ନ ଜଣାଇ ଶେଷ ବର୍ଣ୍ଣ । ୩ ।

ଭ୍ରମିତ ହେବାରୁ ରଥ ହେମ ନେମି-
ମାରୁତେ ଉର୍ଦ୍ଧିତ ରଜ,
ରେଣୁକେତୁ, ସମ ଦଣିଲେ ଫସଲେ
ଚଳିବାରୁ ସୈନ୍ୟବ୍ରଜ । ୪ ।

ତୁରଗ ଚରଣ ଯତ ଶବ୍ଦ ହେଲ
ବିବିଧ ବାଦ୍ୟ ପର୍ଯ୍ୟନ୍ତୁ,
ମେଘଧ୍ୱନି ପରି ଗଜଶବ୍ଦେ ନାଚେ
କଳାପୀ ବିସ୍ତାରି କାୟ । ୫ ।

---

୧ । ପ୍ରସ୍ୱାରୁ—ଦ୍ୱାରବାରୁ ।

ଯଦୁ କୁରୁ ସୈନ୍ୟ ସ୍ନେହେ ଏକତ୍ରରେ
କରିବାକାଳେ ଗମନ,
ଗଜଗଣ କ୍ରୋଧେ ଅସ୍ଥିର, ମୂଢ଼ର
କାହିଁ ବିବେଚିତ ମନ ।୬।

ଦୂରୁ ଦେଖି ଧର୍ମ- ସୁତଙ୍କ ପୂର୍ବରୁ
ରଥୁଁ ଅବତରି ହରି,
ବିନୟ ସମ୍ମାନ ସକାଶେ ଭୂମିରେ
ଉଭା ହେଲେ ନତ ପରି ।୭।

ପୁରାଣ ପୁରୁଷ ଜଗତ-ନମସ୍ୟ
ହରି, ଲମ୍ବିତ ଭୂତଳେ,
ନିଜ ଗୌରବରେ ପିତାଙ୍କ ଭଗିନୀ-
ପୁତ୍ରଙ୍କୁ ପ୍ରଣାମ କଲେ ।୮।

ମୁକୁଟ ଅଂଶୁରେ ରଞ୍ଜିତ ପରାଗ
ଭୂତଳ ସ୍ପର୍ଶର ଅଗ୍ରେ,
ଧର୍ମରାଜ ତାଙ୍କୁ ବେନିଭୁଜେ ସ୍ନେହେ
ଆଲିଙ୍ଗନ କଲେ ବ୍ୟଗ୍ରେ ।୯।

କପାଟ ବିସ୍ତୃତ ମୁରବୈରି ବକ୍ଷ
କ୍ଷିତିପ କ୍ଷୁଦ୍ର ବକ୍ଷରେ,
ଅସମାନ ହେତୁ ଭୁଜ ବିସ୍ତାରରେ
ଅଶ୍ଳେଷିଲେ ସ୍ନେହଭରେ ।୧୦।

ନାଭି ତେଜ ଉରଃ ଅଶ୍ରିଲ୍ଲ ବାରିଜ
ତହିଁ ଶ୍ରୀର[୧] ଅଧିବାସ,
ଧର୍ମସୁତଙ୍କର ଅଶ୍ଳେଷ ଲମ୍ଭୁରେ
କୃଷ୍ଣମୁଖରେ ନିବାସ ।୧୧।

ବଳି ବନ୍ଧନରେ କପଟ ବାମନ
ଧର୍ମସୁତଙ୍କ ଅଗରେ,
ବିନୟ ବାମନ କୃଷ୍ଣଙ୍କ, ମୂର୍ଦ୍ଧାକୁ
ଅଘ୍ରାଣିଲେ ସେ ସ୍ନେହରେ ।୧୨।

---

୧ । ଶ୍ରୀ—ପଦ୍ମଶୋଭା, ରମା ।

ବାସୁଦେବ ହସ୍ତ ଶିଥିଳାନ୍ତ ପରେ
ପାଣ୍ଡବଜ୍ୟେଷ୍ଠଙ୍କ କର,
ବକାସକଦମ୍ବ ପ୍ରାପ୍ତ ପୁଲକାନ୍ତ
ଆନନ୍ଦେ ହେଲା ସତ୍ୱର । ୧୩ ।

ପାଣ୍ଡବଜ୍ୟେଷ୍ଠଙ୍କୁ ସମ୍ମାନନା ପରେ
ମୁରାରି ଆନନ୍ଦମନେ,
ଧର୍ମସୁତଙ୍କର ଅନୁଜମାନଙ୍କୁ
ସମ୍ମାନ କଲେ ଯତନେ । ୧୪ ।

ପାଷାଣ କଠିଣ ଦୀର୍ଘଭୁଜ ପଞ୍ଚ-
ପର ଅନ୍ୟ ନୃପଗଣ,
ବଜ୍ରପାତ ପୂର୍ବ ଗିରି, ଗିରିକୁ କ
ପ୍ରାପ୍ତ କଲେ ଆଲିଙ୍ଗନ । ୧୫ ।

ଇଭକୁମ୍ଭ ତୁଙ୍ଗ— ସ୍ତନ ବଶୋଭନା
ପୁଲ୍ଲକପୋଳ ସୁନ୍ଦର,
କୁକୁର କୌରବ— ନାରୀଗଣ ମୋଦେ
ଆଲିଙ୍ଗିଲେ ପରସ୍ପର । ୧୬ ।

ଉଭୟ ସୈନ୍ୟର ରଥାଶ୍ୱକରଣୀ
ପରସ୍ପର ସମ୍ମିଳିତ,
କରିଗଣ ହେଲେ ପୃଥକ, ମହାନ
ବିଲକ୍ଷଣେ ସୁବିଦିତ । ୧୭ ।

ରଥ ଆରୋହଣ କର ବୋଲି ନୃପ
କହିବାରୁ ତହୁଁ ହରି,
ପାର୍ଥ ସଙ୍ଗେ ରଥେ ଐଲବିଲ୧ ସଙ୍ଗ
ଦଶିଲେ ମଘବା ପରି । ୧୮ ।

ଇନ୍ଦ୍ରପ୍ରସ୍ଥଗାମୀ ରଥାରୂଢ଼ ହରି
ସାରଥି କାର୍ଯ୍ୟରେ ତଥା,
ଦଶିଲେ, ଶିବଙ୍କ ରଥେ ପ୍ରଜାପତି
ତ୍ରିପୁର ବିନାଶେ ଯଥା । ୧୯ ।

୧ । ଐଲବିଲ – କୁବେର ।

ଗବାକ୍ଷମାର୍ଗରେ ଚନ୍ଦ୍ରକର ପରି
ସମୁଦ୍ରଫେନ ଧବଳ,
ମରୁତତନୁଜ ଚାମର ବିଞ୍ଚିଲେ
ହରିଙ୍କ ରଥେ କେବଳ । ୨୦ ।

ହରି ଶିରପରେ ଅରଜୁନ କଲେ
ଧବଳଛତ୍ର ଧାରଣ,
ଯମୁନା ଉପରେ ହଂସମଣ୍ଡଳୀର
ପ୍ରାୟ ଦିଶେ ବିଶୋଭନ । ୨୧ ।

ପବନଅଙ୍ଗଜ ଇନ୍ଦ୍ରସୁତଙ୍କର
ମଧ୍ୟବର୍ତ୍ତୀ ହୋଇ ହରି,
ଶୋଭିଲେ, ଉଭୟ— ଗ୍ରହ ମଧ୍ୟ ଇନ୍ଦୁ
ଦୁରୁଧୁରାଯୋଗ୧ ପରି । ୨୨ ।

ଯମ ଜାଯୁମର' ସମାଦନପନ୍ଥୁ
ଜିତେନ୍ଦ୍ରସ୍ୱ ହରି ପଛେ,
ଦସ୍ରଙ୍କ ତନୁଜ— ଦ୍ୱୟ ଅନୁଗାମୀ
ହେଲେ ଅତି ମତ ସ୍ୱଚ୍ଛେ । ୨୩ ।

ଅବନୀତଙ୍କର ଶାସକ ପାଣ୍ଡବେ
ଅତି ବନୀତ ଭାବରେ,
ଦିତିଜନ୍ମାଙ୍କର ରିପୁ ଶ୍ରୀହରିଙ୍କି
ବେଢ଼ିଲେ ଭକତିଭରେ । ୨୪ ।

ଭାନୁ ଜହ୍ନୁ କନ୍ୟା— ଜଳ ପରି ବେନି
ସୈନ୍ୟ ମିଳନର ଘରେ,
ଆନନ୍ଦେ ଦୁନ୍ଦୁଭି ବଜାଇଲେ ତହୁଁ
ସ୍ୱର୍ଗେ କମ୍ପିଲେ ଅମରେ । ୨୫ ।

---

୧ । ଦୁରୁଧୁରାଯୋଗ—ସୂର୍ଯ୍ୟ ଓ ଅନ୍ୟ ଗ୍ରହର ମଧ୍ୟବର୍ତ୍ତୀ ଚନ୍ଦ୍ରର ଯୋଗକୁ ଦୁରୁଧୁରାଯୋଗ କହନ୍ତି ।

ଧର୍ମ୍ମସୁତ ସଙ୍ଗ— ଦର୍ଶନେ ଅଗତ
ନୃପତିମାନଙ୍କ ପାଇଁ,
ମୟଦୈତ୍ୟ କୃତ ଗୃହାବଳି, ଅଗ୍ରେ
ଅଚ୍ୟୁତ ଦେଖିଲେ ଧାଇ । ୨୬ ।

ବାଦ୍ୟନାଦ ମୋଦେ ପୁର ଗୋପୁରକୁ
ଧାଇଁଲେ ସୈନ୍ୟସାଗର,
ହିମାଦ୍ରି ଗୁହାକୁ ପ୍ରତିକୂଳ ଧାଏଁ
କିବା ଗଙ୍ଗା ଖରତର । ୨୭ ।

ବହୁ ରୂପ୧-ଧାରୀ ପୁରାଣପୁରୁଷ
ଅନନ୍ତେ ନବ୨ ଗୋପୁରେ୩,
ପଞ୍ଚେନ୍ଦ୍ରିୟ ସମ ପଞ୍ଚପାଣ୍ଡବଙ୍କ
ସହିତ ପ୍ରବେଶ ପୁରେ୪ । ୨୮ ।

ଯେ ନଗର ଜନେ ତ୍ର୍ୟମ୍ବକ ବୀକ୍ଷଣ-
ପୂର୍ବ, କାମରୂପ ଧର,
ଶୋଭନ୍ତ, ପ୍ରମଦା— ମୁଖ, ରାଜଯକ୍ଷ୍ମା-
ପୂର୍ବ କ୍ଷଣାକର ପର । ୨୯ ।

ପୁର ନାରୀଗଣ ହରିଙ୍କି ଦେଖିବା-
ସକାଶେ ପ୍ରତିପଥରେ,
ଉଭାହେଲେ ଆସି ଗୃହକର୍ମ୍ମ ତେଜି
ଝଙ୍କାଣ୍ଟେ ପଛପଛରେ । ୩୦ ।

ଅର୍ଦ୍ଧ ପ୍ରସାଧିତ କରରୁଦ୍ଧ ଗ୍ରନ୍ଥି
ଅଂଶୁକ ପଡ଼ଇ ଖସି,
ଅଗତ ନାରୀଙ୍କି ଦେଖି ସୌଧପଂକ୍ତି
ସ୍ଥିତ, ତୂର୍ଯ୍ୟନାଦେ ହସି । ୩୧ ।

---

୧ । ରୂପ – ଅବତାର । ୨ । ନବ – ନୂତନ, ନଅସଂଖ୍ୟା ।
୩ । ଗୋପୁର – ଦ୍ୱାର, ଇନ୍ଦ୍ରିୟଛେଦ । ୪ । ପୁର – ନଗର, ଶରୀର ।

ହାରସ୍ଥାନେ କାଞ୍ଚୀ କେଶେ କର୍ଣ୍ଣପୁର
ପରିବର୍ତ୍ତିତ ବସନ,
ହସ୍ତରେ ନୂପୁର ଦ୍ରୁତ ହେତୁ ଭ୍ରମେ
ଧାଆନ୍ତି ରମଣୀଗଣ । ୩୨ ।

କେ ନାରୀ ବିଭ୍ରମେ ଯାବକ ରଞ୍ଜିତ
ଏକପଦ କରି ତ୍ୟାଗ,
ହରଅର୍ଦ୍ଧଅଙ୍ଗୀ ଗିରିଜା ପରାୟେ
ଧାଉଁଅଛି ଆଗ ଆଗ । ୩୩ ।

ବିଶାଳ ନିତମ୍ବେ ବାଜି କାଞ୍ଚୀଦାମ
କରଇ ଅପୂର୍ବ ସ୍ୱନ,
କନକ ନୂପୁର ସ୍ୱନେ ଆରୋହନ୍ତି
ହର୍ମ୍ମ୍ୟରେ ରମଣୀଗଣ । ୩୪ ।

କନକ ଭବନ ଗବାକ୍ଷରେ ବସି
କରନ୍ତି ହରିଦର୍ଶନ,
ଉଦୟାଦ୍ରି-ଗର୍ଭୁଁ ସ୍ଫୁଟ ଚନ୍ଦ୍ର ପରି
ଦିଶେ ରମଣୀବଦନ । ୩୫ ।

କେଉଁ ନାରୀ ନିଜ— ହର୍ମ୍ମ୍ୟ ଊର୍ଦ୍ଧ୍ୱେ ସ୍ଥିତ
ବାତକମ୍ପିତବସନା,
ଇନ୍ଦ୍ରପ୍ରସ୍ଥଗାମୀ ହରିଙ୍କି କେତନେ
କିବା କରେ ଅଭ୍ୟର୍ଥନା । ୩୬ ।

କରପଦ୍ମ ମୁକ୍ତେ ଊର୍ଦ୍ଧ୍ୱେ କେଉଁ ନାରୀ
ଲାଜା କରେ ବିକୀରଣ,
ଦୀର୍ଣ୍ଣଶୁକ୍ତି ପୁଟୁ ମୁକ୍ତା ଝରି କିବା
ହରିଙ୍କି କରେ ଛାଦନ । ୩୭ ।

ହିମମୁକ୍ତ ଚନ୍ଦ୍ର ସପଦ୍ମକ ହରି
ଦ୍ୱିଜଙ୍କୁ ଆନନ୍ଦ କରି,
ଜନିତ କନ୍ଦର୍ପ ପ୍ରମଦାଜନଙ୍କେ
ଦେଲେ ମୋଦ ବୃଦ୍ଧିକରି । ୩୮ ।

ମହୀଧ୍ରଦୁହିତା ନ ଦେଖିବେ ବୋଲି
ମଦନମଦରେ ଘାରି—
ଦେବାଙ୍କୁ ବଭ୍ରମେ ହରିଙ୍କି ଦେଖିଲେ
ପୁରବଳାସିମୀନାରୀ । ୩୯ ।

ନିଖିଳଭୁବନ ଯୁଗ କ୍ଷୟେ ରହେ
ଯେଉଁ ହରଙ୍କ ଗର୍ଭରେ,
ମଦ ବଭ୍ରମିତ ପୁରନାରୀ ଏକ-
ନେତ୍ରେ ତାଙ୍କୁ ପାନକରେ । ୪୦ ।

କେଉଁ ନାରୀଭୁଜ— ଜନ୍ମମିତେ ଦଣେ
ଅର୍ଦ୍ଧମୁକ୍ତଭାବେ ସ୍ତନ,
କଳାପିନିସ୍ୱନେ ବଳୟ ଶିଞ୍ଜନେ
କରେ କର୍ଣ୍ଣେ କଣ୍ଡୂୟନ । ୪୧ ।

କେ ନାରୀ ଲୋହିତ କମଳପଲ୍ଲବ
ସଦୃଶ ଅଙ୍ଗୁଳି ଅଗ୍ରେ,
ମସ୍ତକ କମ୍ପନେ କୃଷ୍ଣଙ୍କୁ ମନରେ
ନିକ୍ଷେତେ ଆହ୍ୱାନେ ବ୍ୟଗ୍ରେ । ୪୨ ।

ପଲ୍ଲବେ ନିହିତ କମଳ ପରାୟେ
ଏକକରେ ରଖି ମୁଖ,
କେ ନାରୀ ଦଶନ ପ୍ରଭାକୁ ଦେଖାଏ
ଜୃମ୍ଭାରେ ବସ୍ତାରି ମୁଖ । ୪୩ ।

ହରିଙ୍କ ବୀକ୍ଷଣେ ସ୍ତିମିତନୟନା
ସ୍ରଂସମାନ ବସନରେ,
କେ ନାରୀ ବସିଛୁ କରସ୍ଥ ବଳୟ-
ମଣିପ୍ରଭା ଝଲକରେ । ୪୪ ।

ନିଜ ସୌରଭରେ ଭ୍ରମିତ ଭୃଙ୍ଗର
ସ୍ୱେଦବାରଣେ ବ୍ୟଜନ,
ହେଲା, କେଉଁ ନାରୀ ନଗର ଦେବତା-
ପରି ଦଶଇ ଶୋଭନ । ୪୫ ।

ଅମ୍ବର ସନ୍ତୁଷ୍ଟ— ନୟନ ତଥାପି
ହରିଯାନ୍ତି ବୋଲି କ୍ଳେଶ,
ନ ଜାଣନ୍ତି, ସଦା ହରିଙ୍କ ଦର୍ଶନୁ
ନ ଇଚ୍ଛେ ମନ ବିଶ୍ଳେଷ । ୪୬ ।

ଅରୂ୍ୟଢ ସଙ୍ଗରେ ଗତମାନସର
ଅପେକ୍ଷାରେ ନାରୀଗଣ,
ଶୂନ୍ୟ ହୃଦୟରେ ଶବପନ୍ଥ ପ୍ରାୟ
ମାର୍ଗ କରନ୍ତି ଲୋଚନ । ୪୭ ।

ନେତ୍ର-ଅଞ୍ଜଳିରେ ହରିରସପାନେ
ଭାର ହେଲା ନିଜ ଅଙ୍ଗ,
ସ୍ୱଗୃହକୁ ତହୁଁ ଅଳସେ ସଧୀରେ
ଗମିଲେ ଅଙ୍ଗନାସଙ୍ଗ । ୪୮ ।

ଗନ୍ଧଜଳେ ରେଣୁ— ହୀନ, ଧୂପଧୂମେ
ହୁଏ ରେଣୁର ବିଭ୍ରମ,
ପତାକା ବିଳମ୍ବି ସ୍ତମ୍ଭ, ପୁରବୀଥି
ହରି କଲେ ଅତିକ୍ରମ । ୪୯ ।

ବିନ୍ଦୁସରସୀରୁ ଆଣି ମଣିଶିଳା
ମୟ ନିର୍ମିତ ଭବନେ,
କୀତସୁରସଦ୍ମ ସଭାରେ ଶ୍ରୀହରି
ପ୍ରବେଶ ଆନନ୍ଦମନେ । ୫୦ ।

ଗଗନସ୍ପର୍ଶୀ କଳଧୌତ ଶୁଭ୍ର
ଶିଳା ବେଷ୍ଟିର କାନ୍ତିରେ,
ନିଶାରେ ଇନ୍ଦୁ କି ପଡ଼ନ୍ତି ତହିଁରେ
ଦୁଗ୍ଧସିନ୍ଧୁର ଭ୍ରାନ୍ତିରେ । ୫୧ ।

ନୀଳମଣିଦ୍ୱାରି ନିର୍ମିତ ଭବନ
ପଦ୍ମରାଗେ ଭୂମିତଳ,
ଦିଶେ ଜାମଦଗ୍ନ୍ୟ ପିତୃତର୍ପଣର
ସରିତ, ଯୁକ୍ତଶୈବଳ । ୫୨ ।

ସ୍ଫଟିକଶିଳାରେ ନିର୍ମିତ ଭବନ
ନିଶାରେ ଚନ୍ଦ୍ରମାକର,
ପଡନ୍ତେ ଏକତା, ଜନେ ଅତିକ୍ରମି
ପୁଣି ସଞ୍ଚାଳନ୍ତି କର । ୫୩ ।

ଇନ୍ଦ୍ରନୀଳମଣି— ଗୃହ ସମୀପରେ
ଶଶାଙ୍କ ଦେବାରୁ ପାଦ,
ପଦ୍ମିନୀ ଦୋଷିକା ନାଶକରେ ଗୃହ
ଉପାଂଶୁ୧ କରି ବିବାଦ । ୫୪ ।

ନବ ସଙ୍ଗମରେ ସପାଳଭଞ୍ଜୀ
ଅଭିମୁଖେ ନାରୀଗଣ,
ଯେ ସଭାଭିତରେ ଶତ ପ୍ରତିମାଙ୍କୁ
ଦେଖି ଅନନ୍ଦିତମନ । ୫୫ ।

ମରକତମଣି ନିର୍ମିତ ଗୃହରେ
ତୃଣ ଭ୍ରବ ମୃଗଗଣ,
ରସନା ସ୍ପର୍ଶରେ କବଳନ୍ତି ତାହା
ଜନେ ଦେଖି ହର୍ଷମନ । ୫୬ ।

ସଭା ଉପାନ୍ତରେ ତରୁ ଅଲବାଲ
ଜଳ ଦର୍ପଣ ଉପରେ,
ସମୂଳ ସପତ୍ର ସ୍ପଷ୍ଟ ଦିଶେ ତହିଁ
ବିପଯ୍ୟସ୍ତ, ଦର୍ଶନରେ । ୫୭ ।

ଉରଗେନ୍ଦ୍ର ମୂର୍ଦ୍ଧା— ରତ୍ନ ସହୋଦର
ଜଳଦ ଗର୍ଜେ ସତ୍ୱର,
ଗର୍ଜନେ ବୈଦୁର୍ଯ୍ୟ— ଜାତ, ସଭାତଳ
ବୈଦୁର୍ଯ୍ୟେ ସୁନ୍ଦରତର । ୫୮ ।

ସଲିଳରେ ପୂର୍ଣ୍ଣ ସ୍ଫଟିକ ଆଧାର
ସ୍ଥଳ ବୋଲି ସଭାତଳେ,
ସୁଯୋଧନଙ୍କର ପତନେ, ଭୀମାଦି
ହସିଲେ ନୃପ ସକଳେ । ୫୯ ।

---

୧ । ଉପାଂଶୁ—ଅଂଶୁପାଳିରେ, ଏକାନ୍ତେ ।

ଇନ୍ଦ୍ରନୀଳମଣି— ଦ୍ୱାର ସନ୍ନିହିତ
ହୋଇଥିବାରୁ ବଶତ,
ଅଜ୍ଞଜନେ ଜଳ— ଭ୍ରମେ କଟିଦେଶୁଁ
ବସନ ଅବତାରନ୍ତି । ୬୦ ।

ଭାର୍ଗବ ଶଶାଙ୍କ ଉଦୟ ଶୈଳରୁ
ନଭଃ ଅଭିମୁଖ ପରି,
ସଭା ଅଭିମୁଖେ ରଥୁ ଉତ୍ତୁରିଲେ
ଆନନ୍ଦେ ପାଣ୍ଡବ ହରି । ୬୧ ।

ରଥୁ ଅବତରି ଆସ ଆସ ବୋଲି
ନୃପ ଡାକିଲେ ଆଦରେ,
ଶ୍ୱେତମଣି ଅଂଶୁ— ଉଜ୍ଜ୍ୱଳ ସଭାରେ
ହରି ପ୍ରବେଶିଲେ ଖରେ । ୬୨ ।

ପ୍ରବେଶି ଶ୍ରୀହରି ଦେଖିଲେ ସୁବର୍ଣ୍ଣ-
ଇଷ୍ଟକନିର୍ମିତ ସଦ୍ମ,
ମଣିକିରଣରେ ହସେ, ତୁଚ୍ଛ ବୋଲି
ଅମରଗଣଙ୍କ ସଦ୍ମ । ୬୩ ।

ଉଦୟଗିରିରେ ଚନ୍ଦ୍ର ଦିନକର
ଯୁଗପତ ବିରାଜିତ,
ପରାୟ ସଭାରେ ରୁଚିର ଆସନେ
ବସିଲେ ନୃପ ଅଚ୍ୟୁତ । ୬୪ ।

ନିଦାଘସନ୍ତପ୍ତ— ଅଙ୍ଗ ବାତେ ଯଥା
ପୟୋଧି ଶଶାଙ୍କେ ଯଥା,
ଦୁଃଖହାରିକୃଷ୍ଣ— ପ୍ରବେଶେ ଆନନ୍ଦ
କୁରୁକୁଳ ହେଲେ ତଥା । ୬୫ ।

ବିଳାସ ଲସିକ— ବିଳାସିନୀ ଜନେ
ଅନବଦ୍ୟ ଲୟ ତାନେ,
ଉଦ୍ଧତ ନର୍ତ୍ତନ ଆରମ୍ଭିଲେ ତହୁଁ
ମଧୁର ସଙ୍ଗୀତଗାନେ । ୬୬ ।

ଅଚ୍ୟୁତ ଗୃହକୁ ଆଗମନ ହେତୁ
ଆନନ୍ଦେ ଧର୍ମନନ୍ଦନ,
ନଗରେ ଉତ୍ସବ କରାଇଲେ, ସର୍ବେ
କରନ୍ତି କୃଷ୍ଣଦର୍ଶନ । ୬୭ ।

ସକଳ ସ୍ୱଜନ ନାମ ବଂଶ ହିତ
ବାର୍ତ୍ତା୧ ପଚାରିଲେ ସର୍ବ,
ସର୍ବଅଧୀଶ୍ୱର ହେଲେହେଁ ସୁଜନ
ନ କରଇ କେବେ ଗର୍ବ । ୬୮ ।

ଶ୍ରୀପତି ନୃପତି ମନୁଷ୍ୟଲୋକର—
ଦୁର୍ଲଭ କଥାମୃତ କରି ପାନ,
ନୂତନତା ବୃଦ୍ଧି— ହେଲା ବେଳୁଁ ବେଳ
ଦୁହେଁ ଦୁହିଙ୍କି କଥାରେ ସମାନ । ୬୯ ।

---

୧ । ବାର୍ତ୍ତା—ଖବାମ[illegible]



# ଚତୁର୍ଦ୍ଦଶ ସର୍ଗ

ସାଧୁବାଦନୃପ ଯଜ୍ଞକର୍ମେ ମନ ଦେଇ ପୁଣର,
ସ୍ନେହ ଦୃଷ୍ଟିଭରେ ଶାଣ୍ଡିଦ ହରିଙ୍କି ଭାଷିଲେ ଗିର । ୧ ।

ନ ହୁଏ କପିତ ପ୍ରିୟା ବାକ୍ୟେ ଅନ୍ୟ ବକ୍ତାର ଲଜ୍ଜା,
ନ ତବ ସ୍ତୁତରେ ବ୍ରୀଡ଼ା ହୁଏ, ତବ ମନରେ ଲଜ୍ଜା । ୨ ।

ମିଥ୍ୟାସ୍ତବେ ଜନେ ସନ୍ତୋଷନ୍ତ ଏହା ଶରୀର-ଗୁଣ,
ସ୍ତୋତ୍ରଯୋଗ୍ୟ ତୁମ୍ଭେ ମିଥ୍ୟା ସ୍ତବ ତୋଷେ ନୁହ ନିପୁଣ । ୩ ।

ଜନ ତବ ମିଥ୍ୟା ସ୍ତବ କଲେ ମଧ୍ୟ ନ ମିଥ୍ୟାବାଦୀ,
ତୁମ୍ଭେ ସର୍ବଗୁଣ ସର୍ବ ଅଛୁ ତବ ହୁଅନ୍ତେ ଅନାଦି । ୪ ।

ଈଶ୍ବର ! ଅଛୁ ଏ ଭାରତବର୍ଷ ମମ ବଶରେ,
ଏ ବିଭୂତ ତବ କୃପାର ମହିମା ଅବନୀଶରେ । ୫ ।

ଯଜ୍ଞ କରିବାକୁ ଇଚ୍ଛା ଅଛୁ ପ୍ରଭୋ ! କର କରୁଣା,
ତୁମ୍ଭେ ମୂଳବୀଜେ ଧର୍ମ ତରୁତାରେ ନ ହେବ ଊଣା । ୬ ।

ଧାନ୍ୟ ରଖି ଅଛେ କୃଷୀବଳ ଯୂଳ— ଲାଗି ପବନ,
ଯଜ୍ଞକାରି ମମ ତବ ବନା ଏ କ ଉପକରଣ । ୭ ।

ମମ କ୍ରତୁ ହେବ ନିର୍ବିଘ୍ନ ନିର୍ଦ୍ଦୋଷ ତବ କୃପାରେ,
ମୋ ଭାଗ୍ୟ, ବାସର ଶୋଭନ୍ତି ନିକଟେ କେ ତେଜ୍ଜପାରେ । ୮ ।

ସ୍ୱାପତେୟ୧ ପାଇ ଧର୍ମରେ ପାଳନ ପରିବର୍ଦ୍ଧନ,
କରୁଛି, ତା ଦେବି ବିପ୍ରାନଳେ ତୁମ୍ଭେ ନିଅ ବନ୍ଦନ । ୯ ।

ସୋମପାୟୀ ତୁମ୍ଭେ ଅବଭୃଥ୨ ସ୍ନାନେ କର ହବନ,
ସର୍ବେ ମୋ ବାଞ୍ଛିତ କରାଇବ ପ୍ରଭୋ ! ଜଗଜ୍ଜୀବନ । ୧୦ ।

ଭବତ କୃପାରୁ ଲବ୍ଧଧନେ ଯାହା ଇଚ୍ଛା ତା କର,
ଜଗତଜନ୍ତୁର ଶାସକ ! ହେ ମୁଧଁ ଅଶ୍ରବଙ୍ଗ ନର । ୧୧ ।

---

୧ । ସ୍ୱାପତେୟ—ଧନ । ୨ । ଅବଭୃଥ—ଯଜ୍ଞ । ୩ । ଅଶ୍ରବ—ବଚନେସ୍ଥିତ ।

ଈଦୃଶ କହିବା ନୃପଙ୍କୁ, ସକଳ— ନୃପ ଅଗରେ,
ଦନ୍ତ ଶୁଭ୍ରାଂଶୁରେ ଅଚ୍ୟୁତ କହିଲେ କୋମଳସ୍ୱରେ । ୧୨ ।

ଅଧୁନା ଭବତ ନୀତତେଜୋବଳେ ନୃପେ ବଜ୍ଞତ,
ପଥ୍ୟରେ ନୀରୋଗ ହେଲେ କି ବୈଦ୍ୟର ଗୁଣ ଶୋଭିତ । ୧୩ ।

ଭବାନ ସୁରଜା ଥିବା ସ୍ଥଳେ କିଏ କରିବ ଯାଗ,
ଶ୍ରୀବରାହ ବିନା ଉଦ୍ଧାରେ କେ କ୍ଷମ ପୃଥିବୀ ଭାଗ । ୧୪ ।

ଦୁଷ୍କର କାର୍ଯ୍ୟରେ ଅଙ୍ଗାଦ୍ୱୟ ମୋତେ ଧର୍ମନନ୍ଦନ,
ତବ ଅଙ୍ଗୀକର ଅର୍ଜ୍ଜୁନରୁ ମୋତେ ନ ମଣ ଅନ୍ୟ । ୧୫ ।

ଯେ ନୃପ ଏ ଯଜ୍ଞେ ଭୃତ୍ୟବତ ନ ବା କର୍ମ୍ମ କରିବ,
ଜଗତର ବନ୍ଧୁ ଏ ଚକ୍ର କବନ୍ଧ ତାକୁ [illegible] । ୧୬ ।

ତୁମ୍ଭେ ଯେବେ ଥିଲେ ମୋ ସର୍ବ ସମ୍ପଦ ବୋଲି ମୋଦରେ,
ନିଗଦି ହରକ୍ଷି ନୃପ ଯଜ୍ଞକର୍ମେ ଲାଗିଲେ ଖରେ । ୧୭ ।

ଚନ୍ଦ୍ରକଳାଧାରୀ ସର୍ବପାପହାରୀ ବିମଳ ଜଳେ-
ସ୍ନାତ, ଅଷ୍ଟମୂର୍ତ୍ତି ଅଷ୍ଟମୀରେ ସୋମେ— ଦୀକ୍ଷିତ ବଳେ । ୧୮ ।

ହୋମା[illegible] କର୍ମ୍ମରେ ସାଂଖ୍ୟ ପୁରୁଷର ତୁଲ୍ୟତା ଧରି,
ଅନ୍ତଃକରଣରେ ମହୀପତି ହେଲେ ଋତ୍ୱିକ ପରି । ୧୯ ।

ମୀମାଂସା ଶାସ୍ତ୍ରଜ୍ଞ ଯଜନ କର୍ମିଙ୍କ ସୁଉଚ୍ଚାରଣେ,
ଦେବତାଙ୍କ ପାଇଁ ପଶୁ ପୁରୋଡାଶ ଦେଲେ ଯାଜନେ । ୨୦ ।

ସାମବେଦେ ସପ୍ତ— ସ୍ୱରଭେଦେ କରି ବିନ୍ୟାସ କରି-
ଗାଇଲେ, ଋକ୍ ଯଜୁଃ ଅଧ୍ୱର୍ଯ୍ୟୁ ସୁହୋତା ବିଭୁ ସୁମରି । ୨୧ ।

ଦର୍ଭକାଞ୍ଚୀ ପିନ୍ଧି ଯଜମାନପତ୍ନୀ ଅଜ୍ୟ ଲୋକନ-
ପରେ, ଗାର୍ହପତ୍ୟ— ଅଗ୍ନିରେ ଋତ୍ୱିକେ କଲେ ହବନ । ୨୨ ।

ସେ ଯଜ୍ଞକର୍ମ୍ମରେ ପ୍ରୟୋଗକୁଶଳ ଋତ୍ୱିକଗଣ,
ବିଭକ୍ତି ସହିତେ ବେଦମନ୍ତ୍ର କଲେ ସୁଉଚ୍ଚାରଣ । ୨୩ ।

ସମାସେ ସାଦୃଶ୍ୟ ହେବାରୁ ସଂଦେହେ ଋତ୍ୱିକମାନେ,
ବେଦ ଶାସ୍ତ୍ରବିଜ୍ଞ— ସମାସ ବିଗ୍ରହେ ରଚିଲେ ତାନେ । ୨୪ ।

ଚଞ୍ଚଳ ରସନା— ଘୃତ ପ୍ରଭାବରେ ହସିଲା ପ୍ରାନ୍ତ,
ପ୍ରାଜ୍ୟ ଅଜ୍ୟ, ବହ୍ନି ଲେହନ କଲେ ତା ବଢ଼ାଇ କାନ୍ତି । ୨୫ ।

ମନ୍ତ୍ର ପବିତ୍ରିତ    ହବ ଖାଇ ବହ୍ନି    ପ୍ରକାଶ ବର୍ଣ୍ଣ,
ଅତି ସମୁଜ୍ଜ୍ୱଳ    ନ ହୋଇ ଦଶିଲେ    ଅରୁଣବର୍ଣ୍ଣ । ୨୬ ।

ଶତଶିଖା ଟେକ    ବହ୍ନି, ହବ ଯାହା    କଲେ ଦହନ,
ସେ ସଙ୍ଗେ ଜନଙ୍କ    ପାପୌଘଙ୍କୁ ଭସ୍ମ    କଲେ ବହନ । ୨୭ ।

ଦଗ ଧୂମ୍ରବର୍ଣ୍ଣ    କରି ହୋମଅଗ୍ନି    ଉଠି ଊର୍ଦ୍ଧ୍ୱରେ,
ଦେବତାଙ୍କୁ ପ୍ରିୟ—    କହିବାକୁ ଦୂତ    ଯାଏ ସ୍ୱର୍ଗରେ । ୨୮ ।

ନିର୍ଜିତ ଅର୍ଣ୍ଣବ—    ମନ୍ଥନ ଅମୃତ    ଆଜ୍ୟ ସ୍ୟନ୍ଦନ,
ଦେବେ ଅଗ୍ନି ହୁତ    ବଳମୁଖୁ ଦୁଃଖେ    କଲେ ସହନ । ୨୯ ।

ଦେବେ ନିତ୍ୟାହୁତ    ହେବାରୁ ଦ୍ୟୁନାରୀ    ପ୍ରୋଷିତ ଦୁଃଖେ,
ନ ବାନ୍ଧନ୍ତି ବେଣୀ    ପାରିଜାତ ପୁଷ୍ପେ    ମନବିମୁଖେ । ୩୦ ।

କ୍ରତୁରେ ବିବୁଧେ    କରିବାରୁ କ୍ଷିପ୍ର    ହବିପ୍ରାଶନ,
ଯୁଦ୍ଧରେ ଉଦ୍ଧତ    ଦୈତ୍ୟଙ୍କୁ କରନ୍ତି    ବଳେ ମର୍ଦ୍ଦନ । ୩୧ ।

ରାଜସୂୟ ଯଜ୍ଞେ    କୁତ୍ରାପି ସଦୋଷ    ନ ହେଲା କର୍ମ,
ନୃପଧନ, ସନ୍ଧି—    ବୃଦ୍ଧି ପରସ୍ପର    ସ୍ପର୍ଦ୍ଧିତେ ଶର୍ମ । ୩୨ ।

ଦକ୍ଷିଣାର୍ହ ଦ୍ୱିଜ    ପଂକ୍ତିପାବନଙ୍କୁ    ପଂକ୍ତି କ୍ରମରେ-
ଦେଖି, ନୃପ ଯଜ୍ଞ—    ଉକ୍ତ ଦକ୍ଷିଣାକୁ    ଦେଲେ ମୋଦରେ । ୩୩ ।

ସତ୍‌କ୍ରିୟାରେ ଶୁଦ୍ଧ    ନୃପ ଭାବିଫଳ    ମନେ ବିଚାରି,
ଦ୍ୱିଜକ୍ଷେତ୍ରେ, ଧନ—    ବୀଜ ବୁଣିଲେ ସେ    ବୁହାଇ ବାରି । ୩୪ ।

ବେଦରେ୧ ଦ୍ୱିଜଙ୍କୁ    ଦକ୍ଷିଣାରେ ତୋଷି    ହେଲେ ଧବଳ,
ନିଷ୍ପାପ ନୃପଙ୍କ—    ଠାରୁ ପାଇ ଦ୍ୱିଜ    ନିଜେ ପବିତ୍ର । ୩୫ ।

ପାକଶାସନଙ୍କ    ସମାନ ଶାସନ    ଲେଖ୍ୟ-ଶାସନ୨,
ଯାବତ ଚନ୍ଦ୍ରାର୍କ    ନୃପ ଦ୍ୱିଜେ ଭୂମି    କଲେ ଅର୍ପଣ । ୩୬ ।

ଅଶ୍ରୁତ ବିରୋଧି    ଅବର୍ଣ୍ଣସଙ୍କର    ପୁସ୍ତକ ସମ,
ଦ୍ୱିଜଙ୍କୁ ପ୍ରଦାନ—    କାଲରେ ଶୁଣିଲେ    ନୃପଉତ୍ତମ । ୩୭ ।

ଅବାରିତାତିଥି    ଆଶ୍ରମନିୟନ୍ତା    ଧର୍ମନନ୍ଦନ,
ଯାଗଦର୍ଶକଙ୍କ    ସଭାରେ ଅକ୍ଳାନ୍ତ    ହରଷମନ । ୩୮ ।

---

୧ । ବେଦରେ — ପଞ୍ଚବେଦରେ ।
୨ । ଲେଖ୍ୟଶାସନ — ଯାବତ ଚନ୍ଦ୍ର ଦିବାକର ଭୂମିଦାନ ଦେବାପତ୍ର ।

ଖୋଜନ୍ତେ ଦୁର୍ଲଭ ଯେଉଁ ମହାରତ୍ନ ତା ନୃପେ ଧର,
ଉପାର୍ଜ୍ଜନ ପାଇଁ ସମସ୍ତ ଖୋଜନ୍ତି ଇତର ପର । ୩୯ ।

ଏକ ନୃପଧନ କ୍ରତୁସମାପକ ଅଟେ ନିଶ୍ଚୟ,
କିନ୍ତୁ ତ୍ୟାଗୀ ନୃପ ସର୍ବ ନୃପଧନ କଲେ ସଞ୍ଚୟ । ୪୦ ।

ନୃପ ଉପାର୍ଜନ ସମ୍ପଦ ପ୍ରଦାନେ ଆନନ୍ଦମନା-
ହେଲେ, କୋଷଗୃହେ ସମ୍ପାଦନେ ନୃପ ଅଭିରମନା । ୪୧ ।

କେଉଁ ନୃପତିଙ୍କି ତୁଚ୍ଛକାର୍ଯ୍ୟେ ନୃପ ନିଯୋଗ କଲେ,
ଅନ୍ୟ ନୃପେ ତାଙ୍କୁ ଭାଗ୍ୟବାନ ବୋଲି ସମ୍ମାନ କଲେ । ୪୨ ।

ଆଦ୍ୟ କୋଳ[୧]ଦ୍ୱାରା ଉଦ୍ଧୃତ ମେଦିନୀ ପୁଣି କର୍ଷିତ-,
ଦୁଷ୍ଟ ଦ୍ୱାରା, ଏବେ ନରପତି ଦ୍ୱାରା ସୁଖ ଶାସିତ । ୪୩ ।

ବହୁଳ ଗୁଣରେ ଅବକୁତମନା ଧର୍ମତନୟ,
ଶତ୍ରୁ ମିତ୍ର ସମେ ଅର୍ଥିଠାରେ କଲେ ସମ୍ପଦ ବ୍ୟୟ । ୪୪ ।

ଅର୍ଥିଙ୍କୁ ଅବଜ୍ଞା ନ କରି ମାଗିଲା— ମାତ୍ରକେ ଧନ,
ଅନଳ୍ପ ଅଭୀଷ୍ଟ ଅବଲମ୍ବେ ଦେଲେ ଅଶ୍ଳାଘାମନ । ୪୫ ।

ଦାନଶୂର ଅଗ୍ରେ ନିର୍ଗୁଣର ଇଚ୍ଛା ନୋହେ ବିଫଳ,
ବର୍ଷୁକ ଅମ୍ବୁଦ ଉଷରସ୍ଥଳେ କି ନ ବର୍ଷେ ଜଳ । ୪୬ ।

ଗୁଣପ୍ରେମିନୃପ ବିଶେଷ ଗୁଣରେ ପ୍ରେମ ବିଶେଷ,
ନ କଲେ ଦାନେଚ୍ଛୁ ଗୁଣୀ ଅଗୁଣୀରେ ପ୍ରଭେଦ ଲେଶ । ୪୭ ।

ଦର୍ଶନ ମାତ୍ରକେ ଅର୍ଥିଙ୍କୁ ଯଥେଚ୍ଛ ସମ୍ପଦ ଦାନ
କରି, ବୋଲି ନୃପ ସଦା କରୁଥାନ୍ତି ବାକ୍ୟ ପ୍ରଦାନ । ୪୮ ।

ଅର୍ଥକାମୀ ଅର୍ଥ ନ ଲଭି, ବୁଭୁକ୍ଷୁ ବିନା ଭୋଜନେ,
ରୋଗୀ ଚିକିତ୍ସିତ ବିନା, ନ ଫେରିଲେ ଇଚ୍ଛୁକ ଜନେ । ୪୯ ।

ସଂସ୍କୃତ ପ୍ରାକୃତ ନାନାବିଧ ରସ ପାନ ଭୋଜନ-
କରି, ଭାବଶୁଦ୍ଧି ନାଟକ ପର୍ଯ୍ୟନ୍ତ ମୋଦିତ ଜନ । ୫୦ ।

ଦୁର୍ଦ୍ଦାନ୍ତ-ଦମନ— ସମର୍ଥ ହସ୍ତଙ୍କି ପାଇ ଆଶ୍ରୟ,
ଦାନ[୨] ହୋମ[୩]ଯାଗ[୪] ନିର୍ବିଘ୍ନେ ନୃପତି କଲେ ଅକ୍ଷୟ । ୫୧ ।

---

୧ । କୋଳ — ବରାହ । ୨ । ଦାନ—ନିଜସ୍ୱ ନିବୃତ୍ତ ପରସ୍ୱ ଉତ୍ପାଦନ ଦାନ ।
୩ । ହୋମ — ଦେବତା ଉଦ୍ଦେଶ୍ୟରେ ଅଗ୍ନିରେ ହବି ପ୍ରକ୍ଷେପ ହୋମ ।
୪ । ଯାଗ — ଦେବତା ଉଦ୍ଦେଶ୍ୟରେ ।

ସୋମଯାଜକଙ୍କର କେବଳ ଶ୍ରୀହରି ଏକ ସହାୟ,
ଅଙ୍ଗୁଳରେ ମାପ ଯଜ୍ଞଭୂମି ଉଚ୍ଚ ଯୂପ ପରାୟ । ୫୨ ।

ଧର୍ମାତ୍ମକ ଯଜ୍ଞ ଅନୁଷ୍ଠାନ ଦେଖି ଶାନ୍ତନୁସୁତ,
ଧର୍ମଶାସ୍ତ୍ରମତେ ସଭ୍ୟଙ୍କୁ କହିଲେ କୌରବନୁତ । ୫୩ ।

ଗୁଣୀ ଦୋଷ ଜ୍ଞାନୀ କରଣୀୟେ କଦ୍ଧ୍ର ନ କରେ ଭ୍ରମ,
ଶିଷ୍ଟାଚାରମତେ ଗୁରୁଙ୍କ ଜିଜ୍ଞାସା ଏ ଅଟେ କ୍ରମ । ୫୪ ।

ସ୍ନାତକ ଋତ୍ୱିକ ଅଭୀଷ୍ଟ ଜାମାତା ଗୁରୁ ଭୂପତି,
ପୂଜାର୍ହ ଏ ଷଡ଼ ସମସ୍ତଙ୍କ ଏବେ ସଭ୍ୟ ସଙ୍ଗତି । ୫୫ ।

ପରଲୋକ ଜନ୍ତୁ ବେଦମନ୍ତ୍ର ବଳେ ବାରି ତା' ପଦ,
ବ୍ରାହ୍ମଣ ମହାତ୍ମେ ମଖପୂର୍ଣ୍ଣ ତବ ଶୋଭେ ଏ ସଦଃ । ୫୬ ।

ହେ ପାର୍ଥ ! ଗୁଣିଙ୍କୁ ସମାନ ଭକ୍ତିରେ କର ପୂଜନ,
କିନ୍ତୁ ସର୍ବଶ୍ରେଷ୍ଠ ସର୍ବପୂଜ୍ୟ ଏକ ମନରେ ଗଣ । ୫୭ ।

ଭୂଦେବ ନୃଦେବ— ସଙ୍ଗମେ ସକଳ— ଗୁଣାଢ୍ୟ ହରି,
ପୂଜିତ ହୁଅନ୍ତୁ ସର୍ବାଗ୍ରେ ହେ ପାର୍ଥ ଦାନବଅରି । ୫୮ ।

ଦିତିଦନୁସୁତ— ବିନାଶୀ ଏହାଙ୍କୁ ମର୍ତ୍ତ୍ୟ ନ ମଣ,
ସର୍ବଅନ୍ତର୍ଯ୍ୟାମୀ ପରମାତ୍ମା ଅଂଶ ଏହାଙ୍କୁ ଗଣ । ୫୯ ।

ନାରଦାଦି ଯୋଗୀ ଅବାକ୍ୟମାନସ— ଗୋଚର ହରି-,
ବାକ୍‌ପଥାତୀତଙ୍କୁ ଧ୍ୟାନେ ନ ପାରନ୍ତି ଧାରଣ କରି । ୬୦ ।

ରଜଃ ସତ୍ତ୍ୱ ତମ ତିନିଗୁଣେ, ବ୍ରହ୍ମା ଅଚ୍ୟୁତ ହର,
ତ୍ରିବିଧ ଜଗତ ସର୍ଜନ ପାଳନ ସଂହାର-କର । ୬୧ ।

ଅନାଦି ସର୍ବଜ୍ଞ ପ୍ରାଣିଙ୍କ ସକାଶେ ମାନବ ତନୁ-
ଧରିଛନ୍ତି ସିନା, ଈଶ୍ୱର କଲ୍ମଷ ତେଜ ହେ ମନୁ । ୬୨ ।

ଭକ୍ତିମାନ ଜନେ ଭକ୍ତବତ୍ସଳଙ୍କୁ ସ୍ମରଣ କରି,
ତାଙ୍କ ଏ ସଂସାର କ୍ଲେଶପାରାବାରୁ ଯାଆନ୍ତି ତରି । ୬୩ ।

ଗ୍ରାମ୍ୟଭାବ ତେଜ ମୁମୁକ୍ଷୁ ନ— ନିବୃତ୍ତି ପାଇଁ,
ଯୋଗମାର୍ଗେ ପଡ଼ି ଏ ହରିଙ୍କି କଷ୍ଟେ ପାଆନ୍ତି ଯାଇ । ୬୪ ।

ପ୍ରାଣିଙ୍କ ଉତ୍ପତ୍ତି— ସଂହାର ସକାଶେ ସ୍ୱରୂପ କ୍ରମ,
ଅଜନ୍ମାବିନାଶୀ ତ୍ରିଲୋକଈଶ୍ୱର ହରିଙ୍କି ନମଃ । ୬୫ ।

ଜଗତସର୍ଜ୍ଜକ ପାଳକ ନାଶକ ସକଳକର୍ତ୍ତା,
କର୍ମରେ ନିର୍ଲିପ୍ତ ସର୍ବକଷ୍ଟହାତା ସକଳହର୍ତ୍ତା । ୬୬ ।

ଏହି ହରି ଆଦ୍ୟେ ଜଳସୃଷ୍ଟି କରି ବୀଜବପନ,
ହିରଣ୍ୟରୁ ବ୍ରହ୍ମା ବ୍ରହ୍ମାଣ୍ଡକୁ ତାଙ୍କୁ କଲେ ସର୍ଜ୍ଜନ । ୬୭ ।

ମନ୍ତ୍ରଣା ପରାୟୁ ମଧୁକୈଟଭଙ୍କ ଦୁର୍ଦ୍ଦାନ୍ତପଣେ,
ଅର୍ଣ୍ଣବଶାୟୀଙ୍କ ନିଦ୍ରାଭଙ୍ଗେ ନାଶ— ଗଲେ ତତ୍‌କ୍ଷଣେ । ୬୮ ।

ବେଦଗାନବନ୍ଧ ବ୍ରହ୍ମା ଥାଏ ସଦା ଭ୍ରମର ପର,
ଲକ୍ଷ୍ମୀମୁଖଇନ୍ଦୁ ସବଧେ ଯା ନାଭି— ପଦ୍ମେ ବିହର । ୬୯ ।

ସତ୍ୟବ୍ରତ ହୋଇ -ମାୟାବୀ, ସୁବୁଦ୍ଧି— ହୋଇ ବାଳକ,
ଜନ୍ମୀ, ଅଜ, ନବ, ପୁରାଣ ପୁରୁଷ ସିଦ୍ଧ, ପାଳକ । ୭୦ ।

ବରାହ ସ୍ୱରୂପେ ଅର୍ଣ୍ଣବ କଲ୍ଲୋଳ କରି ମହାନ,
ଦନ୍ତାଗ୍ରେ ଧରଣୀ ଧଇଲେ ଏ ହରି ସହଜେ ଜାଣ । ୭୧ ।

ବଜ୍ରରୁ କଠିନ ହିରଣ୍ୟକଶିପୁ ସୁବକ୍ଷସ୍ଥଳ,
କେଶରୀ ସ୍ୱରୂପେ ବିଦାରିଲେ ମୃଦୁ ନଖେ କେବଳ । ୭୨ ।

ଯେ ସିଂହ ମୂର୍ତ୍ତିର ନଖ ଅଂଶୁ ଯାଇ ଦିଗଗଜର,
କୁମ୍ଭରେ ପଡ଼ନ୍ତେ ଦିଶଇ ମୌକ୍ତିକ— ମାଳ ପ୍ରକାର । ୭୩ ।

ବିରୋଚନସୁତ ୧ ନିକଟରୁ ଭୂମି ନେବାକୁ ହରି,
ଅସିଲେ ମର୍ତ୍ତ୍ୟକୁ ଇନ୍ଦ୍ରଅନୁଜତା ସ୍ୱୀକାର କରି । ୭୪ ।

ଏ ବାମନ କେତେ ଭୂମି ନେବ ବୋଲି ଦାନବଗଣ,
ହସିବା ପୂର୍ବରୁ ଚନ୍ଦ୍ର ଅର୍କ କଲେ ଅତିକ୍ରମଣ । ୭୫ ।

ନଭସ୍ଥଳବ୍ୟାପୀ ଯେଉଁ ବାମନର ଏକଚରଣ,
ବଳି ମସ୍ତକରେ ସ୍ଥାପିତ ଇନ୍ଦ୍ରଙ୍କ ହର୍ଷକାରଣ । ୭୬ ।

ଅଳୀନୀଳଦୀର୍ଘ ହରିପଦ ଦେଖି ଅମରଗଣ,
ବୋଲନ୍ତି ଯମୁନା ଗଙ୍ଗା ହଂସି ଊର୍ଦ୍ଧ୍ୱେ କରେ ଗମନ । ୭୭ ।

ଅମୃତ ଭକ୍ଷଣେ ଶିରଶ୍ଛେଦେ ରାହୁ ହୋଇ କୁପିତ,
[illegible]ତିରମ୍ୟମୁଖ ସଦୃଶ ଚନ୍ଦ୍ରଙ୍କୁ କରେ ପୀଡ଼ିତ । ୭୮ ।

---

୧ । ବିରୋଚନସୁତ—ପ୍ରହ୍ଲାଦପୁତ୍ର, ବିରୋଚନପୁତ୍ର, ବଳି ।

ଅବନାଶିରୂପ ଅବନାଶିମୂର୍ତ୍ତି ବେଦ ସ୍ମରଣେ,
ଅବିରୋଧେ ଜାତ ଦତ୍ତାତ୍ରେୟ ନାମେ ବେଦୋଦ୍ଧାରଣେ । ୭୯ ।

ରେଣୁକାତନୟ ଅବତାରେ କ୍ରୋଧେ ଅର୍ଜ୍ଜୁନ ବନ,[୧]
କୁଠାର ଆଘାତେ ବାହୁ-ଶାଖାକୁଳ କଲେ ଛେଦନ । ୮୦ ।

ଦାଶରଥି ହୋଇ ଏ ହରି ଉଦ୍ଧତ ରକ୍ଷ ରାବଣ,
ବନାଶି ଲଙ୍କାରେ ଅଧିପେ ସ୍ଥାପିଲେ ସେ ବିଭୀଷଣ । ୮୧ ।

ଦେବ-ଶତ୍ରୁ-ନାଶେ ବ୍ରହ୍ମା ପ୍ରାର୍ଥନାରେ ଏବେ ଏ ହରି,
ବସୁଦେବରୂପୀ କାଶ୍ୟପପୁତ୍ରତା ଅଛନ୍ତି ଧରି । ୮୨ ।

ଜଗତରପତି ସୁରପ୍ରିୟ ହରି ଦଧିମନ୍ଥନ-
ପ୍ରାୟ, ଅବ୍ଧି ମନ୍ଥି ସୁର, ବଳ୍ଲବଙ୍କୁ କଲେ ତୋଷଣ । ୮୩ ।

ଯେ ହରି ଶତ୍ରୁରେ ପୀଡ଼ିତ ଦେବଙ୍କୁ ପରିପାଳନ-
କରନ୍ତି, ବାସବ ବାଦେ ସ୍ୱର୍ଗୁଁ ପାରି- ଜାତହରଣ । ୮୪ ।

ଚେଦି ନୃପତିର ଲଲାଟେ ଶମ୍ଭୁଙ୍କ ପରି ଲୋଚନ,
ହରି ବାତେ ଦୀପ— ପରି ନିର୍ବାପିତ ହେଲା ବହ୍ନନ । ୮୫ ।

କୋଳତ୍ୱେ[୨] ଗୋପତ୍ୱେ[୩] ପର ଦଂଷ୍ଟ୍ରା ଭୁଜେ ଯେ ଗୋମଣ୍ଡଳ,[୪]
ଉଦ୍ଧରିଲେ ହର ତୋୟମଗ୍ନ ଦୁଃଖୁଁ ପ୍ରକାଶି ବଳ । ୮୬ ।

ଦୂରୁ ଯେ ହରିଙ୍କି ଯଜ୍ଞେ ଯଜ୍ଞା ଅଜେୟ ସୁଆବାହାନ,
ଧନ୍ୟ ଧର୍ମସୁତ ପାଶେ ହରି କର ଅର୍ଘ୍ୟେ ପୂଜନ । ୮୭ ।

ଭୀଷ୍ମଉକ୍ତି ଶୁଣି ଯୁଧିଷ୍ଠିର ନୃପ
ଶ୍ରୀହରିଙ୍କି ମୋଦମନେ,
ସର୍ବ ନୃପଅଗ୍ରେ ଅର୍ଘ୍ୟ ପ୍ରଦାନିଲେ
ଧନ୍ୟବାଦ ଦେଲେ ଜନେ । ୮୮ ।

---

୧ । ଅର୍ଜୁନ — କାର୍ତ୍ତବୀର୍ଯ୍ୟ; ଅର୍ଜୁନବନ — କାର୍ତ୍ତବୀର୍ଯ୍ୟବାହୁ ସହସ୍ର ବନ ପରି ।

୨ । କୋଳ — ବରାହ, ୩ । ଗୋପ — ଗୋପାଳ, ଏହି ଦୁଇ ଅବତାରରେ, ବରାହ କୃଷ୍ଣାବତାରରେ;
୪ । ଗୋମଣ୍ଡଳ — ଗାଈ ସମୂହ ଓ ଭୂମଣ୍ଡଳକୁ ସମୁଦ୍ର ଓ ଇନ୍ଦ୍ର ବର୍ଷଣରୁ ଯଥାକ୍ରମେ ଦନ୍ତ ଓ ହସ୍ତରେ ରକ୍ଷା କରିଥିଲେ ।



# ପଞ୍ଚଦଶ ସର୍ଗ

ସଭାରେ ପାଣ୍ଡୁଙ୍କ ତନୟ
କଲେ ହରି ପୂଜନ,
ନ ସହିଲ ଚୈଦ୍ୟ ଦେଖି, କ
ସହେ ଈର୍ଷ୍ୟାପ୍ରବଣ । ୧ ।

ପୂର୍ବରୁ ହରଙ୍କ ସଙ୍ଗରେ
ଦ୍ୱେଷ ଥିଲ ତାହାର,
ଅପଥ୍ୟଦେହ-ଜ୍ୱରପର
ମନ୍ୟୁ ହେଲ ବାହାର । ୨ ।

ସମସ୍ତ ନୃପଙ୍କୁ ତର୍ଜନ—
କର କମ୍ପାଏ ଶିର,
ମୁକୁଟମଣି ରଶ୍ମିଜାଲ
ସେ କମ୍ପନେ ଅସ୍ଥିର । ୩ ।

କ୍ରୋଧେ ଅଶ୍ରୁ ତେଜେ ସ୍ୱେଦଜ
ଘର୍ମେ ଗଣ୍ଡମଣ୍ଡଳ,
ସ୍ୱେଦ-କର ଶୋଭେ ବିଧାରେ
ମତ୍ତଗଜ ଚଞ୍ଚଳ । ୪ ।

ଘର୍ମରେ ସ୍ୱେଦଜ ଚେଦପ
କ୍ରୋଧେ କମ୍ପାଏ କାୟ,
ପ୍ରଳୟ ଅର୍ଣ୍ଣବୁ ଉଥିତ
ଆଦ ଶୂକର ପ୍ରାୟ । ୫ ।

କଠିନ ଅଂସ ବାହୁଯୁଗ
ଶୈଳଶିଖର ପର,
କ୍ରୋଧେ ସଭାସ୍ତମ୍ଭ ଧଇଲ
ସଭା କମ୍ପନ କର । ୬ ।

କନକକେୟୁର ଦ୍ୟୁତିରେ
ପିଙ୍ଗ ବାହୁମଣ୍ଡଳ,
ଶିଖାପଟଳ ପ୍ରକାଶଇ
କିବା କ୍ରୋଧଅନଳ । ୭ ।

କୁଟିଳ ଭ୍ରୂକୁଟୀ ଭୀଷଣ
ଲଲାଟ ମୁଖ କାନ୍ତି,
ଭୂତାସ୍ୟ ନୟନ ପୁଣି କ
ବୋଲ୍ ମାନସେ ଭ୍ରାନ୍ତି । ୮ ।

କ୍ରୋଧବ୍ରେ ଅରକ୍ତନୟନ
ସଂଗ୍ରାମେ କର ମନ,
ନିଜସଖା ପର ଖଡ୍ଗକୁ
କରେ ଅବଲୋକନ । ୯ ।

ଶୈଳଶିଳା କଠିନ ଉରୁ—
ଦେଶେ କଠିନ କରେ,
ତାଡ଼ନ କରିବାରୁ ଭୀମ—
ନାଦ ଉଠିଲା ଖରେ । ୧୦ ।

ଏରୂପେ ଚୈଦ୍ୟ କ୍ରୋଧ ଦେଖି
ସଭାସ୍ଥ ସର୍ବଜନ,
ଧୀର ହେଲେ ମଧ୍ୟ ବହୁତ
ହେଲା ଚଞ୍ଚଳମନ । ୧୧ ।

ଭାବି ସଂଗ୍ରାମଫଳ ଯୋଗ
ନିର୍ଭୟେ ଚେଦିପତି,
ପ୍ରଥମେ କୋପକୁସୁମକୁ
ବାକ୍ୟେ ବିକାଶେ ଅତି । ୧୨ ।

ଜଳଦଗମ୍ଭୀରଗର୍ଜନ—
ବାକ୍ୟେ ସଭା କମ୍ପନ-,
କରି, କ୍ରୋଧେ କଲା ଚେଦିପ
ଶିଷ୍ଟ ଉଚ୍ଚାରଣ । ୧୩ ।

ହେ ପାର୍ଥ ! ସଭାରେ ଅପୂଜ୍ୟ
ଅଚ୍ୟୁତଙ୍କୁ ପୂଜନ,
କଲ, ସ୍ନେହରେ ନିର୍ଗୁଣଙ୍କୁ
ଗୁଣୀ ବୋଲଇ ଜନ । ୧୪ ।

ଅରାଜା ଅଚ୍ୟୁତଙ୍କୁ ଅର୍ଘ୍ୟ
ଦେଲ କି ଭାବି ମନେ,
କଲେ ନୃପବର୍ଦ୍ଧି ହବିକି
ଗ୍ରାମ୍ୟମୃଗ[1] ଅଶନେ । ୧୫ ।

ଅସତ୍ୟ କଥା ନ କହଇଁ
ବୋଲି ରଟି ଜଗତେ,
ହରି ଅର୍ଚ୍ଚନାର ଏ ନିନ୍ଦା
ଅସତ୍ୟ ସର୍ବମତେ । ୧୬ ।

ହେ ପାର୍ଥ ! ତବ ଧର୍ମରାଜ
ନାମ କହନ୍ତି ଜନେ,
ଅସତ୍ୟ ଅଟେ, ଅମଙ୍ଗଳ
ମଙ୍ଗଳ[2] ଭାବ ମନେ । ୧୭ ।

ହେ ପାର୍ଥ ! ହରିପୂଜା ଯେବେ
ତୁମ୍ଭ ଥିଲା ମନରେ,
କିପାଁ ନୃପତିଙ୍କି ଅଣିଲ
ତେବେ ନିମନ୍ତ୍ରଣରେ । ୧୮ ।

ଅଥବା ଧର୍ମରେ ଦୁର୍ବୋଧ
ମୂର୍ଖ ପାଣ୍ଡବମାନେ,
ଏ ବୃଦ୍ଧ ଭୀଷ୍ମ ଧର୍ମଭାବ
ଶୁଣି ନାହିଁକି କାନେ । ୧୯ ।

ହେ ଶାନ୍ତନୁସୁତ ! ଯାହାକୁ
ଅର୍ଘ୍ୟ କରିଅ ଦାନ,
ସେ କି ସ୍ନାତକ ? ବୃଥା ସ୍ତବ
କର ବନ୍ଦି ସମାନ । ୨୦ ।

---

୧ । ଗ୍ରାମ୍ୟମୃଗ—ଶ୍ୱାନ । ୨ । ମଙ୍ଗଳ—ମଙ୍ଗଳବାଚକଶବ୍ଦ ।

ନୃପଙ୍କୁ ତ୍ୟାଗକର ମୂଢ଼ !
ନୀଚ କୃଷ୍ଣରେ ରତ,
ନିମ୍ନଗାସୁତ ଯେଣୁ ତୁମ୍ଭେ
ନୀଚ ସ୍ୱଭାବ ସତ । ୨୧ ।

ହେ କୃଷ୍ଣ ! ନୃପଯୋଗ୍ୟ ପୂଜା
ତବ ସ୍ୱୀକାର ଭ୍ରମ,
ମୁଁ କଏ ଜାଣତ, ସ୍ମରଣ—
କର ସ୍ୱବଂଶକ୍ରମ । ୨୨ ।

ଅବଶ୍ୱାସ, ମଧୁଦୈତ୍ୟଙ୍କୁ
ନାଶି ମଧୁସୂଦନ,
ଦଣ୍ଡେ ମଧୁମକ୍ଷିକା ନାଶି
ମକ୍ଷିକାର ସୂଦନ । ୨୩ ।

ମଗଧପତି ପୀଡନରେ
ମୁଚୁକୁନ୍ଦ ଶରଣ,
ହେ ଦୁର୍ବଳ ! ବଳରାମଙ୍କ
ବଳେ ତୁମ୍ଭେ ଗଣନ । ୨୪ ।

ପ୍ରିୟସତ୍ୟ ବୋଲି ମିଥ୍ୟାରେ
ପ୍ରଜା ବଞ୍ଚନା କର,
ନଗ୍ନଜିତସୁତା ସତ୍ୟାର୧
ସଙ୍ଗେ ଯେଣୁ ବିହର । ୨୫ ।

ସମରେ ଅରିଚକ୍ର୨ ଭୟେ
ନିଜ ଚକ୍ର୩ ନ ଧର,
ବୃଥାରେ ଲୌହଖଣ୍ଡ ବୋହି
ଚକ୍ରଧରାଖ୍ୟ ପର । ୨୬ ।

ରାଜଲକ୍ଷ୍ମୀହୀନ୪ ତଥାପି
ବନ୍ଧୁଗଣ ସ୍ନେହରେ,
ଶ୍ରୀପତି ବୋଲନ୍ତି ସମୁଦ୍ର—
କନ୍ୟା ବିବାହ ପରେ । ୨୭ ।

---

୧ । ସତ୍ୟା — ସତ୍ୟଭାମା, ସତ୍ୟାଙ୍କ ପ୍ରିୟ ହେବାରୁ ପ୍ରିୟସତ୍ୟ, ସତ୍ୟ କହୁ ପ୍ରିୟସତ୍ୟ ନୁହ । ୨ । ଅରିଚକ୍ର — ଶତ୍ରୁ ସୈନ୍ୟ । ୩ । ଚକ୍ର — ସୈନ୍ୟ ।
୪ । ଯଯାତିଶାପରୁ ଯଦୁମାନଙ୍କ ରାଜ୍ୟାଧିକାର ନାହିଁ ।

ଶତ୍ରୁ ଅଭିମୁଖେ ସମରେ
ନାହିଁ ତ ପରାକ୍ରମ,
ବକ୍ରମୀ, ଇନ୍ଦ୍ରଜାଲ ପରି
ଗଗନେ ପଦକ୍ରମ । ୨୮ ।

ଭୂମିଧାରଣ କରିଥିଲ
ବୋଲି କହନ୍ତି ଜନେ,
ମଥୁରାଭୂମି ଶତ୍ରୁ¹ ନେଲା
ହେଲା ନାହିଁ କି ମନେ । ୨୯ ।

ଗୋବର୍ଦ୍ଧନଶିଳା ଧାରଣେ
ରଚାଇଲ ସର୍ବତ୍ର,
ଏ ନୋହେ କି ହାସ୍ୟ, ଶ୍ରୀକୃଷ୍ଣ
ଉଠାଇଲେ ପର୍ବତ । ୩୦ ।

ପାପାଗ୍ରର ହେତୁ ନରକ²—
ଜୟ କରି ନ ପାରି,
ନରକବିଜୟୀ ବିଖ୍ୟାତ
ନରକାସୁର ମାରି । ୩୧ ।

ହେ ନିର୍ଗୁଣ ! ସକଳ ଦୋଷେ
ତବ ଶରୀର ପୂର୍ଣ୍ଣ,
ସର୍ବଗୁଣତ୍ୟାଗେ ନିର୍ଗୁଣ
ତ୍ୟାଗ ହୁଅଇ ତୂର୍ଣ୍ଣ । ୩୨ ।

ହେ ଜାଲ୍ମ ! ତବ ନିର୍ଗୁଣର
ପୂଜା ସୁହାସ୍ୟକର,
କେଶହୀନ ଶିରେ କଙ୍କତ³
କୁଶମ ଗୃନ୍ଥକର । ୩୩ ।

ହେ ନୃପସିଂହମାନେ ! ଦେଖ
ପୃଥାସୁତ ଅନୀତ,
ତୁମ୍ଭମାନଙ୍କୁ ତେଜି କଲେ
ଶୃଗାଲ ଅପଚିତ⁴ । ୩୪ ।

---

୧ । ଶତ୍ରୁ—ଜରାସନ୍ଧ । ୨ । ନରକ—ନରକ୍ଷ ।
୩ । କଙ୍କତ—କଙ୍କତକା, ପାନିଆ । ୪ । ଅପଚିତ—ପୂଜା ।

ହେ ନୃପଗଣ ! ଏହି କୃଷ୍ଣ
ବୃଷ ଅଛନ୍ତି ମାରି,
ଗୁଆଳ, ରାଜପୂଜାଯୋଗ୍ୟ
କାହିଁ ଅପୁଣ୍ୟକାରୀ । ୩୫ ।

ସ୍ତନ୍ୟପ୍ରଦା ହେତୁ ପୂତନା—
ନାରୀ ମାତାର ସମ,
ବଧିଲେ କେବଳ ସ୍ତ୍ରୀହନ୍ତା
ନୁହନ୍ତି, ମାତାଘ୍ନ । ୩୬ ।

ଶକଟମର୍ଦ୍ଦନ ପାଦପ—
ଭଙ୍ଗ[1] ଶୈଳଧାରଣ[2],
ବିସ୍ମୟକର ଏ ନୁହଇ
ଯେବା ସ୍ଥିର ଚେତନ । ୩୭ ।

ଏ ନରପଶୁ କୃଷ୍ଣ, କଂସ—
ଧେନୁ ପାଳନ କରି,
ସ୍ୱାମି ବଧ କଲେ ନୃଶଂସ
ପାପ ମନେ ନ ଧରି । ୩୮ ।

ଈଦୃଶ ନିଷ୍ଠୁର ବଚନ
କହି ଚେଦିପ ରୋଷେ,
କରତାଳେ ନରକାତ୍ମଜ
ସଙ୍ଗେ ହସିଲା ତୋଷେ । ୩୯ ।

ମାଧବ ଚୈଦ୍ୟ-କଟୁବାକ୍ୟେ
ନ ଲଭିଲେ ବିକୃତି,
ଦୁର୍ଜନ କଥାରେ ନ ଟଳେ
ସୁଜନର ପ୍ରକୃତି । ୪୦ ।

ହରିଙ୍କ ସଙ୍କେତେ ଅକ୍ରୋଧ
ଯଦୁନୃପତିଗଣ,
ପ୍ରଭୁ ଚିତ୍ତ ଅନୁବର୍ତ୍ତନ—
କାରୀ ହୁଏ ସୁଜନ । ୪୧ ।

---

୧ । ପାଦପଭଙ୍ଗ — ଯମଳାର୍ଜୁନଭଞ୍ଜନ ।
୨ । ଶୈଳଧାରଣ — ଗୋବର୍ଦ୍ଧନୋଦ୍ଧରଣ ।

ସ୍ୱପ୍ରତିଜ୍ଞାପାଶେ ଅବଦ୍ଧ
କୃଷ୍ଣ ସହନ କଲେ
ସହସ୍ର ଦୋଷରେ ଚୈଦ୍ୟର
ଅଦ୍ୟ ଗଣନା କଲେ । ୪୨ ।

ଚୈଦ୍ୟ ଅପକାର ନ ଅସେ
କୃଷ୍ଣ ସ୍ମୃତିପଥରେ,
ସଜ୍ଜନ ଉପକାର ସ୍ମରେ
ଅପକାର ନ ସ୍ମରେ । ୪୩ ।

ଚେଦପ କୃଷ୍ଣଙ୍କୁ ନିନ୍ଦବା—
ଶୁଣି ଗଙ୍ଗାତନୟ,
ମାରୁତ-କ୍ଷୁବ୍ଧ-ଅବ୍ଧି ନାଦ—
ବଂଶ ବଚନ କ୍ୟୟ । ୪୪ ।

ଚୈଦ୍ୟ ହରିନିନ୍ଦା କରିବା—
ପରେ ଗଙ୍ଗାନନ୍ଦନ,
ସ୍ୱନିନ୍ଦା ନ ଗଣି କୁପିତେ
କହିଲେ ଏ ବଚନ । ୪୫ ।

ଏ ସଭାରେ ମୁହିଁ ହରିଙ୍କ
କରାଇଲି ଅର୍ଚ୍ଚନ,
ଯେ ଈର୍ଷୀ ଧନୁ ଧରୁ ତାର
ଶିରେ ଏହି ଚରଣ । ୪୬ ।

ଭୀଷ୍ମବାକ୍ୟ ଶୁଣି ଚେଦପ—
ପକ୍ଷ ନୃପତିଗଣ,
ଶିରେ ପାଦନ୍ୟାସ ଅଧାରେ
କୋପ କଲେ ତକ୍ଷଣ । ୪୭ ।

କୃଷ୍ଣ ତାରକା ସହିତରେ
ଉପ୍ରତାମ୍ରବରଣ,
ନ୍ୟାୟରେ ନୃପତିମାନଙ୍କ
ନେତ୍ର କଲା ଧାରଣ । ୪୮ ।

ପ୍ରଭାତ ଅରୁଣ ବରୁଣ—
ପରି ଦ୍ରୁମନୃପତି,
କ୍ରୋଧରେ କଲା ବେନି ନେତ୍ର
ରକ୍ତବରଣ ଅତି । ୪୯ ।

ଅନ୍ତର୍ବାଣ ଈର୍ଷା ଦହନ
ବେଣୁଦାରି¹ ଅନ୍ତରେ-
ଥିଲା, କୋପ ବାତେ ପାଦପ—
ପରି ଜଳିଲା ଖରେ । ୫୦ ।

କେ ନୃପ କହିବା ଇଚ୍ଛାରେ
ଦନ୍ତ ବିକାଶ କରି,
ବିକୃତ କଲା ନିଜମୁଖ
ରାହୁବଦନ ପରି । ୫୧ ।

ପ୍ରଥମେ କୁପିତ ଆକୃତି
ଦନ୍ତବକ୍ର ନୃପତି,
ବଜ୍ରନାଦ ପ୍ରାୟ ସକୋପ—
ହାସ୍ୟ କଲା ଦୁର୍ମତି । ୫୨ ।

ଭଗିନୀହରଣ ଦୁଃଖରେ
ହୋଇ ଅନୁତାପିତ,
ରୁକ୍ମିଣ ସଭାରେ ପ୍ରବେଶି
ହେଲା ମହାକୁପିତ । ୫୩ ।

ସୁବଲମହୀପ ଚରଣ—
ଘାତେ ଭୂମି କମ୍ପିତ,
ସମୁଦ୍ର ଜଳ ଉଚ୍ଛ୍ୱସିତ
ଫଣିଫଣା ନମିତ । ୫୪ ।

ରଥାଙ୍ଗପାଣିଙ୍କ ପୂଜନେ
କୁପିତ ରାଜଗଣ,
ଯୁଦ୍ଧ ହେବ ଜାଣି ଅହୁକ²
ହେଲା ଅନନ୍ଦମନ । ୫୫ ।

---

୧ । ବେଣୁଦାରି—ନରକାସୁର ।
୨ । ଅହୁକ—ଅହୁକନାମ ରାଜା ।

କାଳଯବନ କହ୍ନୁ ବାକୁ
ମୁଖ କଲା ବିସ୍ତାର,
କି ଅବା ଜଗତ ଗିଳିବ
ଦଣେ ବିକୃତାକାର । ୫୬ ।

ଅଖିଳ ନୃପଙ୍କୁ ନାଶିବା
ଇଚ୍ଛି ବସୁରାଜନ,
କୋପେ ପଦ ଦେଉଁ ସ୍ଖଳିତ—
ହେଲା ପିଙ୍ଗାବସନ । ୫୭ ।

ରାଜମଣ୍ଡଳ ମାରବଳ—
ପର କୁପିତେକ୍ଷଣ,
ହର ବୋଧି ସଦ୍ୱ[1] ବିକୃତ
କାହିଁ ଅଭିକ୍ରମନ । ୫୮ ।

ଗର୍ବୀକ ଚୈଦ୍ୟ ପକ୍ଷ ନୃପେ
ସଂଗ୍ରାମେ ଦେଇ ମନ,
ଉଠିଲେ ସଭାରୁ ସରୋଷେ
କରି ଭୀମଗର୍ଜନ । ୫୯ ।

ନେବ କୁସୁମ ଓଷ୍ଠଦଳ
ଅଙ୍ଘ୍ରିପ[2] ପର ନୃପ,
ଉଠିଲେ ବାତେ ବନପର
ସଦୃ[3] ହୋଇ କମ୍ପ୍ରୃପ । ୬୦ ।

ଗର୍ବରେ ତ୍ରିଭୁବନଜୟୀ
ହରିଙ୍କି ତୃଣବତ,
ଧର୍ମରାଜଙ୍କୁ ନ ଗଣିଲେ,
ଭୀଷ୍ମଙ୍କୁ ଉନମତ୍ତ । ୬୧ ।

---

୧ । ରୁଦ୍ରଙ୍କ ସମାଧି ଭଙ୍ଗପାଇଁ କନ୍ଦର୍ପ ସୈନ୍ୟ, ରୁଦ୍ରଙ୍କଦ୍ୱାରା ନ୍ଥଭଙ୍ଗ ହୋଇ ପଳାଇଲେ, ସେପରି ହରିଙ୍କଦ୍ୱାରା ରାଜମଣ୍ଡଳ ହେଲେ । ୨ । ଅଙ୍ଘ୍ରିପ—ବୃକ୍ଷ । ୩ । ସଦୃ—ସଦୃଶ ।

ପଦାହତ ଫଣୀ ପରାୟେ
ଶ୍ୱାସ ଛେକି ଗର୍ଜନ,–
କଲା, ଚେଦିପ ବିଷପ୍ରାୟେ
ବାଣୀ ସମୁଦ୍ଗୀରଣ । ୬୨ ।

ହେ ନୃପଗଣ ! ଏ ଜାରଜ—
ପଞ୍ଚଭ୍ରା'ତା ସଙ୍ଗରେ୧,
କଂସ କିଙ୍କର୨କୁ ନମାର
କର୍ପା ଲଭୁ ସଙ୍ଗରେ୩ । ୬୩ ।

ରଣରେ ମୋ ମୁଖ ନ ଦେଖେ
ଭୟେ କମ୍ପାଇ ଗାତ୍ର,
ଏ କୃଷ୍ଣର ବଧ ତୁମ୍ଭଙ୍କୁ
ଅଟେ କାଙ୍କ୍ଷିତମାତ୍ର । ୬୪ ।

ନଦୀଜ୪ ଧର୍ମଜ୫ ଯାହାଙ୍କୁ
କରିଛନ୍ତି ଉତ୍ତମ,
କଥାରେ କି, ନିକଷେ କଷ୬
ଉତ୍ତମ ଅନୁତ୍ତମ । ୬୫ ।

ଉରଗାରିଧ୍ୱଜ ସବୃତ୍ତ
ହେଲେ ମୋ ସଙ୍ଗେ ରଣେ,
ମୋ ତୀକ୍ଷ୍ଣ ମାର୍ଗଣ ପିଇବ
କୃଷ୍ଣରକ୍ତ ତତ୍କ୍ଷଣେ । ୬୬ ।

ଈଦୃଶ କର୍କଶ ବଚନ
କହି ଚେଦି ଭୂପତି,
ନ ଗଣି ପାର୍ଥଙ୍କୁ ସଭାରୁ
ଉଠିଲା ସେ ଝଟିତି । ୬୭ ।

କ୍ଷମାବାନ ପାଣ୍ଡବମାନେ
ମାତୃସ୍ୱସାନନ୍ଦନ—
ଅତିଥି ଚୈଦ୍ୟଙ୍କୁ ନ କଲେ
କ୍ରୋଧ, ସର୍ବ ସହନ । ୬୮ ।

---

୧ । ସଙ୍ଗରେ — ସଙ୍କଟରେ । ୨ । କିଙ୍କର — ଭୃତ୍ୟ ।
୩ । ସଙ୍ଗରେ — ଯୁଦ୍ଧରେ । ୪ । ନଦୀଜ — ଭୀଷ୍ମ ।
୫ । ଧର୍ମଜ — ଯୁଧିଷ୍ଠିର । ୬ । କଷ — ପରୀକ୍ଷାକର ।

ସେ ଯଜ୍ଞଭୂମିରୁ ଚୈଦ୍ୟର
ମଞ୍ଚ ଭୂପତିଗଣ,
ସପ୍ତି[1] ପରି ଚେଦିପତିର
କଲେ ଅନୁଗମନ । ୬୯ ।

ଚୈଦ୍ୟ ବେଗଗାମୀ ଅଶ୍ୱର
ପୃଷ୍ଠରେ ଆରୋହଣ—
କରି, ରଥ୍ୟା[2] ଅତିକ୍ରମିଲା
ନାରୀଙ୍କ ଅଦର୍ଶନ । ୭୦ ।

କ୍ଷଣେ ଦେଖି କ ହେଲା ବୋଲି
ଆଲାପକଲେ ଜନେ,
ନିଃଶଙ୍କେ ଶିବିରେ ପ୍ରବେଶି
ସୈନ୍ୟ ଯାକେ ତତ୍କ୍ଷଣେ । ୭୧ ।

ଗିରିଗହ୍ୱର ବୀରଶଙ୍ଖ—
ନାଦେ ପ୍ରତିଧ୍ୱନିତ—
ହେଲା, ଚେଦିପତି ସୈନ୍ୟର
ପ୍ରୟାଣ ସୁବିଦିତ । ୭୨ ।

ପ୍ରଳୟକାଳ ମେଘଙ୍କର
ମହାଘୋର ଗର୍ଜନ—
ପ୍ରାୟ, ସୈନ୍ୟେ ରଣ ଦୁନ୍ଦୁଭି
ଦର୍ପେ କଲେ ବାଦନ । ୭୩ ।

ସସମ୍ଭ୍ରମେ ସୈନ୍ୟଚଳନେ
ହେଲା ମହାଜନତା,
ଚଳ ଉଡୁ[3] ଶୋଭି ଗଗନ—
ପରି ମନୋରମତା । ୭୪ ।

ଧୂମପଟଳରେ ଛାଦିତ
ପ୍ରାୟ ନୃପତିଗଣ,
ମହାଧ୍ୱଜ ଭୟଙ୍କରତା
ତହୁଁ କଲେ ଧାରଣ । ୭୫ ।

---

୧ । ସପ୍ତି—ଅଶ୍ୱମେଧୀୟଅଶ୍ୱ ।
୨ । ରଥ୍ୟା—ଗଳି ।
୩ । ଉଡୁ—ନକ୍ଷତ୍ର ।

କଷ୍ଟେ ବିଲମ୍ବେ ଅଣିବାରୁ
ସେବକ ମହାବର୍ମ,
କରିଥଲେ ହେଷେ ବିଚୂର୍ଣ୍ଣ
କଲ୍, ଦୁଷ୍କର କର୍ମ । ୭୬ ।

ରଣସମ୍ମଦରେ ସୈନ୍ୟର
କଳ କଳ ଶବଦେ,
ପର୍ଯ୍ୟାଣ ନ ପାରଲେ ରଖି
ମଦଚ୍ୟୁତି ଦ୍ୱିରଦେ । ୭୭ ।

କାଞ୍ଚନଆଭରଣ ମୃଗ—
ଶୋଭି ତୁରଗଗଣ,
ସୁଦୀର୍ଘବପୁରେ ପୃଥିବୀ
ବ୍ୟାପିଗଲେ ତକ୍ଷଣ । ୭୮ ।

ନେମି-ବଳୟରେ ଜନ୍ମିତ—
ରେଣୁ ଘନମଧ୍ୟରେ,
ରଥର ଗର୍ଜନ ପ୍ରାଣିଙ୍କ
ମନେ ଅତଙ୍କ କରେ । ୭୯ ।

ବର୍ମଧାର ନୃପେ ଦଶିଲେ
ଶଶ-ଅଙ୍କ ଉପମା,
ବନିତାଙ୍କ ସଙ୍ଗେ ପିଇଲେ
ମଦିର ମନୋରମା । ୮୦ ।

ଦୟିତର ପାନପକାଶେ
ମଦ୍ୟପାନ ଅମୀତ—,
ହେଉଁ, ଭୂରେ ପକାଇ ଦେଲ
ମୁଗ୍ଧା ରାଜଯୋଷିତ । ୮୧ ।

ଭାବୀ ବିରହର ଶୋକରେ
ମଦ ତେଜ ରମଣୀ,
ବିରସେ ଗଣ୍ଡ ଅରୁଣତା
କଲ ଅସୁଖମଣି । ୮୨ ।

ଶୋକରୁଦ୍ଧକଣ୍ଠନାୟିକା
କହେ ପ୍ରଣୟୀ ଗିର,
ଯୁଦ୍ଧକୁ ଯାଉଛ ସଙ୍ଗିନ ।
ଯୋଦ୍ଧୃବୃତ୍ତ ଅସ୍ଥିର । ୮୩ ।

ଯୁଦ୍ଧଗମନରେ ଇଚ୍ଛୁକ
ପ୍ରିୟ ନାୟିକା ଖରେ,
ଆଲିଙ୍ଗନେ ପୃଥୁଳ କୁଚ—
କଞ୍ଚୁକ ଛିନ୍ନକରେ । ୮୪ ।

ପ୍ରିୟ ଶୁଭ ଇଚ୍ଛି ନ କଲା
ନାରୀ ଅଶ୍ରୁମୋଚନ,
ନ ଜାଣିଲା ଶିଥିଳ କରୁ
ବଳୟର ପତନ । ୮୫ ।

ନୀଳନଳିନରୁଚି ନେତ୍ର
ପ୍ରିୟ ବେନିଚରଣେ,
ପତନ କଲା କେ ନିଗଡ଼ ୧—
ପର ରୁଦ୍ଧ ଗମନେ । ୮୬ ।

ଜନନୀ ଭର୍ତ୍ସନାରେ ଶିଶୁ
ହୋଇ ଅତିକୋପନ,
ହେ ତାତ ! ଯାଉଅଛ କାହିଁ
ବୋଲି କହେ ବଚନ । ୮୭ ।

ରଣେଚ୍ଛୁ ସ୍ୱାମିଙ୍କ ରମଣୀ
କହେ ଅପ୍ସରାସଙ୍ଗେ,
ତାଦୃଶ ଯତନ କରିବ
ଯଥା କ୍ରୀଡ଼ିବ ରଙ୍ଗେ । ୮୮ ।

ଦୟିତ ଗମନକାଳରେ
ଅତି ଶୋକେ ରମଣୀ,
ରୁଦ୍ଧ କଲୁଁ ଅଶ୍ରୁ ବହଇ
ପାଇ ପ୍ରେମସରଣୀ । ୮୯ ।

---

୧ । ନିଗଡ଼—ଶୃଙ୍ଖଳ

ରମଣୀ ଗଣ୍ଡସ୍ଥଳେ ବହେ
କଜ୍ଜ୍ୱଳ ଅଶ୍ରୁଧାର,
ଶୋକମାର୍ଗ ପାଇ ଗମନ
କବା କୃଷ୍ଣବର୍ତ୍ମାର୧ । ୯୦ ।

କେତେ ଧଦ ଯାଉଁ ସ୍ୱାମିର
ରୁଦ୍ଧ ହୁଏ ଚରଣ,
ଶିଥିଳ ନୀବିକରୁ ପାତ
ଶୁଣେ ବଳୟସ୍ୱନ । ୯୧ ।

ବଲ୍ଲଭ ଗମନମାର୍ଗରେ
ସ୍ରସ୍ତ-ଅଂଶୁକ-ନାରୀ,
ରଙ୍ଗବସନେ ତଳୁପର
ଯାଏ ବହାଇ ବାରି । ୯୨ ।

ଅବନିପତି ରଣେ ହତ
ହେଲେ ସହମରଣ—
ଇଚ୍ଛି, ଅକାତର ଭର୍ତ୍ତସ୍ତ୍ରୀ
ଦାସୀ କରେ ରୋଦନ । ୯୩ ।

ପତିଙ୍କ ଦର୍ଶନ ଦୁର୍ଲଭ
ହେବ ଭାବି ଅଙ୍ଗନା,
ରଣଗାମୀ ସ୍ୱାମିଙ୍କି ଦେଖେ
ହୋଇ ଅତୃପ୍ତମନା । ୯୪ ।

ଯୁଦ୍ଧରୁ କୁଶଳରେ ପୁଣି
ଫେର ବୋଲି ସ୍ନେହରେ,
ଭର୍ତ୍ତନାରୀ ଅଶ୍ରୁଲୋଚନେ
ସ୍ୱାମିଙ୍କି ତ୍ୟାଗକରେ । ୯୫ ।

ଅଶ୍ରୀକ ବଦନଇନ୍ଦୁ ରଜବ୍ୟାପ୍ତ କେଉଁନାରୀ
କରେ ଦବର ଅନୁକରଣ,
ଦଗପର ଅନ୍ତର୍ଦାହ କେ ଭୂମିପର କମ୍ପିତ
ଅଶିବ ସୂଚଲେ ନାରୀଗଣ । ୯୬ ।

୧ । କୃଷ୍ଣବର୍ତ୍ମା—ଅଗ୍ନି, ଯେଉଁମାର୍ଗରେ ଅଗ୍ନି ଗମନ କରେ ସେମାର୍ଗ କୃଷ୍ଣହୁଏ । ଏଥିପାଇଁ ଅଗ୍ନିର ନାମ କୃଷ୍ଣବର୍ତ୍ମା ।



# ଷୋଡଶ ସର୍ଗ

ଦମଘୋଷସୁତ ସୁପ୍ରତାପଶାଳୀ
ଚତୁରଦୂତକୁ କଲା ପ୍ରେରଣ,
ସଭାରେ ପ୍ରବେଶି ସେ ଦୂତ ହରିଙ୍କି
ଦ୍ୱ୍ୟର୍ଥକ ଶବ୍ଦେ କହିଲା ବଚନ । ୧ ।

ଶିଶୁପାଳ ତବ ଅପ୍ରିୟକୁ କହି
ହେଲା ନିତାନ୍ତ ଅନୁଶୟୀ୧ ମନା,
ଏବେ ଅଭିମନା୨ ହୋଇ ନିକଟକୁ
ଆସି କରିବ ତୁମ୍ଭର ମାନନା୩ । ୨ ।

ଉନ୍ମନା୪ ଚେଦିପ ବିପୁଳ୫ ବିଗ୍ରହେ୬
ନିର୍ଦ୍ଦୟ୭ ନିପୀଡ଼ନ୮ କରି ଅଙ୍ଗ,
ହେଉ ଅନନ୍ଦିତ ଗାଢ଼ସ୍ପର୍ଶ ସୁଖେ
ଫେରନ୍ତୁ ଅଶାକଣା ଚତୁରଙ୍ଗ । ୩ ।

ନୃପତିଙ୍କ ମଧ୍ୟେ ପ୍ରଣତ୯ ଚେଦିପ
ତବ ନିକଟକୁ ସତ୍ୱର ଆସି,
ତୁମ୍ଭର ଶାସନ୧୦ ପରବାନ୧୧ ଯେଣୁ
କରିବ ସକଳ ବାଣୀ ପ୍ରକାଶି । ୪ ।

ଜ୍ୱଳନ୧୨ ପତଙ୍ଗ୧୩ ତେଜପରି ତବ
ନିଯୁତଧ୍ୱାନ୍ତ୧୪ରେ ସମର୍ଥ ଯେଣୁ,
ସର୍ବବଶବର୍ତ୍ତୀ୧୫ କେଉଁ ମହୀପତି
ପ୍ରଣାମ ନ କରିବ ଅବା ତେଣୁ । ୫ ।

---

୧। ଅନୁଶୟ—ଅନୁତାପ; ପଶ୍ଚାତ୍ତାପ । ୨। ଅଭିମନା—ଉତ୍କଣ୍ଠିତଚିତ୍ତ; ନିର୍ଭୀକ । ୩। ମାନନା—ପୂଜା; ସମ୍ମାନକାର୍ଯ୍ୟ । ୪। ଉନ୍ମନା—ଉତ୍ସୁକମନା, ମନସ୍ୱୀ। ୫। ବିପୁଳ—ପ୍ରଲମ୍ବିତ, ମହାନ୍ । ୬। ବିଗ୍ରହ—ଶରୀର; ସମର । ୭। ନିର୍ଦ୍ଦୟ—କଠୋର; ନିଷ୍ଠୁର । ୮। ନିପୀଡ଼ନ—ଅଲିଙ୍ଗନ, ଦଳନ । ୯। ପ୍ରଣତ—ନମସ୍କୃତ । ୧୦। ଶାସନ—ଆଜ୍ଞା; ଦଣ୍ଡ । ୧୧। ପରବାନ—ଅନୁମତି; ନେସ୍ୱାନ । ୧୨। ଜ୍ୱଳନ—ଅଗ୍ନି । ୧୩। ପତଙ୍ଗ—ସୂର୍ଯ୍ୟ; ଶଲଭ । ୧୪। ନିଯୁତଧ୍ୱାନ୍ତ—ସଘନତମ; ଅବ୍ୟୟଗୁରୁ ବିନାଶ । ୧୫। ସର୍ବବଶବର୍ତ୍ତୀ—ସମସ୍ତେ ଅଧୀନ, ସମସ୍ତଙ୍କ ଉପର ।

ହେ କୃଷ୍ଣ ! ଜନତା୧ ପର ଅଭିଭୂତ୨
ଭୟଶୂନ୍ୟଧୀ୩ରେ ଅବଲମ୍ବନ,
କର ଯେଣୁ, ତବ ନର ଅସମାନ୪
ଅଗଣ୍ୟ୫ ଗୁଣଗାନ କରେ ଜନ । ୬ ।

ତୁମ୍ଭର ସଦୃଶ ଅବା ଗୁଣବାନ ୬
ଅନାସ୍ତିକ୭ କିଏ ଅଛି ଭୂତଳେ,
ଯେଣୁ ଅବସ୍ମୟ୮ ଅହୃତଶାସ୍ତ୍ରେ୯
ତେଣୁ ହେ କୃଷ୍ଣ ! ୧୦ ବୋଲନ୍ତି ସକଳେ । ୭ ।

ଗୋପବଧୂରତ୧୧ ବୃଷଘ୍ନ୧୨ ଅତ୍ୟୁଗ୍ର—
ନରକ୧୩ରେ ତୁମ୍ଭର ପ୍ରତିପତ୍ତି୧୪,
ତେଣୁ ସର୍ବଜନେ ଏ ସକଳ ଗୁଣେ
ତୁମ୍ଭର ପ୍ରଶଂସା କରନ୍ତି ଅତି । ୮ ।

ସାନୁଚର୧୫ ଚୈଦ୍ୟ ବହିତା-ପଚିତ୧୬
ସୈନ୍ୟରେ ଶତ୍ରୁଙ୍କ ସୁଭୟକର,
ମହାକ୍ଷମାବୃତ୧୭— ମାନଙ୍କ ଉପରେ
ରହ ସର୍ବଦା ହୋଇ ସାନୁଚର । ୯ ।

---

୧ । ଜନତା — ଜନସମୂହ, ପଶୁପାଳକାଦ । ୨ । ପରଅଭିଭୂତ — ଅନ୍ୟାଭି-ଭରଣୀୟ, ଅନ୍ୟ ଅଭିଭୂତ । ୩ । ଭୟଶୂନ୍ୟଧୀ — ନିର୍ଭୀକଚିତ୍ତ, ନିର୍ବୁଦ୍ଧି । ୪ । ଅସମାନ — ସର୍ବୋତ୍କୃଷ୍ଟ, ହୀନ । ୫ । ଅଗଣ୍ୟ — ଅସଂଖ୍ୟ, ନଗଣ୍ୟ । ୬ । ଅବା-ଗୁଣବାନ — ଅଥବା ଗୁଣାଢ୍ୟ, ଅବ = ଅଗୁଣବାନ୍ — ନିର୍ଗୁଣ । ୭ । ଅନାସ୍ତିକ — ଆସ୍ତିକ, ନାସ୍ତିକ । ୮ । ଅବସ୍ମୟ — ନିର୍ଗର୍ବ, ଗର୍ବୀ । ୯ । ଅହୃତଶାସ୍ତ୍ର — ଅଧର୍ମଶାସ୍ତ୍ର, ଶତ୍ରୁଶାସ୍ତ୍ର । ୧୦ । କୃଷ୍ଣ — ପାପାକର୍ଷକ, ମଳିନ । ୧୧ । ଗୋପବଧୂରତ — ଗୋପୀ-ଜନବତ୍ସଳ, ପାରଦାରିକ । ୧୨ । ବୃଷଘ୍ନ — ଅରିଷ୍ଟାଅସୁରନାଶକ, ବୃଷହନ୍ତା । ୧୩ । ଅତ୍ୟୁଗ୍ରନରକ — ଭୀଷଣନରକାସୁର, ନରକନରସ୍ଥ । ୧୪ । ପ୍ରତିପତ୍ତି — ପ୍ରବୃତ୍ତି । ୧୫ । ସାନୁଚର — ସଭୃତ୍ୟ, ପର୍ବତଶୃଙ୍ଗବହୁଳ । ୧୬ । ବିହିତାପଚିତ — କୃତପୂଜ, କୃତଦାନ । ୧୭ । କ୍ଷମାବୃତ — କ୍ଷମା, ପର୍ବତ ।

ଘନଜାଲନିଭ୧ ନାଗକଦମ୍ବକେ୨
ବନଜ୩ ମୃଗାଦରେ ହୋଇ ପୂର୍ଣ୍ଣ,
ତବ ନଗରର ସକଳ ପ୍ରତୋଳୀ
ବ୍ୟାପ୍ତେ ହେଉ ଅତି ଦୁର୍ଗମ୪ ତୂର୍ଣ୍ଣ । ୧୦ ।

ହେ ସୁଧୀରଚେତ୫ ସଦା ବ୍ୟାଧିଯୁକ୍ତ୬
ଶତ୍ରୁର ଅମାତ୍ୟ୭ ହେଉ ତୁମ୍ଭର,
ସକଳାପିହ୍ନୁତ— ପୌରୁଷ୮ ନିଯୁତ
ଅବର୍ଦ୍ଧିତୋଦୟ୯ ହେଉ ସତ୍ୱର ।୧୧।

ହେ ଯଦୁପୁଙ୍ଗବ୧୦ ଚୈଦ୍ୟ ସଙ୍ଗେ ତବ
ଘଣ୍ଟା୧୧ପ୍ରାପ୍ତ ଯେଣୁ ସର୍ବ ସୁକର
ବନ୍ଧୁସୌହୃଦରେ୧୨ ନବାସବ୧୩ ତବ
ସସୁର୧୪ ହେବଟି ସୁକାର୍ଯ୍ୟକର । ୧୨ ।

ଅନକ ଦୁନ୍ଦୁଭି୧୫ ସବଳ୧୬ ସାରଣ୧୭
ସଗଦ୧୮ ସମିତିରେ୧୯ ରଭସରେ,
ଚେଦିପକୁ ପାଇ ସୁସମ୍ପ୍ରତିପତ୍ତି୨୦
କରିବ ତୁମ୍ଭେ ତାହା ସହଜରେ । ୧୩ ।

---

୧ । ଘନଜାଲନିଭ — ମେଘସମୂହ ତୁଲ୍ୟ, ସାନ୍ଦ୍ର ଅନାସ୍ତ୍ର ତୁଲ୍ୟ । ୨ । ନାଗକଦମ୍ବ — ଗଜସମୂହ, ସର୍ପସମୂହ । ୩ । ବନଜ — ମୃଗାଦ, ବନଭବ, ମୃଗବ୍ୟାଘ୍ରାଦି । ୪ । ଦୁର୍ଗମ — ଦୁଷ୍ପ୍ରବେଶ । ୫ । ସୁଧୀରଚେତ — ଅବିକାରମନା, ସୁଧୀଃ — ଉଦାରବୁଦ୍ଧି, ଅଚେତ — ଅମନସ୍କୀ । ୬ । ବ୍ୟାଧିଯୁକ୍ତ — ବିଗତ ଆଧିଯୁକ୍ତ, ରୋଗଯୁକ୍ତ । ୭ । ଅମାତ୍ୟ — ଇତରସ୍ୱଶୂନ୍ୟ, ମାତରହିତ । ୮ । ସକଳାପିହ୍ନୁତ ପୌରୁଷ — ସର୍ବ ଅତିରସ୍କୃତ ବିକ୍ରମ, ତିରସ୍କୃତ ପୌରୁଷ । ୯ । ଅବର୍ଦ୍ଧିତୋଦୟ — ଅଚ୍ଛିନ୍ନୋଦୟ, ଅସମ୍ପୂରିତ ଅଭ୍ୟୁଦୟ । ୧୦ । ଯଦୁପୁଙ୍ଗବ — ଯଦୁଶ୍ରେଷ୍ଠ, ଯାଦବବଳୀବର୍ଦ୍ଦ । ୧୧ । ଘଣ୍ଟା — ଦନ୍ତସନ୍ଧ, ସମଙ୍କ-ସଂଯୋଗ । ୧୨ । ବନ୍ଧୁସୌହୃଦ — ବନ୍ଧୁସ୍ନେହ, ଉପେନ୍ଦ୍ରସ୍ତବ । ୧୩ । ନବାସବ — ନବମଦ୍ୟ, ନ — ବାସବ — ଇନ୍ଦ୍ର । ୧୪ । ସସୁର — ସମଦ୍ୟ, ସଦେବ । ୧୫ । ଅନକ ଦୁନ୍ଦୁଭି — ବସୁଦେବ, ଅନକ — ପଟହ, ଦୁନ୍ଦୁଭି — ଭେରୀ । ୧୬ । ସବଳ — ବଳଭଦ୍ରସହିତ, ସସୈନ୍ୟ । ୧୭ । ସାରଣ — ସାରଣାଖ୍ୟ ପୁତ୍ରସହିତ, ସ୍ରୁବସହିତ । ୧୮ । ସଗଦ — ଗଦାଖ୍ୟ ଅନୁଜସହିତ, ରୋଗସହିତ । ୧୯ । ସମିତିରେ — ସଭାରେ ଯୁଦ୍ଧରେ । ୨୦ । ସମ୍ପ୍ରତିପତ୍ତି — ସମ୍ପାଦନା, ଅଭ୍ୟୁଦୟ ।

ସମରେ ପ୍ରଦ୍ୟୁମ୍ନ ଶିଶୁପାଳ ସଙ୍ଗେ
ସମ୍ମିଳିତ ହୋଇ ହରଷମନେ,
ସମସ୍ତ ସାତ୍ୱତ[1] ଚୈଦ୍ୟ ପାଇଁ ହୁଅ
ସୁଚିର ବଶସ୍ତ୍ର[2] ରମଣୀଜନେ । ୧୪ ।

ଜିତକ୍ରୋଧ ଚୈଦ୍ୟ ସପ୍ରମଦା[3] ଏବେ
ତୁମ୍ଭଙ୍କୁ ଆନନ୍ଦେ କରୁ ଲୋକନ,
ଫଯୁଗର ଯେତା ମହୀପେ ପୂଜିତ
ଲୋକନେ ଛୁଟନ୍ତ ମହାନିବନ୍ଧନ । ୧୫ ।

ଏରୂପେ ଦ୍ୱ୍ୟର୍ଥକ — ବାଣୀ କହି ଶତ୍ରୁ-
ଦୂତ ମୌନଭାବେ ଅବଲମ୍ବନ-
କରିବାରୁ, ତହୁଁ ରଥାଙ୍ଗପାଣିଙ୍କ
ଇଙ୍ଗିତେ ସାତ୍ୟକି କହେ ବଚନ । ୧୬ ।

ବାହାରେ ମଧୁର ଅନ୍ତରେ ଅପ୍ରିୟ
ଚତୁର ! ତୁମ୍ଭେ ଯା କହିଲ ବାଣୀ,
ଅନ୍ତରରେ ପ୍ରିୟ ବାହାରେ ଅପ୍ରିୟ-
ପର ଶୁଣିଲେ ତା ରଥାଙ୍ଗପାଣି । ୧୭ ।

ସରଳ କୋମଳ ଅମ୍ଭୋରୁହ-ବୃନ୍ତ
ଅନ୍ତରେ, ବାହାରେ କଣ୍ଟକମୟ,
ଶାକ ପଲ୍ଲବର ତୁଲ୍ୟ ତବ ବାଣୀ
ବହିଃ ସ୍ନିଗ୍ଧ ଅନ୍ତେ କର୍କଶମୟ । ୧୮ ।

ପ୍ରକାଶେ କୋମଳ ଅନ୍ତରେ କର୍କଶ
ଅନ୍ତଃଶୁଦ୍ଧିଶୂନ୍ୟ ପୁରୁଷଗଣ,
ଅଧ୍ୱଗମାନଙ୍କେ ମାର୍ଗସ୍ଥ ଶକୁନ-
ପରି ହୁଅନ୍ତି ଦୂତ ବନାଶନ । ୧୯ ।

---

୧ । ସାତ୍ୱତ—ଯାଦବ ।

୨ । ବଶସ୍ତ୍ର—ବସ୍ତ୍ରକୁ ରମଣୀଜନ, ଅଥବା ରମଣୀଗଣ ।

୩ । ସପ୍ରମଦ—ଆନନ୍ଦସହିତ, ପ୍ରୀତ ।

ଯୁଧିଷ୍ଠିର କଲେ ହରଙ୍କ ଅର୍ଚ୍ଚନା
ତବ ନୃପତିର ଦ୍ୱେଷ କାହିଁକି,
ସୁରଭି ପ୍ରସୂନ ପାଦପରୁ ଅଣି
ମସ୍ତକେ ଦେଲେ କେ କହେ ନାହିଁ କି । ୨୦ ।

ଲଘିଷ୍ଠ ହୃଦୟ— ସ୍ଥିତ ଅପ୍ରିୟକୁ
ଝଟତି କରଇ ସମୁଦ୍ଗୀରଣ,
ମନୀଷୀ ତାହାକୁ ହୃଦୟ ମଧ୍ୟରେ
ନିରାହରେ କରେ ଭସ୍ମୀକରଣ । ୨୧ ।

ସଜ୍ଜନ ସର୍ବଦା ପରଉପକାରେ
ସ୍ୱଭାବରେ ହୁଏ ଆନନ୍ଦମନା,
ସଜ୍ଜନ ଉତ୍କର୍ଷେ ଅସଜ୍ଜନ ସଦା
ହୃଦୟ ବେଗରେ ହୁଏ ବମନା । ୨୨ ।

ପର ଉନ୍ନତରେ ଉତ୍ତମ କେବେହେଁ
ମନରେ ନ କରଇ ଅନୁତାପ,
ମଧ୍ୟମ ଗୋପନେ— କରନ୍ତି, ଅଧମ
ପ୍ରକାଶ କରଇ ସେ ପରତାପ । ୨୩ ।

ଅବାରତ ତାପ ସୁମନ ଭର୍ଜ୍ଜିତ୧
ଫଳହୀନ୨ରେ କାହିଁ ବୁଧଜନ,
ଖଳତା୩ ଖଳତା— ପ୍ରାୟ, ଅସତ୍ୟକୁ
କରଇ ଆନନ୍ଦେ ଅବଲମ୍ବନ । ୨୪ ।

ବେଦପତ୍ର ରୋଷେ ଗାଳିଦେଲେ ମଧ୍ୟ
କେଶବ ନ ଦେଲେ ପ୍ରତିଉତ୍ତର,
ଘନଗର୍ଜ୍ଜନରେ ହୁଙ୍କାରେ କେଶରୀ
ଶୃଗାଳ ଶବ୍ଦେ କି ହୁଏ ତତ୍ପର । ୨୫ ।

---

୧ । ସୁମନଭର୍ଜ୍ଜିତ — ପୁଷ୍ପବର୍ଜ୍ଜିତ, ବୁଧବର୍ଜ୍ଜିତ ।
୨ । ଫଳହୀନ — ଫଳବର୍ଜ୍ଜିତ, ଅର୍ଥହୀନ ।
୩ । ଖଳତା — କ୍ରୂରତା, ଅକାଶଲତା ।

ସୁଧୀଜନେ ସଦା ଜଡରୋଷ, ଲଘୁ
କ୍ରୋଧଜାତ ଏହା ଅଟେ ସୁସ୍ଥିର,
ଜେତା ବଜେତାର ପଣ୍ଡିତ ମୂର୍ଖର
ବରୋଧ କାହିଁ ଶୋଭନ ଏ ଗିର । ୨୬ ।

ଉଦ୍ଧତ ଦୁର୍ଜନ— ବଚନେ କି କେବେ
ମହାନର ଗୌରବ ହୁଏ ହାନି,
ଧୂଳିରେ ଆଚ୍ଛନ୍ନ— ହେଲେ କି କେବେହେଁ
ମଣିର ମହାମୂଲ୍ୟ ହୁଏ ହାନି । ୨୭ ।

ଯେ ଜନର ଅନ୍ୟ— ପରତୋଷକାଙ୍କ୍ଷ
ନିଜର ଦେହରେ ନ ଥାଏ ଗୁଣ,
ପରଦୋଷ କଥା କହି ସେହି ନୀଚ
ସ୍ୱଜନଙ୍କ ତୋଷେ ହୁଏ ନିପୁଣ । ୨୮ ।

ସ୍ୱଦୋଷରେ ଅନ୍ଧ— ହୁଏ ଅସଜ୍ଜନ
ପରଦୋଷେ ହୁଏ ତୀବ୍ରନୟନ,
ସ୍ୱଗୁଣ ସ୍ତୁତରେ ଅତ୍ୟନ୍ତ ପ୍ରଗଲ୍ଭ
ପରପ୍ରଶଂସାରେ ମୌନଧାରଣ । ୨୯ ।

ପ୍ରକଟିତ ଥିଲେ— ମଧ୍ୟ ପରଦୋଷ
ସଜ୍ଜନ ତାହା କରଇ ଗୋପନ,
ନିଜର ପ୍ରଶଂସା ପର ଅପବାଦ
ପ୍ରକାଶ କେବେ ନ କରେ ସଜ୍ଜନ । ୩୦ ।

ଲୋକରେ କୀର୍ତ୍ତିତ— ହେତୁ ମହାମନା
ନିଜେ ନ ପ୍ରଶଂସେ ନିଜର ଗୁଣ,
ତୁଚ୍ଛର ପ୍ରଶଂସା ନ କରନ୍ତି କେହି
ତେଣୁ ସେ ଗୁଣବ୍ୟାଖ୍ୟାନେ ନିପୁଣ । ୩୧ ।

ଅସ୍ୱଶ୍ଳାଘା କେବେ ନ କର ସଜ୍ଜନ
ଅଶୀବଷ ପର କ୍ରୋଧବମନ,
ଅନ୍ତରେ ଅସାର— ଧରି ଅସଜ୍ଜନ
ଧ୍ୱନି ସାର, ଭେରୀ ପ୍ରାୟ ଗର୍ଜନ । ୩୨ ।

ସେ ଚେଦିଭୂପତ ନରକଣ୍ଟକଙ୍କୁ
ଯେ ପ୍ରକାରେ ଦେଖିବା ଇଚ୍ଛା କରେ,
ଦ୍ରୁତ ଅସୁ ତାର— ସଦୃଶ ଉତ୍ତର
ନିଶ୍ଚୟ ପାଇବ ଭାବେଁ ମନରେ । ୩୩ ।

ଚେଦିମହୀପତି ହରି ସହିତରେ
ସନ୍ଧି ଇଚ୍ଛେ ଯେବେ କାହିଁ ବଳ,—
ସାଜଅଛୁ, ଏବେ ଅକ୍ରମଣେ ହରି
ପାଇବେ କି ଭୟ ନ ଜାଣେ ଖଳ । ୩୪ ।

ବପଗତ-ବୁଦ୍ଧି ଚୈଦ୍ୟ, ମହାତ୍ମାଙ୍କୁ
ଅତିକ୍ରମ କରେ, ନିଜଦୋଷରେ,
ନାଶଯିବ, ଅଗ୍ନି ନିଜେ ଶଲଭଙ୍କୁ
ନ ପୋଡ଼ାଏ ଶଲଭ ପଡ଼ି ମରେ । ୩୫ ।

ଚୈଦ୍ୟ ନିଜମୁଖେ ଶତଅପରାଧ
କୃଷ୍ଣଙ୍କର କରି ନ ଥିଲା ପୂର୍ଣ୍ଣ,
ସମ୍ପ୍ରତ ଦୂତର ମୁଖେ ଶାର୍ଙ୍ଗିଙ୍କର
ସେ ପ୍ରତିଜ୍ଞା ପୂରଣ କଲା ତୂର୍ଣ୍ଣ । ୩୬ ।

ଅନର୍ଗଳ-ମୁଖ ତୁମ୍ଭେ ଏହା ପରେ
କହିବ ଯଦ୍ୟପି ଅପ୍ରିୟକଥା,
ସୁଚାର ସହିତ କ୍ରୋଧ ପ୍ରକାଶିତ-
ହେବ, ନ ଧରିବ ମନରେ ବ୍ୟଥା । ୩୭ ।

ନିଷ୍ପାପ ସାତ୍ୟକ ମୁଖରୁ ସକଳ
ଶୁଣିବାରୁ ବଚନ ଅର୍ଥକର,
ତ୍ୟକ୍ତଭୟ ହୋଇ ଶତ୍ରୁର ବଚନ
କହିଲା ପୁଣି ସେ ସନ୍ଦେଶହର । ୩୮ ।

ଅତି ବୁଦ୍ଧିହୀନ— ପାମର, ପରର-
ଉପଦେଶ ବିନା ନିଜର ହିତ,—
ନ ବବୁରେ, ପର ଉପଦେଶେ ମଧ୍ୟ
ଏ ଅଦ୍ଭୁତ ସିନା ନ ଜାଣେ ହିତ । ୩୯ ।

ବୁଧ ଭବିଷ୍ୟତ ଅପାୟକୁ ଜାଣି
ଗ୍ରହଣ କରଇ ଆପ୍ତବଚନ,
ନିଜ ଅନୁଭବ— ବ୍ୟତୀତ ଅଧମ
ନ ଘେନେ ଅନ୍ୟର ଶୁଭବଚନ । ୪୦ ।

ହେ କୃଷ୍ଣ ! ମୁଁ ଯାହା କହିଲି ସେ କଥା
ତୁମ୍ଭ ହିତ ତାହା ଭାବ ମନରେ,
ନିଜ ନାଶ ହେତୁ ହେଲେ ମଧ୍ୟ ସାଧୁ
ପରକୁ ଉପଦେଶ ଦାନକରେ । ୪୧ ।

ମୁଁ ଯାହା କହିଛି ସାମାଦ ବିଗ୍ରହ
ଯୁଗପତ ହିତ ଅହିତକର,
ସ୍ୱବୁଦ୍ଧିରେ ତୁମ୍ଭେ ତା ପୃଥକ କର
ନିଜ ହିତ ଯାହା ତା ଶୀଘ୍ର କର । ୪୨ ।

ଦୁରାଗ୍ରହଗ୍ରସ୍ତ— ବୁଦ୍ଧି ଲୋକଠାରେ
ବ୍ୟର୍ଥ ହୁଏ ସଦା ହିତବଚନ,
ପଙ୍କଜଶୋଭିନୀ ପୁଷ୍କରିଣୀ ମଧ୍ୟେ
ରବିତେଜେ ଯଥା ଚନ୍ଦ୍ରକିରଣ । ୪୩ ।

ଭାବାଦୃଶଜନ ଗୁଣ ଦୋଷ କିଛି
ନ ବିଚାରି କରେ ସ୍ୱରୁଚିବଳେ,
ଦେଖ ଯୁଧିଷ୍ଠିର ଚେଦୀପକୁ ତେଜ
ସଭାରେ ତୁମ୍ଭର ଅର୍ଚ୍ଚନା କଲେ । ୪୪ ।

ତୁମ୍ଭଠାରେ ଭକ୍ତି କରିକୁରୁରାଜ
ଚେଦୀପତିଙ୍କି ନ କଲେ ଅର୍ଚ୍ଚନା,
ମାଂସଲୋଭୀ ସିଂହ କରିକୁମ୍ଭଜାତ
ମହାମୂଲ୍ୟମଣି ତେଜେ ଦୁର୍ମନା । ୪୫ ।

ଧବଳରେ ସିନା ଧବଳ ଉନ୍ନତ
କୃଷ୍ଣରେ ହୁଅଇ ଅଧଃପତିତ,
ଶଙ୍କର ମସ୍ତକେ ଧରନ୍ତି ଗଙ୍ଗାଙ୍କୁ
ବିଷ୍ଣୁପଦେ ସ୍ଥିତ ସୁରସରିତ । ୪୬ ।

ଅବୃଥପାଣ୍ଡବ— ପୂଜନରେ ତବ
ଯୋଗ୍ୟତା ବଢ଼ିବ କାହିଁ ଲୋକରେ,
ମାର୍ଗଶୀର୍ଷମାସେ ପ୍ଲବଙ୍ଗସେବିତ
ଗୁଞ୍ଜା ଉତ୍ସୁତା କି ଧାରଣ କରେ । ୪୭ ।

ଚେଦି ନୃପତିର ଶତ ଅପରାଧ
କ୍ଷମିଛୁ ବୋଲି ଯା କର ବଡ଼ାଇ,
ରୁକ୍ମିଣୀହରଣେ ଚୈଦ୍ୟ ଏକ କ୍ଷମା
ଶତକ୍ଷମାକୁ ସେ ଦିଏ ଉଡ଼ାଇ । ୪୮ ।

ପିତାଦି କନ୍ୟାକୁ ଅର୍ପିଲେ ନୃପଙ୍କୁ
ଏଣୁ ବନ୍ଧୁ ତବ ଚେଦି ଭୂପତି,
ବନ୍ଧୁଜାୟା ହରି ଧର୍ମ ଅର୍ଥ ତେଜି
ସତ୍ୟ ତୁମ୍ଭେ କାମପିତା ଶ୍ରୀପତି । ୪୯ ।

ବହୁରୂପଧାରୀ ପରଭୃତ ପକ୍ଷ-
କାନ୍ତ ପରି ତୁମ୍ଭେ ମଳିନତନ,
ଚନ୍ଦ୍ରଅଂଶୁମାନ ପ୍ରାୟ ଚେଦିପତି
ସେ ତମନାଶୀ ହେ ପୁରୁଷୋତ୍ତମ । ୫୦ ।

ତୁମ୍ଭ ପରେ ଅତି— କ୍ରୁଦ୍ଧ ନୃପତିଙ୍କୁ
ସାନ୍ତ୍ୱନା କରିବା ଅଟଇ ବ୍ୟର୍ଥ,
ପ୍ରଳୟ କ୍ଷୁଭିତ— ସମୁଦ୍ର, ଜଗତ-
ପ୍ଲାବନେ ରୋଧିବାକୁ କେ ସମର୍ଥ । ୫୧ ।

ସଂଗ୍ରାମ ସକାଶେ ଯାଦବଗଣଙ୍କୁ
ଆହ୍ୱାନେ ନୃପାଦେଶେ ଅଛୁଁ ବସି,
ମହାବୀରମାନେ ଚୋରପରି ଛଳେ
ଅଧର୍ମ ନ କରନ୍ତି ଶତ୍ରୁ ନାଶି । ୫୨ ।

ଚେଦିମହୀପତି ଦୁର୍ନିବାର ପୟଃ-
ପ୍ରବାହ ପରାୟ ଆସୁଛି ଧାଇଁ,
ହେ ମାଧବ ! ତୁମ୍ଭେ ତରୁ ପରି ନୋହି
ବେତସ ବୃତ୍ତି ଅବଲମ୍ବ ଯାଇ । ୫୩ ।

ଶିଶୁପାଳନାମେ କେବଳ ଶତ୍ରୁଙ୍କ
ରକ୍ଷାକାରୀ ବୋଲି ନ ମଣ ମନେ,
ଶରଣ୍ୟ ଚେଦିପ ଶରଣାଗତଙ୍କୁ
ଯିବା ହେଲେ ମଧ୍ୟ କ୍ଷମ ରକ୍ଷଣେ । ୫୪ ।

ସ୍ୱାର୍ଥପର ଶତ୍ରୁ ମହାଅପ୍ରିୟରେ
ଅଶଙ୍କା କେବେ ନ କରେ ଧାରଣ,
ଉଦାର ଅଶତ୍ରୁ କୋପୀ ଚୈଦ୍ୟଠାରେ
ପ୍ରଣତି ହୁଏ କୃପାର କାରଣ । ୫୫ ।

ଅପ୍ରଜନବାକ୍ୟ ଅପ୍ରିୟ ହିତକୁ
ଶୁଣ ଯେବେ, ନାଶଯିବା ପୂର୍ବରେ—
ସନ୍ଧିକର, ଯଦି ପ୍ରିୟ ଅହିତରେ
ସନ୍ତୋଷ ରାଜା ହୁଅ ଜଗତରେ । ୫୬ ।

ବହୁଶତ୍ରୁନାଶୀ ହେଲେହେଁ ସଂଗ୍ରାମେ
ଚୈଦ୍ୟଦ୍ୱାରା ତୁମ୍ଭେ ହେବ ବଜିତ,
ସର୍ବତମୋପହ ହେଲେହେଁ ଭାସ୍କର
ରାହୁନାମ ତମେ ହୁଏ ଗ୍ରସିତ । ୫୭ ।

ଅଚରେ ସ୍ମରକୁ ଜିଣି ବୃଷ୍ଣିଗଣେ[1]
ନମସ୍କୃତ ହୋଇ ବରାଜମାନ,
ଅତ୍ୟୁଗ୍ର ଅନ୍ଧକ[2] ନାଶି ଚେଦିପତି
କହିବ ହରଲୀଳାର ସମାନ । ୫୮ ।

କୁଞ୍ଜର[3] ବିନାଶୀ କ୍ଷମାର୍ଜିତଯଶା
ହରିଙ୍କି[4] ଚେଦିପ ନ କରେ ଭୟ,
କେ ଗଣେ ବୃଷ୍ଣିଙ୍କୁ[5] ସିଂହେ ଯେ ନିର୍ଭୀକ
ମେଷଗଣଙ୍କୁ କି ସେ କରେ ଭୟେ । ୫୯ ।

---

୧ । ବୃଷ୍ଣିଗଣ—ଯାଦବଗଣ, ବୃଷ୍ଣି—ଈଷାପରେ, ଗଣ—ପ୍ରମଥଗଣ ।
୨ । ଅନ୍ଧକ—ଯାଦବଭେଦ, ଅନ୍ଧକାସୁର ।
୩ । କୁଞ୍ଜର—କୁବଳୟ । ୪ । ହରି—କୃଷ୍ଣ, ସିଂହ ।
୫ । ବୃଷ୍ଣି—ଯାଦବ, ମେଷ ।

ରଣେ ଚେଦ୍ଧପର          ବଦନକୁ ଭୟେ
  ନ ଦେଖଇ ଶତ୍ରୁ ଏ ନୋହେ ଶଙ୍କ,
ପଳାୟନପର          ଶତ୍ରୁପୃଷ୍ଠ ଦେଖେ
  ଉଡ଼େ ମକ୍ଷିକାକୁ ଯଥା ଧବଳ । ୬୦ ।

ଶରଦଙ୍କୁ ପାଇ          ଖଣ୍ଡିତଆୟୁଧ୧
  ଅଳ୍ପ ଉଲ୍ଲସିତ ଅଧରକାନ୍ତି,
ପୟୋଧିଭୃତ ଯଦ          ସୁ ଆସାର୨ ଭୂତ
  ନ ହୁଏ ଶତ୍ରୁ କରେ ତୁଳ୍ୟେ ଭ୍ରାନ୍ତି । ୬୧ ।

ରଣରେଣୁ ଦ୍ୱାରା          ମଳିନ ଚରଣ
  ଶତ୍ରୁଅଙ୍ଗନାଙ୍କ ଅଶ୍ରୁ ଜଳରେ—
କ୍ଷାଳିତ, ନୃପତି—          ମୌଳି ମୁକୁଟରେ
  ଅଂଶୁ ଚନ୍ଦନ କି ଲେପନ କରେ । ୬୨ ।

ଅତ୍ୟନ୍ତ କର୍କଶ          ଶତ୍ରୁଗଣଙ୍କୁ ଯେ
  ସମର ସକାଶେ ଆହ୍ୱାନ କରେ,
ତା, ଧନୁ ସଙ୍ଗରେ          ଲଭନ୍ତି ଅନତି
  ଶତ୍ରୁଗଣ ପରାଜୟେ ମନରେ । ୬୩ ।

ବୈଦ୍ୟଙ୍କୁ ବାନ୍ଧବେ          ଚନ୍ଦ୍ରମା ଭାବନ୍ତି
  ଅରିଗଣ ଚଣ୍ଡକର ଲୋକନେ,
କୃତିଗଣ ପୁଷ୍ପ—          ମାଳା ବଗୃରନ୍ତି
  ଶତ୍ରୁଗଣ ସର୍ପ ଭାବନ୍ତି ମନେ । ୬୪ ।

ଅସୁଲଭ କ୍ଷମ୍ୟ          ଅଛି ମାନୁଷରେ
  ସ୍ଥିତି ପାଇଁ ଇଚ୍ଛାକର ଯତନେ,
ସମ୍ପ୍ରତି ଜଗତେ          ଦେବଙ୍କ ସଦୃଶ
  ପ୍ରତିଷ୍ଠିତ ବୋଲି ଭାବନ୍ତି ମନେ । ୬୫ ।

---

୧ । ଖଣ୍ଡିତାୟୁଧ — ଖଣ୍ଡିତଅସ୍ତ୍ରଶସ୍ତ୍ର ।
୨ । ଆସାର — ବୃଷ୍ଟି, ସୈନ୍ୟ ।

ଅତ୍ୟନ୍ତ ଅଦ୍ଭୁତ— ପୌରୁଷ ଚୈଦ୍ୟର
ବିରୋଧୀ କେହି ତ ନାହିଁ ଜଗତେ,
ଅତ୍ୟକ୍ତ ନୀତରେ ଅକ୍ଷୟ ନୃପତି
ଶତ୍ରୁଙ୍କୁ କ୍ଷୟ କରଇ ନିରତେ । ୬୬ ।

ଚଳିତ କବନ୍ଧ[୧] ମକରବ୍ୟୂହରେ[୨]
ନିରୁଦ୍ଧ ହେବାରୁ ପ୍ରବେଶ ପଥ,
ନିଜଭୁଜବଳେ ସଙ୍ଗର ସାଗର
ତରି ପୂର୍ଣ୍ଣକରେ ସ୍ୱମନୋରଥ । ୬୭ ।

ଗର୍ବ ଦୁର୍ବିନୀତ ଯେ ନୃପତି ନିଜ
ଶିର ଚୈଦ୍ୟପଦେ ସ୍ପର୍ଶ ନ କରେ,
ଗତସ୍ପୃହ ଚୈଦ୍ୟ ନିଜର ଚରଣ
ତା ମସ୍ତକେ ନେଇ ସ୍ଥାପନକରେ । ୬୮ ।

ଚତୁରଙ୍ଗ ସେନା ତ୍ୟାଗ କରି ଚୈଦ୍ୟ
ନିଜ ଭୁଜଦ୍ୱୟ ଆୟୁଧ କରି,
ଶଙ୍କଦନ୍ତୀ ସଙ୍ଗେ ଆହବେ ପ୍ରବୃତ୍ତ
ହୁଏ ଚତୁର୍ଦ୍ଦନ୍ତ[୩] ବିଧାନ କରି । ୬୯ ।

ଅବସ୍ଥିତରେ ଗୃହୁ ଚକ୍ର[୪] ଶୋଭେ
ଉଭୟଙ୍କ ଶ୍ରୀ[୫] ଅନୁରାଗିଣୀ,
ଏହିମାକ ଭେଦ ତୁମ୍ଭେ ତ ଉପେନ୍ଦ୍ର[୬]
ସେ ଅଟେ ଅତୀନ୍ଦ୍ର[୭] ଇନ୍ଦ୍ରକୁ ଜିଣି । ୭୦ ।

---

୧ । କବନ୍ଧ — ମସ୍ତକହୀନ, ଜଳ । ୨ । ମକରବ୍ୟୂହରେ — ମକରନାମ ସୈନ୍ୟବ୍ୟୂହରେ, ନକ୍ର — ମକର କଚ୍ଛପ ପ୍ରଭୃତି । ୩ । ଚତୁର୍ଦ୍ଦନ୍ତ — ଗଜସଙ୍ଗେ ମନୁଷ୍ୟ ଯୁଦ୍ଧ । ୪ । ଚକ୍ର — ସୁଦର୍ଶନ, ଦଳ । ୫ । ଶ୍ରୀ — କମଳା, ସମ୍ପଦ । ୬ । ଉପେନ୍ଦ୍ର — ଇନ୍ଦ୍ରାନୁଜ । ୭ । ଅତୀନ୍ଦ୍ର — ଇନ୍ଦ୍ରଜେତା ।

ଭୂତମାନ,୧ ଭୋଗୀ—୨ ଭୂଷିତ, ତ୍ରିପୁର-
ବିଜୟୀ୩ ଉଭୟେ ଅଟନ୍ତି ସମ,
ହର ଚନ୍ଦ୍ର ଖଣ୍ଡେ ଶୋଭିତ ସମ୍ପୂର୍ଣ୍ଣ-
ଚନ୍ଦ୍ରକାନ୍ତିଧାରୀ ନୃପତିତ୍ତମ । ୭୧ ।

ଅତ୍ୟନ୍ତ ଉଦ୍ଧତ ମହୀପଙ୍କୁ ଦ୍ରୁତ
ବଳେ ଅବନତ କରେ ନୃପତି,
ଅବନୀ ତଳରେ ପ୍ରଣତ ନୃପଙ୍କ
ଆନନ୍ଦରେ କରଇ ଅଭ୍ୟୁନ୍ନତି । ୭୨ ।

ମଣ୍ଡଳ ମଧ୍ୟରେ୪ ଅବକାଶ୫ ପାଇ
ମହାମୂଳ ମଧ୍ୟ କରେ ଖନନ,
ତାଦୃଶ ଚେଦପ ମଣ୍ଡଳର ଭେଦ
ପାଇ ଦ୍ରୁତକରେ ଶତ୍ରୁହନନ । ୭୩ ।

ଘନପକ୍ଷବନ୍ତ୬ ଉଦ୍ଧତ ନୃପଙ୍କୁ
ସବଳେ ଟାଣି ଅନୁଗାମୀ କରେ,
ଦୃଢ଼ ପ୍ରତିଷ୍ଠିତ ଦ୍ରୁମପର ନୃପ-
ଗଣଙ୍କୁ ଦ୍ରୁତ ଉତ୍ପାଟ କରେ । ୭୪ ।

ଅଖଣ୍ଡ ପ୍ରସର ପ୍ରାବୃଟକାଳର
ସରିତର ଜଳପ୍ରବାହ ପରି,
ମହାନ ଚେଦପ ଦୁର୍ବୃତ୍ତଗଣଙ୍କୁ
ଖୋଲେ ସେପେ ତଟ ଦ୍ରୁମର ପରି । ୭୫ ।

ପୃଥୁଳ ନିତମ୍ବ ଦେଶରେ ଲମ୍ବିତ
ମହା ମୂଲ୍ୟମଣି ରଶନାଦାମ,
ନିରୁଦ୍ଧ ଅଂଶୁକ . ଅରି ନାରୀଗଣ
ନ ମୁଞ୍ଚନ୍ତି କରିବାକୁ ବିଶ୍ରାମ । ୭୬ ।

---

୧ । ଭୂତ — ଉତ୍ପନ୍ନ, ସମ୍ପନ୍ନ । ୨ । ଭୋଗୀ — ସର୍ପ, ଭୋଗବିଳାସୀ ।
୩ । ତ୍ରିପୁରବିଜୟୀ — ତ୍ରିପୁରାସୁରବିଜୟୀ, ତ୍ରିଭୁବନ ବିଜୟୀ ।
୪ । ମଣ୍ଡଳମଧ୍ୟରେ — ଶତ୍ରୁ ସୈନ୍ୟମଧ୍ୟରେ, ଆଳବାଳ ମଧ୍ୟରେ ।
୫ । ଅବକାଶ — ରନ୍ଧ୍ର, ଛିଦ୍ର । ୬ । ଘନପକ୍ଷବନ୍ତ — ସାନ୍ଦ୍ରପକ୍ଷଧାରୀ, ଦ୍ରୁତବାହନଶୋଭୀ ।

ନବମୁକ୍ତାଫଳ୧ ଭୂଷିତ ଭୂଜରେ
ଗୃହୁ କଣ୍ଟକକୁ ଧାରଣକରେ,
ପୃଥୁଗଣ୍ଡସ୍ଥଳେ୨ ନାଯୁତ ଚନ୍ଦକ୩
ଅବଯୋଗ ଭାବ ବହନ କରେ । ୭୭ ।

ଯେଉଁ ଚେଦିପର ଅରି ନାରୀଗଣ
ବାସ କରୁଥିଲେ ସୁଖେ ସଦନେ,
ଅଧୁନା ବିପଦେ ମହୀଧ୍ର ମୂର୍ଦ୍ଧାରେ
ବାସ କରୁଛନ୍ତି ଦୁର୍ଗମ ବନେ । ୭୮ ।

ଚୈଦ୍ୟ, ଦ୍ରୁମ ପରି କୁକୁର ଅନ୍ଧକ-
ମାନଙ୍କୁ ଦାବାଗ୍ନି ପରି ଦହନ,-
କରିବ ଅକୃଷ୍ଣ୪ ପୃଥିବୀକୁ ଯାହା
ଏଥିରେ ଆଶ୍ଚର୍ଯ୍ୟ ହୁଅଇ ମନ । ୭୯ ।

ପ୍ରମିତ ଅକ୍ଷର ହେଲେହେଁ ସକଳ-
ବିଷୟରେ ବ୍ୟାପ୍ତ ସର୍ବଜଗତ,
ରାଜାଙ୍କ ଆଦେଶ ହେଲେହେଁ କଠିନ
ନବାଧିତ କାହିଁ ହୁଏ ନିରତ । ୮୦ ।

ଯେଉଁ ପୃଥିବୀକୁ ପୁରାଣପୁରୁଷ-
ବରାହମୂର୍ତ୍ତିରେ କ୍ଷଣେ ଧାରଣ-
କଲେ, ସେ ପୃଥ୍ୱୀକୁ ଶମ୍ଭୁ ଅକ୍ଷତରେ
ଚେଦିପ ଅଦ୍ୟାପି କରେ ଧାରଣ । ୮୧ ।

ସମୁଦ୍ର କଲ୍ଲୋଳ ତୁଙ୍ଗତାକୁ ଭଜି
ତୀରରେ ପ୍ରବେଶି ହୁଏ ବିଦୀର୍ଣ୍ଣ,
ଗୁଣ ସମୁଦ୍ରର ମହା ଊର୍ମିଚୟ
ଧାରେ ପ୍ରବେଶି ନ ହୁଅଇ ଶୀର୍ଣ୍ଣ । ୮୨ ।

---

୧। ନବମୁକ୍ତାଫଳ – ନୂତନ ମୌକ୍ତିକ, ନବମୁକ୍ତ – ନୂତନ ତ୍ୟକ୍ତ, ଅଫଳ – ବ୍ୟର୍ଥ ବିଧବା ଯୋଗରୁ । ୨। ଗଣ୍ଡସ୍ଥଳ – କପୋଳ, ଗଣ୍ଡଶୈଳ ।
୩। ଚନ୍ଦକ – ପତ୍ରାବଳୀ; ଚନ୍ଦ୍ରକମୃଗ । ୪। ଅକୃଷ୍ଣ – ଶ୍ୟାମବର୍ଣ୍ଣ; ଶ୍ରୀକୃଷ୍ଣଘ୍ନ ।

ଲୋକାଲୋକଗିରି ଦ୍ୱସ୍ଥରେ ଭାସ୍କର
ଲୋକଆଗେ ନ ଦିଅନ୍ତି କିରଣ,
ଚେଦି ମହୀପତି ଲୋକାରିଙ୍କୁ ମଧ୍ୟ
ବଳେ କରିଅଛୁ ଅତି ନମଣ । ୮୩ ।

ଅରିନାରୀଗଣ ଚନ୍ଦନାଲକ୍ତକ
ଅଞ୍ଜନ ମେଖଳା ମୁକୁତାହାର,
ସମ୍ପଦ କାଳରେ ବିଭୂଷିତ ସର୍ବ
ଅପଦେ ତେଜିଲେ କୋପେ ଯାହାର । ୮୪ ।

ଶ୍ରୀମାନ ଚେଦିପ ସଦ୍ୟ ସଂଗ୍ରାମରେ
ତୁମ୍ଭଙ୍କୁ ବିନାଶି ବାହୁବଳରେ,
ଶିଶୁପାଳ ନାମ କରିବ ଯଥାର୍ଥ
କାନ୍ଦୁଥିବ ନାରୀଙ୍କ ପାଳନରେ । ୮୫ ।



## ସପ୍ତଦଶ ସର୍ଗ

ସେ ବାଗ୍ମୀ ଦୂତର ନିଷ୍ଠୁର କଥାରେ
ସଭା ହେଲା ବିକ୍ଷୁଭିତ,
ମହାପ୍ରଳୟରେ କଳ୍ପାନ୍ତ ମାରୁତେ
ଅର୍ଣ୍ଣବ ଯଥା କ୍ଷୁଭିତ । ୧ ।

ନୃପଗଣଙ୍କର ରୋଷଜୋଷ୍ମା ସ୍ୱେଦ-
ବାରି ହେଲା ପ୍ରବାହିତ,
କରାହତ ଊରୁ— ଶବ୍ଦ ଜାତହେଲା
ଦଶନେ ଓଷ୍ଠ ଚର୍ବିତ । ୨ ।

କରତଳେ ଅଂସ କରି ଆସ୍ଫାଳନ
ଦଳିତ ଅଙ୍ଗଦ[୧] ଗଦ[୨],
କୋପପାବକକୁ ସ୍ଫୁଲିଙ୍ଗିତ କଲେ
କାଟମାଡ଼ି ଦଶନଚ୍ଛଦ । ୩ ।

ଅବଜ୍ଞାରେ ବଳ ଦଶନ ବିସ୍ତାରି
ତହୁଁ କଲେ ଅଟ୍ଟହାସ,
ପୁଣି ବେଗେ ନିଜ— ଧବଳ ବପୁକୁ
ଅରୁଣବର୍ଣ୍ଣ ପ୍ରକାଶ । ୪ ।

ଉତ୍କଳ ନୃପତି ଦୂତ ଅଭିମୁଖେ
ଦ୍ରୁତ ହୋଇ ବିବର୍ତ୍ତିତ,
ପାଷାଣ କଠିଣ ଅଂସ ଘଟ୍ଟନରେ
ସଭା କଲେ ବିକମ୍ପିତ । ୫ ।

---

୧ । ଅଙ୍ଗଦ—କେୟୂର, । ୨ । ଗଦ—ବୃଦ୍ଧଙ୍କ ଗଦା ।

ସୁଧାଜିତ ନୃପ ନିଶ୍ୱାସ ମାରୁତେ
ବାଜଇ ନିଜ ବସନେ,
ରୋଷତୃଷ୍ଣା ଶାନ୍ତି · ନୋହି, ସ୍ୱେଦବିନ୍ଦୁ
ଦିଶଇ ପୁଣି ବଦନେ । ୬ ।

ଶତ୍ରୁବଧୋଦ୍ୟତ ନିଷଧ ନୃପର
ମହାକ୍ରୋଧ ଦେଖି ଜନେ,
ଉଗ୍ର ବୀରଭଦ୍ର ଦକ୍ଷଯଜ୍ଞଧ୍ୱଂସୀ
ବୋଲି ବିଗ୍ରହଲେ ମନେ । ୭ ।

ଅତ୍ୟନ୍ତ କୁପିତ ସୁଧନ୍ୱା ନୃପର
ମର୍ଦ୍ଦିତ କରଦ୍ୱୟରେ,
ସ୍ୱର୍ଣ୍ଣାଙ୍ଗଲୀୟକ— ଚୂର୍ଣ୍ଣରେଣୁ ଲାଗି
ବିଧୌତ ସ୍ୱେଦସ୍ରବରେ । ୮ ।

ଅନ୍ଧକ ନୃପର କର ନଖମନେ
ଜଣେ ଅଗ୍ନିଶିଖାପରି,
ଜଗତ ଦହନେ ଅନଳ ମଣ୍ଡଳ
ଯାଏ କି ଦଗେ ସଞ୍ଚରି । ୯ ।

ନେତ୍ରଦଗ୍ଧକାମ ପୂର୍ବ ପରଚଳ
ପ୍ରଦ୍ୟୁମ୍ନଙ୍କୁ ସମ ଶର,
ଉଗ୍ରତେଜ ହେତୁ ତୃତୀୟନେତ୍ରରେ
ଦେଖି ନ ପାରଲେ ହର । ୧୦ ।

କାମିନୀ ପୃଥୁଳ— କୁଚୁକ ଚନ୍ଦନ-
ଲଗ୍ନ, ପୃଥୁନୃପ କରେ,
ପରୋଷରେ ଗର୍ଜି ଉର ତନୁରୁହ
ବୀରଦର୍ପେ ସ୍ପର୍ଶକରେ । ୧୧ ।

ବପୁର ପରୁଷ ବାଣୀରେ ଗାନ୍ଦିନୀ-
ସୁତଙ୍କୁ୧ ଲକ୍ଷିତ ସ୍ମିତ,

୧ । ଗାନ୍ଦିନୀସୁତ—ଅକ୍ରୂର ।

ଦେଖି ବିସ୍ତରନ୍ତ ଜନେ ମହାବାତ
କରେ କି ଶୈଳ ଅସ୍ଥିର । ୧୨ ।

ସେ ପ୍ରସେନଜିତ ମଦ କଳୁଷିତ
ନୟନ କରି ବିଘୂର୍ଣ୍ଣନ,
କରେ ଭୂମି ତାଡ଼ କ୍ରୋଧେ ବପୁ କଲା
ଗୈରିକରଜବରଣ । ୧୩ ।

କୁଙ୍କୁମ ଲେପିତ ଗାତ୍ରବନ୍ତ ନୃପ
ପକ୍ୱଦାଡ଼ିମବରଣ,
ସ୍ୱେଦବିନ୍ଦୁ ତହିଁ ଈର୍ଷା ରକ୍ତବିନ୍ଦୁ
ପ୍ରାୟେ ଦିଶଇ ଶୋଭନ । ୧୪ ।

ଶିଳାଂ ସଘନ୍ତମେ ଚରଣ ତାଡନେ
ମଣ୍ଡପବର ମଧ୍ୟରେ,
ରବକର ତହିଁ ପ୍ରବେଶି ପାତାଳ
ଉରଗଭବକୁ ଧରେ । ୧୫ ।

ଶାରଣ ନୃପତି ମସ୍ତକ କମ୍ପାଇ
ଅଗ୍ନିକାନ୍ତ ମୁକୁଟରେ,
ଅଧୁନା ଯୁଦ୍ଧନ୍ତୁ ସକଳ ନୃପେ କି
ବୋଲି ନୀରାଜନା କରେ । ୧୬ ।

ବଦୂରଥ ରାଜା କହିବା ଇଚ୍ଛାରେ
ବିସ୍ତାର କଲା ବଦନ,
ଚଳିତ ରସନା ଦଶେ କୋଠରସ୍ଥ
ପ୍ରାୟେ ଅହିର ଗମନ । ୧୭ ।

ଶଙ୍କୁର ବାକ୍ୟରେ ସଭା ବସୁଭର୍ତ୍ତ
ହରିମତି ନ ଚଞ୍ଚଳ,
ବୃଷ୍ଟିକଲେ ନଦୀ ଚଞ୍ଚଳ ହୁଅଇ
ସମୁଦ୍ର ରହେ ଅଚଳ । ୧୮ ।

---

୧ । ଶିଳା—ସାଧାରଣ ଚିତ୍ରାମ୍ବ ।

ଖଳ ପରନିନ୍ଦା     ନିଜର ପ୍ରଶଂସା
କରେ ଏହା ତା ପ୍ରକୃତ,
ଅବିସ୍ମିତ ସ୍ମିତେ     ଚନ୍ଦ୍ରମାମୁଖ ନ
ଉଦ୍ଭବ କଲେ ବିକୃତ । ୧୯ ।

ପ୍ରକୋପି ଯାଦବେ     ଈଦୃଶ ଦୂତଙ୍କୁ
ନିରାକୃତ କଲା ପରେ,
ଅନେକ ଶବଦେ     ହରି ସୈନ୍ୟ ଯୁଦ୍ଧ-
ପାଇଁ ବାହାରିଲେ ଘରେ । ୨୦ ।

ବୃଷ୍ଣି ନୃପଗଣ     ଶତ୍ରୁ ଶସ୍ତ୍ର ଭଗ୍ନ-
ହେବ ବୋଲି ଦେହେ ବର୍ମ—
ପିନ୍ଧିଲେ, ଏ ଅଟେ     ଅତ୍ୟନ୍ତ ବଳୀର
ମଧ୍ୟ ମହାନୀତ ଧର୍ମ୍ମ । ୨୧ ।

ପରାକ୍ରମଶାଳୀ     ମହୀପତିଗଣ
କରି ସଂଗ୍ରାମ ଶ୍ରବଣ,
ଅନ୍ତରେ ଆନନ୍ଦ     ବହିଃ କଞ୍ଚୁକ ନ
କରି ପାରିଲେ ଧାରଣ । ୨୨ ।

ସୁସଜ୍ଜିତ ଗଜ     ରଥ ତୁରଙ୍ଗମ
ପଦାତିଗଣ ସତ୍ୱର—
ବାହାରିଲେ ଯୁଦ୍ଧା     ନୃପଗଣ ଭଳେ
ଡାକନ୍ତ କରି ସତ୍ୱର । ୨୩ ।

ଶତ୍ରୁ ଯୁଦ୍ଧ ପାଇଁ     ଦୃଢବଦ୍ଧ କକ୍ଷା
ମଧୁପକୁଳ ଗୀତରେ,
ଦ୍ୱିପ ଅନାରତ     ସଜଳ ଅକ୍ଷମ୍ବୁ
ଦାନ ଦଏ କରୋଦରେ । ୨୪ ।

ମେଖଳାଶୋଭିତ     ସିତତରଦନ୍ତ
ସୂକ୍ଷ୍ମ ମଧ୍ୟ ମନୋରମ,
ସମରେଚ୍ଛୁ ହୋଇ     ପ୍ରିୟା ପରି ସ୍କନ୍ଧେ
ଲମ୍ବିଲ ଅସି ଉତ୍ତମ । ୨୫ ।

ସ୍ରଗ୍ଭବେ ସୁନ୍ଦର          ଯୁଦ୍ଧେ ଭୟଙ୍କର
ସଦୈବତ ଆୟୁଧରେ,
ବିଭୂଷିତ ହେଲେ          ମୋଦେ ମୁରଜିତ
ଗମନୋତ୍ସୁକ ସମରେ । ୨୬ ।

ହରି, ଅବାରିତ          ଦୁର୍ଗମ ଗମନେ-
ସମର୍ଥ ସୁଜୟ କର,
ଅସୁର ଶୋଣିତେ          ସିକ୍ତ ନେମି ରଥେ
ଆରୋହିଲେ ତତପର । ୨୭ ।

ଅଣ୍ଡଜମଣ୍ଡଳ—          ଈଶ୍ୱର କାନ୍ତିରେ
ଦିଗ କରି କପିଶିତ,
ପକ୍ଷବାତ ସ୍ୱନେ          ସ୍ୱର୍ଗୁଁ ଆସି ରଥ-
କେତନରେ ହେଲେ ସ୍ଥିତ । ୨୮ ।

ନବାମ୍ବୁଦ ପରି          ଜିଣି ଭୈରବନାଦ
ରମ୍ଯ ହଂସ ହର୍ଷ ହରି,
କଳାପିକୁଳକୁ          ମୋଦିତେ ସ୍ୟନ୍ଦନ
ଚଳେ ଦ୍ରୁତଗତି କରି । ୨୯ ।

ଦିଗ ଅଚ୍ଛାଦନ          କରି ହରିବଳ
ଚଳିଲେ କରି ଗର୍ଜନ,
ସଂହାରକାଳର          କ୍ଷୁଭିତ ଅର୍ଣ୍ଣବ-
ପ୍ରାୟେ ଦିଶିଲେ ଭୀଷଣ । ୩୦ ।

ମାତଙ୍ଗ ବୃଂହଣେ          ଆନକ ଧ୍ୱନିରେ
ତୁରଗ ହେ୍ରଷାରବରେ,
ଭୂଧର ଗହ୍ୱର          ଗଗନମଣ୍ଡଳ
ପୂର୍ଣ୍ଣ ଭୀଷଣ ନାଦରେ । ୩୧ ।

ମଧୁରିପୁଙ୍କର          ଦୁନ୍ଦୁଭି ନାଦରେ
ଭୂଧରଦରୀ ଧ୍ୱନିତ,
ଗୁହାରୁ କେଶରୀ          ନିର୍ଗମଣେ ଦରୀ-
ନାଶ ପ୍ରାୟେ ବିଚାରିତ । ୩୨ ।

ଘୋର ତମ୍ଭୂରବ    ସୁରାଦ୍ରି କନ୍ଦରେ
ପ୍ରବେଶି ଦେବ ବଧୀର-
କ୍ଷଣ, କାମିନୀଙ୍କ    ରତାନ୍ତଃ କ୍ୱଣିତ
ଶିଞ୍ଜନ ଶବଦ ସ୍ଥିର । ୩୩ ।

ଯୁଦ୍ଧରେ ଅରାତ    ବନାଶିତ ହେଲେ
ସ୍ୱୟଂ ବରଣ କାମରେ,
ରଣଭେରି ନାଦେ    ସୁରବେଶ୍ୟାଗଣ
ତ୍ୟକ୍ତ, ବେଶହେଲେ ଖରେ । ୩୪ ।

ଗଜଶାସ୍ତ୍ରବନ୍ତ    ନିଷାଦୀ ଅଙ୍କୁଶେ
ଗଜକୁ ପ୍ରେରଣ କରେ,
ମସ୍ତକ କମ୍ପାଇ    ଗ୍ରୀବା ଘଣ୍ଟନାଦେ
ମାତଙ୍ଗ ଗମନ କରେ । ୩୫ ।

ଚାମର କମ୍ପାଇ    ଧୂଳିକି ଉଡ଼ାଇ
ପାଦନ୍ୟାସେ ଅଶ୍ୱଗଣ,
ଗମିଲେ ଜନଙ୍କ    ନେତ୍ର ନିବୃତ୍ତ ନ
କରି, ପିନ୍ଧି ଆଭରଣ । ୩୬ ।

ଗଜ କର୍ଣ୍ଣତଳେ    ଚଳ ଅଙ୍ଗୁଳିକ
ନର୍ତ୍ତନ କରାଏ କରେ,
ମଦସ୍ରାବି ଗଣ୍ଡ—    ସଙ୍ଗି ମଧୁପଙ୍କ
ଚନ୍ତୁ ଗୁଞ୍ଜନ ସ୍ୱନରେ । ୩୭ ।

ମଦପୂର୍ଣ୍ଣକୁମ୍ଭ    ଧର ଗଜକୁଳ
ଭୂମି ପାଂଶୁକୁ ସେଚନ—
କରନ୍ତି, ଆନନ    ଶୁଣ୍ଡର ଶବଦେ
ଜଳଦ ତୁଲ୍ୟ ଗର୍ଜନ । ୩୮ ।

ପବନ ବିଧୂତ    ଅଭ୍ରଙ୍କଷ ଧ୍ୱଜା
ଦୋଳେ ବିହର ଗଗନେ,
ପୂର୍ଣ୍ଣକୁମ୍ଭଧାରୀ    ହରଙ୍କ ମଙ୍ଗଳ
ଗଜେ କରନ୍ତି ଯତନେ । ୩୯ ।

ପ୍ରଭୂତ ସୈନ୍ୟର ଗମନରେ ମଧ୍ୟ
ଶୂନ୍ୟ ନୁହେ ସୈନ୍ୟସ୍ଥାନ,
ସମୁଦ୍ର ପୃଥ୍ୱୀ— ପ୍ଲାବନ କଲେ କି
ରିକ୍ତ ହୁଏ ଜଳସ୍ଥାନ । ୪୦ ।

ମଧୁରିପୁ ସୂର୍ଯ୍ୟ ଗମନ କାଳରେ
ଶତ୍ରୁସୈନ୍ୟ ଧୂଳି ଉଡେ,
ଦିଗ ଧୂମ୍ରବର୍ଣ୍ଣ ଦେଖନ୍ତି ସକଳେ
ଧୂଳିରେ କି ଛନ୍ନ ହୁଡେ । ୪୧ ।

ସମର ଉଦ୍ୟତ ଶତ୍ରୁଭେରୀ ଧ୍ୱନି
ଯଥା ମନ ଆକର୍ଷଣ,
ମନସ୍ୱୀ ର ତଥା ନ କରେ ନିଜର
ସୈନ୍ୟ ଦୁନ୍ଦୁଭି ନିସ୍ୱନ । ୪୨ ।

ହର ବରାଙ୍କର ଭେରୀଧ୍ୱନି ଯଥା-
ଯଥା ନିକଟକୁ ଆସେ,
ତଥା ତଥା ରିପୁ— ଚମୂ ବଧୂ ପରି
ହୃଷିତ ହୁଏ ଅନାୟାସେ । ୪୩ ।

ସମୀର ଉତ୍କ୍ଷିପ୍ତ ପରାଗ ରୂଷିତ
ଧ୍ୱଜାବଳି ନଭସ୍ତଳେ,
ପ୍ରଳୟରେ ଜାତ କାଳିକା ଅକୁଣ୍ଠ-
ପ୍ରାନ୍ତ ଦୂରୁ ଦେଖାଗଲେ । ୪୪ ।

ସୂର୍ଯ୍ୟ ଅଭିମୁଖେ ପ୍ରସ୍ଫୁରିତ ହୁଏ
ଦୁର୍ଦ୍ଦର୍ଶ କୃପାଣଫଳ,
ଅସୁର ଚମୂର ଭୟଙ୍କର ଭାବ
ଦେଖିଲେ ନୃପସକଳ । ୪୫ ।

ସମ ବିଷମରେ ସମାନ ଗମନ
ସୈନ୍ୟାବ୍ଧି କ୍ଷିତି ବ୍ୟାପିଲା,
ଗଗନସଙ୍କାଶ ନବ ଅମ୍ଭୋଧର
ତାକୁ ଛାୟା ପ୍ରଦାନିଲା । ୪୬ ।

---

୧ । ବଡ଼--ଚାମର ।

ସୁକ୍ଷୀଣ ଉଦରେ ତିନି ଭୁବନଙ୍କୁ
ଯେ ହରି ସଂସ୍ଥାପି ଥିଲେ,
ତାଙ୍କର ବିଶାଳ— ନେତ୍ରେ ରିପୁସୈନ୍ୟ
ଅତ୍ୟନ୍ତ ଅଳ୍ପ ଦିଶିଲେ । ୪୭ ।

ନୃପଚମୂଗଣ ବଧୂଗଣ ପରି
ଯୁଦ୍ଧରତ ଆରମ୍ଭରେ,
ସ୍ୱେଦ ପୁଲକିତ ଉତ୍କଣ୍ଠିତମନା
ହୁଅନ୍ତି ଦୁଇ ରସରେ୧ । ୪୮ ।

ଚୈଦ୍ୟସୈନ୍ୟ ରଥ— ଧ୍ୱଜା ବାତେ ଉଡି
ଯଦୁଙ୍କୁ ଆହ୍ୱାନ କରେ—
ବୋଲି, କି, ଯାଦବେ ଧାଇଁଲେ କ୍ରୋଧରେ
ଶତ୍ରୁସୈନ୍ୟ ସମ୍ମୁଖରେ । ୪୯ ।

ହରି ସୈନ୍ୟ ମଧ୍ୟ ଶତ୍ରୁର ବାହିନୀ-
ଉପରେ ପଡ଼ିଲେ ଯାଇ,
ମନସ୍ୱିର ମଧ୍ୟ ବଳମ୍ବ ନ ସହେ
ଶତ୍ରୁର ସଂଗ୍ରାମ ପାଇ । ୫୦ ।

ରଣାଙ୍ଗଣେ ନୃପ— ହୃଦ ବଳମ୍ବିତ
ହାର ମଣିର କିରଣ,
ବର୍ମଭେଦ ଊର୍ଦ୍ଧ୍ୱେ ଉଠେ, ଦିଶେ ଶର-
ଲଗ୍ନଫଳରବରଣ । ୫୧ ।

ଶୀର୍ଣ୍ଣ ପାରାବତ— କନ୍ଧର ଧୂସର-
ବର୍ଣ୍ଣ ଦିଶେ ଭୂମିରଜ,
ସୈନ୍ୟ ପଦାଘାତେ ଉଡି ଗଗନରେ
ଅତିକ୍ରମେ ମେଘବ୍ରଜ । ୫୨ ।

ପରସ୍ପର ଶ୍ଳିଷ୍ଟ ତୁରଙ୍ଗମ ଖୁର
ଆହତରେ ଧୂଳିରାଶି,
ଉଡ଼ି କ୍ରମେ ନଭ ଧୂସରବର୍ଣ୍ଣରେ
ଆଚ୍ଛାଦନ କଲା ଆସି । ୫୩ ।

୧ : ରସରେ—ସଂରମ୍ଭରେ, କ୍ରୋଧରସରେ ।

ସରସିଜଜନ୍ମା ସୃଷ୍ଟିର ସର୍ଜନ
କାଳେ ତେଜି ସତ୍ତ୍ୱଗୁଣ;
ବହୁଳ ରଜର ଗୁଣ କି ଆଶ୍ରୟି
କଲେ ନିର୍ମାଣନିପୁଣ । ୫୪ ।

ଯୁଦ୍ଧେ ଶରକ୍ଷତ— ଜାତ ଶୋଣିତରେ
ପଙ୍କତାକୁ ଲଭମାନ,
ହେବ ବୋଲି, ଧୂଳି— ରାଶିକି ଗଗନେ
ଉଡ଼ାଇଲେ ନଭସ୍ଥାନ । ୫୫ ।

କାହିଁ ନବ ଅଭ୍ର— ଶ୍ୟାମ, କାହିଁ ଦିଶେ
କାଞ୍ଚନ ପିଞ୍ଜରବର୍ଣ୍ଣ,
ଶରଦ ଶଶାଙ୍କ— ପରି, ଧୂଳିରାଶି
କାହିଁ ଦିଶଇ ବିବର୍ଣ୍ଣ । ୫୬ ।

ସେନା ସମୁତ୍ଥିତ ରଜ ଦିଗଦନ୍ତି-
ମାନଙ୍କ ମୁଖାଚ୍ଛାଦନେ,
କୋକିଳଆବଳି ପ୍ରାୟ ମଳୀମସ
ଜଳଦ କଲା ଯତନେ । ୫୭ ।

ଏହୁ ଯୁବାଗଣ ଅଳି କୃଷ୍ଣକେଶେ
ନ ମରନ୍ତୁ ରଣେ ବ୍ୟର୍ଥ,
ଏହା ଭାବି, ସୈନ୍ୟ— ଉତ୍ଥ ରେଣୁ ଶୁକ୍ଳ-
କେଶେ କରେ ବୃଦ୍ଧ ଅର୍ଥ । ୫୮ ।

ତେଜସ୍ୱୀ ଅନ୍ୟର ସଙ୍ଗେ ସଙ୍ଗ ହେଲେ
ତା' ତିରସ୍କୃତ ନିଦାନ,
କ୍ଷିତି ଅବୟବ ରେଣୁରାଶି ତାର
ସୂର୍ଯ୍ୟଙ୍କୁ ଆଚ୍ଛାଦେ ଜାଣ । ୫୯ ।

ଦ୍ରୁତଗତି ରଥ— ଚକ୍ରକ୍ଷତ କ୍ଷିତି-
ଧୂଳିରେ ଅବଗୁଣ୍ଠିତ,
କଳ୍ପାନ୍ତେ ଜଗତ ଅବ୍ଧି ଜଳେ ମଗ୍ନ
ପ୍ରାୟ ହୁଏ ଉପମିତ । ୬୦ ।

ଦିନକର ମୁଖ— କାନ୍ତ ରଜସ୍ୱଲା¹
ମଳିନାମ୍ବର²ଶୋଭନା,
ଦିଗଙ୍ଗନାଗଣ ଲୋକନ ଅକ୍ଷମ
ଘ୍ରାଣି ଅଗମ୍ୟଶାଳିନୀ । ୬୧ ।

ରଣେ ନୃପଙ୍କର ବଳ ଦେଖିବାକୁ
ଗଗନେ ତ୍ରିଦଶଗଣ—
ରହି, ଅନିମିଷ— ନେତ୍ରେ ଧୂଳି ପଡ଼ି-
ବାରୁ କଲେ ଫଳପ୍ରାପ୍ତ । ୬୨ ।

ହତ ଯଣପ୍ରଭ ସମୀର ଉତ୍ଥିତ-
ରେଣୁ ଜଳ ଅକର୍ଷଣ—
କରିବାରୁ, ମେଘ ପଙ୍କ ଧରି ଧୀରେ
କଲା ଗଗନେ ଗମନ । ୬୩ ।

ଗଗନସରିତେ ସୁସ୍ନାତ ଖେଚରେ
ଅନ୍ୟେ ନ ଲଭିଲେ ଯେଣୁ,
ଅଶ୍ୱଖୁରୋତ୍ଥିତ ରେଣୁରେ ଦିଗ୍ଗଜେ
ସ୍ନାନ ସୁଖ ପ୍ରାପ୍ତ ତେଣୁ । ୬୪ ।

ଜୈତ୍ରକପାଦ— ଭରେ ଅବନମ୍ର
ଭୂମି ହେଲା ରସାତଳ,
ରେଣୁ ଅଚ୍ଛାଦିତ ନଭ, ଦିଗଗତ
ଏକ ହେଲା ଭୂମିତଳ । ୬୫ ।

ସୈନ୍ୟୋତ୍ଥିତ ରଜେ ନିମ୍ନ ହେଲା ସମ
ମହୀଭୃତ ଗୁହା ପୂର୍ଣ୍ଣ,
ଲଙ୍ଘିତା ସ୍ୱର୍ବଧୂ— ରତେ ଉପକାର
କଟନେ ନ ଦେଖିଲେ ଭୂର୍ଣ୍ଣ । ୬୬ ।

ମୁଖଚ୍ଛଦପଟ ପ୍ରାୟ ସାନ୍ଦ୍ର ରଜେ
ଦୃଷ୍ଟିପଥ ଅଚ୍ଛାଦିତ,
ଚୂତ ମଧୁଗନ୍ଧ— ମଦେ, ଅନ୍ୟଦ୍ୱୀପେ
ମାତଙ୍ଗେ ହେଲେ ଧାବିତ । ୬୭ ।

---

¹ । ରଜସ୍ୱଲା—ଧୂଳିଯୁକ୍ତା, ଋତୁଯୁକ୍ତ । ² । ଅମ୍ବର—ଆକାଶ, ବସ୍ତ୍ର ।

ସପ୍ତ ସ୍ରୋତେ ମଦ                    ବହିବାରୁ ଅଧ-
ରେଣୁ ହେଲା ପ୍ରଶମିତ,
ଉପରସ୍ଥ ରେଣୁ—                    ବିତାନ ତଳରେ
ଗଜେ ହେଲେ ବଲ୍କେକୃତ । ୬୮ ।

ଉନ୍ନତ ପୃଥୁଳ                    ପର୍ବତ ଶ୍ରୀଧାରୀ
ସ୍ୱର୍ଣ୍ଣ ଅଭରଣେ ବିଦ୍ୟୁତ ଶୋଭା—
ଧାରଣେ, କାଳୀପ୍ରୁ—                    କାପ୍ରୁ କୃଷ୍ଣ ଗଜେ
ମଦେ ସିକ୍ତ ରେଣୁ ଦଶିଲେ ଶୋଭା । ୬୯ ।



# ଅଷ୍ଟାଦଶ ସର୍ଗ

ନଗର ଅଧାପ୍ତୁ ନ ଦେଖି ସୈନ୍ୟର
ଅମ୍ଭୋଧି ଚଳିଲେ ଗମ୍ଭୀରସ୍ୱନେ,
ପକ୍ଷଛେଦ ପୂର୍ବୁ ବିନ୍ଧ୍ୟ ସହ୍ୟ ପର
ଧଶିଲେ କିବା ଏକତ୍ର ମିଳନେ । ୧ ।

ପତ୍ତି ପଦାତିକୁ ତୁରଗ ଅଶ୍ୱକୁ
ମାତଙ୍ଗ ଗଜକୁ ରଥିକ ରଥୀ,
ଭେଟିଲେ ସମର— ଅଙ୍ଗଣେ, ଅଙ୍ଗରେ-
ଅଙ୍ଗ, ସ୍ୱାମୀ ପ୍ରାୟୁ କାମିନୀ-ରଥୀ । ୨ ।

ରଥର ଗର୍ଜନେ ବାରଣ ବୃଂହଣେ
ତୁରଗମାନଙ୍କ ହ୍ରେଷାରବରେ,
ବ୍ୟୋମବ୍ୟାପି ସଦା ଦୁନ୍ଦୁଭି ପ୍ରଣାଦ
ଅସ୍ଫୁଟେ ସୈନ୍ୟର ମିଳିତସ୍ୱରେ । ୩ ।

ରୋଷେ ଶତ୍ରୁମୁଖେ ସ୍ଥୂଳ ବାହୁଧ୍ୱଜା
ଚଞ୍ଚଳ କରିବାରୁ ଉତ୍ତୋଳନ,
ଭୂଣ୍ଠୀକୃତ ହେଲା ବୈଜୟନ୍ତୀ ସର୍ବ
ପତ୍ତି ପଦାତିଙ୍କ ଖଡ୍ଗ କିରଣ । ୪ ।

ଧୌରତ ଚତ୍ତରେ ପ୍ରସ୍ତୁତ ଅଶ୍ୱଙ୍କ
ସ୍ୱର୍ଣ୍ଣ ରୌପ୍ୟ ଆଭରଣ ଶୋଭିତ,
ଅଙ୍ଗ ସ୍ୱେଦଲାଗି ବୁଦ୍‌ବୁଦ ପରାୟେ
ଦର୍ପ କାନ୍ତି ହୁଏ କି ପ୍ରକାଶିତ । ୫ ।

ପାଦ୍ରବର୍ମଧାରୀ ପୃଷ୍ଠଲଗ୍ନ ବଂଶ
ଅଙ୍ଗ ଶୋଭାରେ ନିତାନ୍ତ ଶୋଭନ,
କଲ୍ପାନ୍ତ ମାରୁତେ କ୍ଷିପ୍ତ ଗଣ୍ଡଶୈଳ-
ପ୍ରାୟ ଗଜେ କଲେ ତୀବ୍ରଗମନ । ୬ ।

ସନ୍ଧେ ଅଶ୍ୱଙ୍କ ଶିଥିଳିତ ବଲ୍ଗା
ହେବାରୁ ଉତ୍ଥିତ ଅଗ୍ରଶରୀର,
ଚଳାଇ ସ୍ୟନ୍ଦନ ସାରଥି ଶଙ୍କାରେ
ଟାଣିଲେ ତୁରଗେ ହୋଇ ଅଧୀର । ୭ ।

ଯୁଦ୍ଧ ବଧୂକାରୀ ପୃଥିବୀ ରେଣୁର
ସମ୍ମାର୍ଜନୀ ପାଇଁ ସ୍ଥିର ବିଧାନ,
ଅତି ଉନ୍ନତରେ କେତନ ଦଣ୍ଡରେ
ବୈଜୟନ୍ତୀ ହୁଏ ଉଡ୍ଡୀୟମାନ । ୮ ।

ଧନ୍ୱୀଗଣ ଅତି— କର୍କଶ କାର୍ମୁକ
ମଣ୍ଡଳାକାରରେ ଟଙ୍କାର କରି,
ଅସ୍ଫାଳନ୍ତି ଭଲେ ଯୋଦ୍ଧାଙ୍କୁ ନିରତେ
ହୃଦରେ ଗୁରୁ ଅବଲେପ ଧରି । ୯ ।

ଭଇ ଘଣ୍ଟାନାଦ ଉଦ୍ଦାମ ନିସ୍ୱନ
ଗ୍ରୀବାର ଶୃଙ୍ଖଳ ଶବଦ କରେ,
ବୃଂହିତ ଗଜଙ୍କ ଉତ୍ସାହ ସକାଶେ
ହସ୍ତିପକ ଡାକେ ଗମ୍ଭୀର ସ୍ୱରେ । ୧୦ ।

ଶସ୍ତ୍ରଜୀବଗଣ ନିଜ ଶିକ୍ଷା ଶକ୍ତି
ଅସ୍ତ୍ର ଚତୁର୍ବିଧ ଦେଖାଇ କରି,
ମୁକ୍ତାମୁକ୍ତ ଅସ୍ତ୍ର ଶସ୍ତ୍ର ତୀବ୍ରବେଗେ
ପ୍ରହାର କଲେ ହୁଅପୂଧ ଧରି । ୧୧ ।

କେହିଁ ଯୋଦ୍ଧାମାନେ ଅତ୍ୟନ୍ତ ରୋଷରେ
ସମ୍ମୁଖୀନ ହୋଇ କରି ଧାରଣ-
କରି, ତେଜି ଶସ୍ତ୍ର ମଲ୍ଲଙ୍କର ପରି
ବାହୁ ବାହୁରେ ଆରମ୍ଭିଲେ ରଣ । ୧୨ ।

ଦୂରରୁ ଦେଖିଲେ ଶୀଘ୍ରତା ଦେଖାଇ
ଧାବମାନ ଅଶ୍ୱ ପରାୟେ ଶର,
ଶତ୍ରୁସେନା ମଧ୍ୟେ ପ୍ରବେଶି ସହସା
ଯୁକ୍ତକାର୍ଯ୍ୟଙ୍କରେ ଆନନ୍ଦ କର । ୧୩ ।

ଅଭିମାନୀ ଯୋଦ୍ଧା ମହା ଆହବରେ
ଶତ୍ରୁର ଗ୍ରୀବା କରେ ଆକ୍ରମଣ,
ଅମାନୁଷ ଯୁଦ୍ଧ କରି ମହାବୀର
ସୁଖେ କରେ ସ୍ୱର୍ଗପଥେ ଗମନ । ୧୪ ।

କେଉଁ ବୀରମାନେ ଯୁଦ୍ଧ ଆପଣରୁ[1]
ଅସ୍ଥିର[2] ନଶ୍ୱର ପ୍ରାଣ ମୂଲ୍ୟରେ,
ଦ୍ୟାବା ପୃଥିବୀର ରନ୍ଧ୍ର ବ୍ୟାପ୍ତ ଯଶ
କିଣନ୍ତି ଶୀଘ୍ର ଆନନ୍ଦମନରେ ୧୫ ।

ବୀର୍ଯ୍ୟୋତ୍ସାହ ଶୋଭି ସଂଗ୍ରାମ ଅଗ୍ରରେ
ମହା କର୍ମ କରି ହୋଇ ଲକ୍ଷିତ,
ଅନେକ ଅଜ୍ଞାତ ନାମ ଯେଣୁ, ବନ୍ଧ-
ଦ୍ୱାରା କରେ ଶ୍ରୀନାମ[3] ପ୍ରକାଶିତ । ୧୬ ।

କେ ବୀର କ୍ରୋଧାନ୍ଧ ହୋଇ ଅଭିମୁଖେ
ଶତ୍ରୁ ଆଗମନ ନ ଜାଣେ ଛଳେ,
ପ୍ରଚଣ୍ଡେ ପ୍ରବେଶ କରାଇଲା ଅରି
ଅସି-ଉରଗ ବକ୍ଷପୀଠକଳେ । ୧୭ ।

ମିଳିତ ହେଲେହେଁ ମହା ସୈନ୍ୟ ଦ୍ୱୟ
ଥିଲା ତହିଁ ମଧ୍ୟେ ଏହା ବିଶେଷ,
ପରାଙ୍ମୁଖ ଶତ୍ରୁ ଅସ୍ତ୍ରୀୟ ଜ୍ଞାନରେ
ଅବଧ୍ୟ, ସମ୍ମୁଖୀ ହୁଅଇ ଶେଷ । ୧୮ ।

---

୧ । ଆପଣ—ଦୋକାନ । ୨ ଅସ୍ଥିର—ଚଞ୍ଚଳ ।

୩ । ଶ୍ରୀନାମ—ଶୌର୍ଯ୍ୟ ଶ୍ରୀଯୁକ୍ତନାମ ।

ସଦ୍‌ବଂଶ ହେତୁରୁ ସ୍ୱଅଙ୍ଗ ସଙ୍ଗିନୀ
ହୋଇଥିଲ ଯୋଦ୍ଧାର ଯେ କୃପାଣୀ,
ଶତ୍ରୁ ପ୍ରବଞ୍ଚନା— କର ଘେନ ଚାଉଁ
ଦ୍ରୋହ କଲ ପୂର୍ବ ସ୍ନେହ ନ ଜାଣି । ୧୯ ।

ଶତ୍ରୁର ସୁତୀକ୍ଷ୍ଣ ଖଡ୍ଗ ଅଭିଘାତେ
ଅନ୍ୟ ଭଟର ବଦାରିତ ବର୍ମ,
ତୀକ୍ଷ୍ଣଧାର ମାର୍ଗେ ବହଇ ଶୋଣିତ
ଜନେ ଦେଖନ୍ତି ଏ ଅଦ୍ଭୁତ କର୍ମ । ୨୦ ।

ଶତ୍ରୁର ସାୟକେ କ୍ଷତ ବକ୍ଷସ୍ଥଳ
ଅସହ୍ୟ ବେଦନା ପାଇ ସେ ବୀର,
ଧୈର୍ଯ୍ୟଚ୍ୟୁତ ହେଲେ— ମଧ୍ୟ ନିଜ କରୁ
ଖଡ୍ଗ ନ ତେଜେ କହେ କାକୁଗିର । ୨୧ ।

ତୀକ୍ଷ୍ଣଶର ବାଜି ତୁରଙ୍ଗମ ବକ୍ଷ
ଘୋଟୋକ୍ଷତ ହେଲେ ମଧ୍ୟ ଶିକ୍ଷିତ,-
ହେତୁ, ନ ପଳାଏ ସ୍ଥାଣୁ ପର ଅଛି
ଯେଣୁ ଯୁଦ୍ଧେ ହୋଇଅଛି ଦୀକ୍ଷିତ । ୨୨ ।

କୁନ୍ତରେ ପ୍ରହାର— କରିବାରୁ ସାଦୀ
ଆଜାନେୟ[୧] ଦନ୍ତିଠାରୁ ନ ଡରେ,
ସନ୍ଧୋଦାର କର୍ମ କରିବା ସ୍ୱାମିଙ୍କି
କୁଳୀନ କେବେ ନ ଲଙ୍ଘିତ କରେ । ୨୩ ।

ମାତଙ୍ଗ ଆରୋହୀ ଜଙ୍ଗମ ପର୍ବତ-
ଦୁର୍ଗର ଆଶ୍ରୟ କଲ ପରାୟ,
ଯୁଦ୍ଧ କରେ ରଙ୍ଗେ ସୈନ୍ୟେ ନ ଜଣିଲେ
ମାତଙ୍ଗ ଭ୍ରମଇ ବସ୍ତାର କାୟ । ୨୪ ।

ବଙ୍ଗବ୍ୟାପି ସୈନ୍ୟ— ସମୁଦ୍ର ମଧ୍ୟରେ
ଭୂଗୋଳେ ଆଦ୍ୟ କୋଳପର ଭ୍ରମି,
ଅଭୀଷ୍ଟ ବନ୍ଧୁକୁ ଦେଖିବା ସକାଶେ
ବ୍ୟର୍ଥ ହୁଏ ବହୁପଥର ଶ୍ରମୀ ୨୫ ।

---

୧ । ଆଜାନେୟ—କୁଳୀନ ଅଶ୍ୱ ।

ଉତ୍ଥାନ ଅଭଙ୍ଗ ନିଷାଦୀ ମଦର
ଉଦ୍ରେକ ସକାଶେ ଅଞ୍ଜନ ଦାନ—
କରିବା ପୂର୍ବରୁ ସେନା କଳକଳେ
ଦନ୍ତି ମଦଦାନ ପ୍ରବହମାନ । ୨୬ ।

ଦୂରୁ ଅନ୍ୟଗଜ— ମଦର ଅଘ୍ରାଣେ
କ୍ରୋଧେ ଯନ୍ତାଙ୍କୁ ପୀଡନ ମନରେ,
ଘୋର ରାବ କରି ଶରୀର କମ୍ପାଇ
ବସ୍ତ ଗଜକୁ ପ୍ରହାରେ ଦନ୍ତରେ । ୨୭ ।

ପ୍ରତ୍ୟାସନ୍ନ ହୋଇଁ ପ୍ରତିପକ୍ଷ ଗଜ
ନ ମାନି ଯନ୍ତାର ତୀବ୍ର ବାରଣ,
କ୍ରୋଧାକ୍ରାନ୍ତ ହୋଇ ମଦାନ୍ଧ ମାତଙ୍ଗ
ଅନ୍ୟ ଗଜ ସଙ୍ଗେ ଆରମ୍ଭେ ରଣ । ୨୮ ।

ନିଷାଦୀ ଗଜର ନେତ୍ର ଆବରଣ
ବାସ ଯେତେବେଳେ ମୋଚନ କରେ,
ଅନ୍ୟ ଗଜାରୋହୀ . ତେତେବେଳେ ଶର-
ବନ୍ଧି ବସ୍ତ୍ରନେତ୍ର ଭେଦନ କରେ । ୨୯ ।

ପ୍ରମତ୍ତ ନିଷାଦୀ ଅରି ଗଜ ପ୍ରତି
ଧାଇଁଥିବା ଗଜ ନେତ୍ରାବରଣ—
ଉନ୍ମୋଚନ କରେ ପୁଣି ଶଙ୍କୁଲଗ୍ନ-
ବର୍ମ ନେତ୍ରକୁ କରେ ଆବରଣ । ୩୦ ।

ଅନ୍ୟ ଗଜାରୋହୀ ମନରେ ବଜ୍ରିର
ଶତ୍ରୁଠାରୁ ଗଜକୁ ରକ୍ଷାକରେ,
ଆପଦ ଧନର ପର ନାଶକାଳେ
ଅଭୀପ୍ସ ଗଜର ରକ୍ଷଣ କରେ । ୩୧ ।

ମତଙ୍ଗଜଗଣ ଗଣ୍ଡଦାନ ବାରି
ଶୁଣ୍ଡର ପୃଷ୍ଠରେ କରି ଅଘ୍ରାଣ,
ଊର୍ଦ୍ଧ୍ୱଶିର ହୋଇ ଦନ୍ତ ଧ୍ୱନି କରି
ପରସ୍ପର ରଣେ ପ୍ରବର୍ତ୍ତମାନ । ୩୨ ।

ସ୍ଥୂଳ ଦୀର୍ଘତର ସୁଦୃଢ଼ ସୁନ୍ଦର
ଅତୀକ୍ଷ୍ଣ ଅନ୍ୟୋନ୍ୟ ଦନ୍ତେ ଆହତ—
ହେବାରୁ, ମାତଙ୍ଗ— ଦନ୍ତ ଭଗ୍ନ ହେଲା
ତଥାପି ରଣୁ ନ ହେଲେ ବିରତ । ୩୩ ।

ମତଙ୍ଗଜଙ୍କର ଦନ୍ତ ସଂଘଟ୍ଟନେ
ସ୍ୱର୍ଣ୍ଣାଭ ସ୍ଫୁଲିଙ୍ଗ ହେବାରୁ ଜାତ,
ମାଞ୍ଜିଷ୍ଠାଭ ସ୍ୱର୍ଣ୍ଣ— ଦଣ୍ଡଗ୍ରୁମର କି
ବୋଲି ବିଗୁରଲେ ସେ ସୈନ୍ୟବ୍ରାତ । ୩୪ ।

ମହ୍ରର ଉତ୍ପାତ— ବାତ ଅଶ୍ଳେଷଣେ
ଦନ୍ତ ମହୀରୁହ ମିଥ ଘର୍ଷଣ,
ସମ୍ଭୂତ ଯୁଗାନ୍ତ— ବହ୍ନିରେ ଉଚ୍ଛିରେ
ତେଜେ କରନ୍ତି ନଷନ ଦହନ । ୩୫ ।

ଅମ୍ଭୋଦ ଶ୍ୟାମଳ ସାମଜ୧ ବୃନ୍ଦର
ଶୋଣିତାକ୍ତ ଦନ୍ତ ଅରୁଣବର୍ଣ୍ଣ,
ବିଦ୍ରୁମ କନ୍ଦରେ୨ ବିଶୋଭିତ ହୁଏ
କି ଅବା ମହା ଅମ୍ଭୋନିଧି ଅର୍ଣ୍ଣ । ୩୬ ।

ରୋଷେ କରେ ଯୁଦ୍ଧ ଗ୍ରୀବାର ଶୃଙ୍ଖଳ-
ନିସ୍ୱନେ କେତନ କର କମ୍ପନ,
ଅନ୍ୟ ତେଜଅଙ୍ଗେ ମଗ୍ନ ଦନ୍ତଦ୍ୱୟ
ଅତି ଦୁଃଖେ କରଇ ଉତ୍ପାଟନ । ୩୭ ।

ସ୍ଥୂଳଦୃଢ଼ଦନ୍ତ ଶତ୍ରୁର କୁଞ୍ଜର
ପ୍ରାଣ ଉତ୍କ୍ରମଣକାଳେ ବେଦନା—
ପାଇ, ଊର୍ଦ୍ଧ୍ୱମୁଖେ ମେଘ ଲଗ୍ନ ଶୃଙ୍ଗ
ଉର୍ବିଧର ସଙ୍ଗେ କରେ ତୁଳନା । ୩୮ ।

---

୧ । ସାମଜ—ହସ୍ତୀ । ୨ । କନ୍ଦ—ମୂଳଦେଶ ।

ନାଜ ତେଜ ରଣେ     ଭଙ୍ଗ ଦେବା ଦେଖି
  ଯୋଦ୍ଧା ଦେହକୁ କର ଅବର୍ତ୍ତନ,
ଲଜ୍ଜାରେ ସାତ୍ୟକ     ବଳେ, ପ୍ରତିଦ୍ୱନ୍ଦୀ
  ଶରେ ଦେଖି କ୍ଲେଶ ଦଏ ତତ୍କ୍ଷଣ । ୩୯ ।

ସରମ୍ମୀ ବାରଣ     ନର୍ତ୍ତକ ସ୍ୱନରେ
  ସୈନ୍ୟ ମଧ୍ୟେ ପଶି ଭ୍ରମଇ ତଥା,
ପୂର୍ବ ଅଦ ଦେବ     ଉଦରେ ବଧାତା
  ସୃଷ୍ଟି ଶିକ୍ଷାରେ ଭ୍ରମିଥିଲେ ଯଥା । ୪୦ ।

ଭୃଙ୍ଗ ଶ୍ରେଣୀ ଶ୍ୟାମ     ପ୍ରଭ୍ର ନାରାଚରେ
  ବଦ୍ଧ ନାରନ୍ଦ୍ରଦେହ କରବର,
ତଥାପି ନର୍ତ୍ତକେ     ଅହବ ଇଚ୍ଛଇ
  ଲୋମାଞ୍ଚପର ଦଂଶେ ଲଗି ଶର । ୪୧ ।

ଏବୁଦ୍ଧ ନାଗରାଜ     ଗଣ୍ଡସ୍ଥଳୁ ମଦ-
  ଧାର ବହୁ ଦଶେ ଅରୁଣବର୍ଣ୍ଣ,
ଅଗ୍ରଲଗ୍ନଶର     କ୍ଷତ୍ରା ଉତ୍ଥିତରେ
  ଶୋଣିତଧାରରେ କରେ ମିଳନ । ୪୨ ।

ଅତି ସାହସରେ     ଦନ୍ତିଦନ୍ତଦ୍ୱୟ
  ମୃତ୍ୟୁ ଶଯ୍ୟାତଳ କମଣ କରେ,
ଅନ୍ୟକ୍ଷଣେ ସୈନ୍ୟେ     ସ୍ୱର୍ଗ ଅର୍ଦ୍ଧମାର୍ଗ-
  ଆରୋହୀ ବୋଲି ଭାବନ୍ତି ମନରେ । ୪୩ ।

ଖଡ୍ଗାଘାତେ କର—     କୁମ୍ଭ ବଦାରଣେ
  କୋଷ୍ଣାବିନ୍ଦୁତୁଲ୍ୟ ମୁକ୍ତା ସକଳ,
ବର୍ଷିହୋଇ ପଡେ     ବଲ୍ଲକାନ୍ତ ଜନେ
  ଗଗନ ତାରକାପର ଉଜ୍ଜ୍ୱଳ । ୪୪ ।

ଦୂରକ୍ଷିପ୍ତ ଚକ୍ରେ     ମତ୍ତ ହସ୍ତିରାଜ-
  ହସ୍ତଚ୍ଛିନ୍ନ ହୋଇ ଲୁଟେଇ ତଳେ,
ସରୋଷେ ମାତଙ୍ଗ     [illegible]
  ମିଶି [illegible] । ୪୫ ।

ତୀକ୍ଷ୍ଣ ଶରାଘାତେ    ଛିନ୍ନଜଙ୍ଘ କରୀ
    ଢଳି ନ ପଡ଼ି ଅବାଙ୍ମୁଖେ ତଳେ,
ଦୀର୍ଘ ଦୃଢ଼ ଦନ୍ତ—    ଦ୍ୱୟ ଅବଲମ୍ବି
    ସାହସେ ସ୍ଥିତ ଦେଖନ୍ତି ସକଳେ । ୪୬ ।

କରଦନ୍ତଦ୍ୱୟ    ଶତ୍ରୁର ଅଙ୍ଗରେ
    ନ ବାଜି ଭୂମିରେ ପ୍ରବେଶ କଲା,
ଦନ୍ତ ଅନ୍ତରାଳେ    ସ୍ଥିତ ଭଟ ଖଡ୍ଗ-
    ବାଜି ଶୁଣ୍ଡ ଛିନ୍ନ ଉଠି ସେ ଗଲା । ୪୭ ।

ଦୁଷ୍ଟ ଗଜ ଅଗ୍ରେ    ନିର୍ଭୀକ ବୀରକୁ
    ଶୁଣ୍ଡେ ଧରି ଊର୍ଦ୍ଧ୍ୱେ କ୍ଷେପଣ କରେ,
ବ୍ୟୋମବିହାରିଣୀ    ଅପ୍ସରାଗଣଙ୍କୁ
    କି ଅବା ପୂର୍ବୁଁ ସମର୍ପଣ କରେ । ୪୮ ।

ଦୂରରୁ ଆଗତ    ପ୍ରାଚପ କ୍ଷତବକ୍ଷ-
    ଗଜର ବହଇ ରୁଧିରଧାର,
ଅଗ୍ରତେ ଭଟକୁ    ବିଲୋକିଲେ ମଧ୍ୟ
    ଗ୍ରହଣେଚ୍ଛା ନ ହୁଏ ପୁନର୍ବାର । ୪୯ ।

କଂସ ବିଚୂର୍ଣ୍ଣିତ    ନନ୍ଦକନ୍ୟା ଅଙ୍ଗୁ
    ଚଣ୍ଡିକା ପ୍ରକାଶ ହେଲପରାୟ,
ଗଜବିଦାରିତ    ବୀରଅଙ୍ଗୁ ଜ୍ୟୋତି
    ଅମ୍ବରେ ଦେଖନ୍ତି ବିସ୍ମିତପ୍ରାୟ । ୫୦ ।

ଦାରୁଣାହ୍ଲାଦନ୍ତୀ    ଯୋଧା ଏକପାଦ
    ନିଜ ପାଦେ ମାଡ଼ି ଅନ୍ୟ ଚରଣ—
ଶୁଣ୍ଡେ ଧରି ଉଠେଇ    ବଂଶତରୁ ପରି
    ଅନାୟାସେ କରଇ ବିପାଟନ । ୫୧ ।

ଅଗ୍ରେ ପ୍ରିୟ ଭୃତ୍ୟ    ମରଣ ବିଲୋକି
    ସ୍ୱାମି ଅନ୍ତର୍ଦାହ ନ ହୁଏ ତଥା,
ଅନ୍ୟ ବଲ୍ଲଭର    ଅସମ୍ଭବ ମୃତ୍ୟୁ
    ଦେଖି ଅନୁତାପ ହୁଅଇ ଯଥା । ୫୨ ।

ଅର୍ଦ୍ଧଚନ୍ଦ୍ର ବାଣେ          ବୀର ଶିରଚ୍ଛନ୍ନ
ଅସିପାଣି ହୋଇ କରେ ନର୍ତ୍ତନ,
କବନ୍ଧକୁ ଖଡ୍ଗ—          ପାଣି ଦେଖି ସୈନ୍ୟ
ଭୟେ ପଳାନ୍ତ ହୋଇ ବ୍ୟସ୍ତମନ । ୫୩ ।

ହସ୍ତତାଳବାଦ୍ୟେ          ତୂର୍ଯ୍ୟର ଅରବେ
କାହାଳ ନାଦ୍ରନେ ସଙ୍ଗର ରସେ,
ନୃତ୍ୟନ ରହିତ          କବନ୍ଧ ନର୍ତ୍ତନ
କମ୍ପୁ ଦେଖି ଅତି ଉଚ୍ଚରେ ହସେ । ୫୪ ।

ନିଜସୈନ୍ୟଭଙ୍ଗ          ଦେଖି କେଉଁ ବୀର
ପ୍ରବିଷ୍ଟ ହୋଇ ଶତ୍ରୁ ସମ୍ମୁଖରେ,
ସ୍ୱର୍ଗପ୍ରାଙ୍ଗଣରେ          ଅଚ୍ଛାଦେ ତା ଦେଖି
ସାଧୁବାଦ ଦେଲେ ନଭେ ଅମରେ । ୫୫ ।

ବାଣେ ନିପାତିତ          ହେବାରୁ ଆରୋହୀ
ଶୂନ୍ୟାସନ ବନ୍ଲେକ ସୈନ୍ୟଗଣେ,
ଧରିବାକୁ ରୋଧ          କରିବାରୁ, କାଣି
ରୋଷେ ରଣକ୍ଷେତ୍ରେ ଭ୍ରମେ ବାରଣେ । ୫୬ ।

ପୁନଃପୁନଃ ଯୋଧା          ଯୁଦ୍ଧେ ଭ୍ରମିବାରୁ
ଅସ୍ତ୍ରଗନ୍ଧେ ମତ୍ତହୋଇ ବାରଣ,
କୋପେ ଲୋକ ମର୍ଦ୍ଦି          ପାଶ କଳ୍ପମାଳା
ପାଦଲଗ୍ନରେ କଲା ଆକର୍ଷଣ । ୫୭ ।

ନିଷ୍ଠୁର ପ୍ରହାର          ପାଇ କେଉଁ ବୀର
ମୂର୍ଚ୍ଛିତେ ପଡ଼ନ୍ତୁ ଧରଣୀତଳେ,
ନାକନାରୀ ତାକୁ          ନେଇଅସି ଦେଖି
ଗଜସିକ୍ତେ ୧ ଜୀବୀ, ଫେରେ ବିଫଳେ । ୫୮ ।

---

୧ । ଗଜସିକ୍ତ ହସ୍ତୀର ଶୁଣ୍ଡାଗ୍ର ପ୍ରୁଷ୍ଟର ଶୀତଳଶୀକର ଦ୍ୱାରା ।

ଶତ୍ରୁଶରେ ଛିନ୍ନ— ଗ୍ରୀବା କାହା ଶିର
ଶରେ ଊର୍ଦ୍ଧ୍ୱେ କରିବାରୁ ଗମନ,
ଭୟଙ୍କର ରାହୁ ବୋଲି ଭୟ କଲେ
ମୃଗଚନ୍ଦ୍ରଶୋଭିଅମରୀଗଣ । ୫୯ ।

କେ ଅମର୍ଷୀ ରଣେ ମୃତଶୂର ଘେନି
ରମଣେ ମେରୁ କୁଞ୍ଜକୁ ଗମନ—
କରେ, ତା' ସ୍ୱପତ୍ନୀ ଅନଳରେ ପୋଡ଼ି
ଯାବତ ନ କରଇ ଆଗମନ । ୬୦ ।

କରିଣୀ-ଆରୂଢ଼ା କେଉଁ ସତୀ, ରଣେ
ସ୍ୱାମିଙ୍କ ମୃତ୍ୟୁ ଦେଖି ନିଜପ୍ରାଣ—
ବରଜି, ଅଖଣ୍ଡ ଦେବଦେହକୁ ଲଭି
ସ୍ୱାମିସଙ୍ଗେ ସ୍ୱର୍ଗେ କରେ ପ୍ରୟାଣ । ୬୧ ।

ଚ୍ଛିନ୍ନାଙ୍ଗ ଜନତା— ଧାରଣୀ ଅମର୍ତ୍ତ୍ୟ-
ଦ୍ୱାରା ଆଶ୍ଳିଷ୍ଟ ହୋଇ କେଉଁ ବୀର,
ସ୍ୱର୍ଗେ ଯାଏ, ଦୁଇ— ଲୋକେ କୀର୍ତ୍ତି ରଖି
ସମରେ ଅର୍ପିଥିଲା ନିଜଶିର । ୬୨ ।

କେ ବୀର ମୂର୍ଚ୍ଛିତ— ଅନ୍ତରାତ୍ମା, ରମ୍ୟ—
ବନ୍ଧୁସଦନେ ପ୍ରବେଶି, ଅସି,
ଚେତନା ପାଇବା ମାତ୍ରେ ରଣେ ଭ୍ରମେ
କୋପେ ପୂଣି ଅନେକ ଶତ୍ରୁ ନାଶି । ୬୩ ।
କେ ବୀରକୁ ଯୁଦ୍ଧେ ମୂର୍ଚ୍ଛିତ ବିଲୋକି
ଯୁଦ୍ଧୁଁ ନେଇଁ ତାହାର ମିତ୍ରଗଣ,
ସଞ୍ଜ୍ଞା ଲାଭ କରି ତାଙ୍କୁ ଗାଳି ଦେଇ
ଫେରି ସଂଗ୍ରାମରେ ଦିଏ ଜୀବନ । ୬୪ ।

କେ ଦୁଇ ବୀରଙ୍କ ଦୁଇ ବକ୍ଷସ୍ଥଳ
ଶତ୍ରୁ ଏକ ଶରେ ହେବାରୁ ଭିନ୍ନ,
ଊର୍ଦ୍ଧ୍ୱସ୍ଥ ହେଲେହେଁ ମୃତ ହେଲେ ସଦା
ଦୁହିଙ୍କ ଦମ୍ଭେ ହୋଇ ନୁହେଁ ଛିନ୍ନ । ୬୫ ।

ଅସ୍ତ୍ର ବିଦାରିତ    ମୂର୍ଚ୍ଛିତ ବୀରଙ୍କୁ
ବିନାଶଉଦ୍ୟୋଗିସୈନ୍ୟଙ୍କୁ ରୁହିଁ,
ଜରନ୍ତି ବାରଣ    ଅନ୍ୟ ବୀରେ, ପ୍ରାଣ-
ଥାଉଁ ଧର ଯଣେ କା ଇଚ୍ଛା ନାହିଁ । ୬୬ ।

ଭଗ୍ନଦଣ୍ଡ ଶ୍ୱେତ—    ଛତ୍ର ଭୂମି ପରେ
ଉତ୍ତାନ ଭାବରେ ଅଛଇ ପଡ଼ି,
ପ୍ରେତରାଜଙ୍କର    ଅହାର ସକାଶେ
ରୌପ୍ୟଥାଳୀ ତ୍ୱଷ୍ଟା[୧] ଅଛୁ କି ଗଢ଼ି । ୬୭ ।

ମୃତ ନୃପଗଣ    ବକ୍ଷସ୍ଥ କୁଙ୍କୁମେ
ସିକ୍ତ ମୁକ୍ତାହାରେ ତଥା ଶୋଭନ୍ତି,
ପୂର୍ଣ୍ଣକାମ ହୋଇ    ରକ୍ତମଦ୍ୟ ପିଇ
ମୃତ୍ୟୁକୁ ସଦର୍ପେ କିବା ହସନ୍ତି । ୬୮ ।

ଅସ୍ତ୍ରକ୍ଷତ ରକ୍ତ    ରାଶୀଭୂତ ହୋଇ
ଭୂମିତଳେ ପଡ଼ିଅଛି ପ୍ରସରି,
ଦିଶେ ଅନୁକରି    ପୁରନାରୀ ବସ୍ତ୍ର
ରଞ୍ଜନେ କୌସୁମ୍ଭଜଳର ପରି । ୬୯ ।

ଏକବିଂଶବାରେ    କ୍ଷତ୍ରିୟ ରକ୍ତରେ
ଭାର୍ଗବେ ପଞ୍ଚହ୍ରଦ ବିନିର୍ମିତ—
ହୋଇଥିଲା, କ୍ଷଣ—    ମାନବେ ଏ ଯୁଦ୍ଧେ
ଅସଂଖ୍ୟ ରକ୍ତନଦୀ ପ୍ରବାହିତ । ୭୦ ।

ଅସ୍ତ୍ରଧାରସୈନ୍ୟେ    ରଥ ତଳଦେଶେ
ଲମ୍ବାୟିତ ଭାବେ ଗଜଚରଣ—
ଛେଦନେ ରୁଧିର—    ନଦୀରେ ଭାସିଲେ
କୂର୍ମର ଉପମା କରି ଧାରଣ । ୭୧ ।

---

୧ । ତ୍ୱଷ୍ଟା—ବିଶ୍ୱକର୍ମା ।

ଭମଳ ସଧୃଣ ଯୋଦ୍ଧାଙ୍କ ବଦନ
ଇନ୍ଦ୍ରକଣ୍ଠଭ୍ରଷ୍ଟ ଗୃମର ହଂସ—
ପ୍ରାପ୍ତ ଶୋଭା ଧଣି ରୁଧିର ସରିତ
ପ୍ରବାହିତ ହୁଏ ସଂଗ୍ରାମ ବଂଶ । ୭୨ ।

ଅମିଷଲୋଭରେ ଶବଙ୍କ ଉପରେ
ଆକାଶେ ଉଡ଼ନ୍ତି ଗୃଧ୍ରାଦିଗଣ,
ଦାରୁଣ ଅସ୍ତ୍ରରେ କାଯୁ ତେଜି ମୂର୍ତ୍ତି—
ପ୍ରାଣ ଅନ୍ୟକାଯ୍ୟେ ପ୍ରବେଶେ ମନ । ୭୩ ।

ଦୂରୁ ପକ୍ଷପୁଙ୍ଖ ନାଦେ ଶର ଅସି
ଅଜୀବେ ସୈନ୍ୟ ରକ୍ତ ପାନକଲେ,
ପକ୍ଷପଛୁ ନାଦେ ସଜୀବେ ପ୍ରବେଶି
ଅଜୀବ ସୈନ୍ୟ ରକ୍ତ ପାନକଲେ । ୭୪ ।

ଶିବାଗଣ, ରଣେ— ମୃତ ତେଜସ୍ୱିଙ୍କ
ଗାତ୍ର ସଙ୍ଗେ ତେଜ କର ଭକ୍ଷଣ,
ନ ପାର ସମ୍ଭାଳି ଶବ୍ଦ ଛଳେ ପୁଣି
ତେଜଜ୍ୱାଳା କଲେ ଉଦବମନ । ୭୫ ।

ନରଜନ୍ତ୍ରର ଛଳ ଦେହ ଅନ୍ତରାଳ
ବାଣ ଲଗିବାରୁ ସୈନ୍ୟଙ୍କ ଗାତ୍ର,
ଦୁର୍ଲକ୍ଷ ହେତୁରୁ ଦେହଜ୍ୱାଳାପାକେ
ଶିବାଗଣ ଭକ୍ଷିଲେ ଅନ୍ତମାନ । ୭୬ ।

ଶିବା ମ୍ଳାନହାସ୍ୟ କ୍ଷୁଧା ପ୍ରବୋଧକ
ଅଜୀର୍ଣ୍ଣ ଶେଷର କାରଣ ପାଇଁ,
ରୁଧିର ଅରିଷ୍ଟ ପାନ କରି ମୋଦେ
ଅଜୀର୍ଣ୍ଣଙ୍କୁ ଦୂର କରଇ ଧାଇଁ । ୭୭ ।

କଙ୍କ ଗୃଧ୍ର ଶିବା    ମେଦର ଲୋଭରେ
ଆନକମୁଖ କଲେ ବିଦାରଣ,
ଦିଶିଲା କାଳିକା    ସୈନ୍ୟଙ୍କୁ ଗିଳିବା
ସକାଶେ ବ୍ୟାଦାନ କରେ ଆନନ । ୭୮ ।

ନଷ୍ଟପ୍ରାଣ ସୈନ୍ୟଙ୍କ    ଅବୟବେ କୀର୍ଣ୍ଣ
ହୋଇଥିବାରୁ ସେ ରଣ ଅଙ୍ଗଣ,
ସୃଷ୍ଟିକର୍ତ୍ତାଙ୍କର    ଅର୍ଦ୍ଧସୃଷ୍ଟ ସୃଷ୍ଟି-
କର୍ମଶାଳା ପ୍ରାୟ ଦିଶେ ଶୋଭନ । ୭୯ ।

ରାଜଅନୀକନୀଗଣ    ଉଦ୍ଧତ ଭାବ ଧାରଣ-
କରି ବେଗେ ଅବିରତ ଆସି,
ଶ୍ରୀପତି ସୈନ୍ୟ-ବାରିଧି—    ତରଙ୍ଗେ ଶତ୍ରୁ-ସରିତ
ପ୍ରବେଶେ ପକାଉଥିଲେ ଗ୍ରାସି । ୮୦ ।



# ଏକୋନବିଂଶ ସର୍ଗ

ତୁମୁଳ ଯୁଦ୍ଧ— ଧରେ ସଂଗ୍ରାମ-
ବନେ ନୃପପାଦପ—
ସଂଘର୍ଷେ ଅଗ୍ନି— [illegible]
ବାଣସୁତ-ଅସ୍ତ୍ରପ । ୧ ।

କ୍ରୋଧେ ଆଗତ • ବେଣୁଦାରିକ
ବିଲୋକ ବଳରାମ
ମତଙ୍ଗଜକୁ କେଶରୀ ପ୍ରାୟ
ଗର୍ଜି କଲେ ସଂଗ୍ରାମ । ୨ ।

ଜଜାଜ୍ଜଜତ ତତାତ୍ତତତ
ତ୍ୱତତ୍ତୁଦତତତର, (ଏକାକ୍ଷର ପାଦ)

ଭାଭାଭୀଭଭ ଭାଭଭୂଭାଭୂ
ରିରିରବିରୀରର,
ସଂଗ୍ରାମଜୟୀ ସେ ବଳଭଦ୍ର
ଉଦ୍ଧତର, ଗଜର—
ପାଶେ ନକ୍ଷତ୍ର— ତେଜେ ସ୍ୱକୀୟ-
ରଥ କଲେ ଉପୁର । ୩ ।

ଜଗତ ଭୟ— ଜନ୍ମାଇ କ୍ରୋଧେ-
କମ୍ପାଇ ମହୀତଳ,
ନିର୍ଘାତ ପ୍ରାୟ ନିର୍ଘୋଷେ ଧାଇଁ
ହଳରଥ ବିମଳ । ୪ ।

ଉଦ୍ଧତ ବିପ୍ର ପ୍ରଗଳ୍ଭ ଭାବେ
ହଳୀଙ୍କୁ ବିନ୍ଧେ ଶର,
କ୍ରୋଧରେ ହଳୀ ବେଣୁଧାରିଙ୍କୁ
ବିନ୍ଧିଲେ ତୀକ୍ଷ୍ଣଶର । ୫ ।

ବଳଙ୍କ ବାଣେ ମୂର୍ଚ୍ଛା ଯିବାରୁ
ଗର୍ବୀ ବାଣନନ୍ଦନ,
ସାରଥି ଶୀଘ୍ର ରଥକୁ ଘେନି
ତେଜିଲା ରଣାଙ୍ଗଣ । ୬ ।

ଶିନିଙ୍କ ସୈନ୍ୟ ଶାଲ୍ୱର ସେନା
ପ୍ରଭାବେ କରି ଜୟ,
ଫୁଲ୍ଲାବ୍ଜମୁଖେ ଗର୍ଜିଲେ ଉଚ୍ଚେ
ବାହିନୀ କଲେ ଭୟ । ୭ ।

ଉଲ୍ମୁକ ନୃପ ତେଜ ପ୍ରକାଶି
ଦ୍ରୁମ ନୃପଙ୍କୁ ବଳେ,
ଆକର୍ଷେ କ୍ରୋଧେ ଉଲ୍ମୁକ[1] ଯଥା
ଦ୍ରୁମକୁ[2] ପାଇ ଜଳେ । ୮ ।

ରୁକ୍ମି ନୃପତି ପୃଥୁ ରାଜାର
ଧନୁକୁ ଘୃଣା କଲା,
ସେ ନିନ୍ଦା ଶୁଣି ଲଜ୍ଜାରେ ପୃଥୁ
ରଣୁ ଗମନ କଲା । ୯ ।

ଅନବରତ ଚୈଦ୍ୟର ସୈନ୍ୟ
ଶେଷେ ହେଲେ ଧାବତ,
ଏକ ପ୍ରଦ୍ୟୁମ୍ନ ନଦୀ, ସମୁଦ୍ର-
ପରି ପ୍ରତିରୋଧିତ । ୧୦ ।

---

୧ । ଉଲ୍ମୁକ—ଜ୍ୱଳନ୍ତକାଷ୍ଠ, ଅଙ୍ଗାର ୨ । ଦ୍ରୁମ—ବୃକ୍ଷ, ଦ୍ରୁମାଖ୍ୟ ରାଜା ।

ଅୟସଂ[1] ବର୍ମେ ସୁବର୍ଣ୍ଣ ଶର
ବାଜ ଦିଶଇ ଶୋଭା,
ଘନ ମଧ୍ୟେ କି ବିଜୁଳି କରେ
ଜନନୟନଲୋଭା ।୧୧।

ନଖାଂଶୁପୃଷ୍ଠେ ଶିଳୀମୁଖଙ୍କ[2]
ଗତାଗତେ ଶୋଭିତ,
ଧନୁ ଶାଖାରେ ଭ୍ରମନ୍ତ ତରୁ
ପ୍ରାୟ ମନ ଲୋଭିତ ।୧୨।

ରିପୁ ଅନ୍ତକ ପ୍ରଦ୍ୟୁମ୍ନ ବୀର
ଭୀଷଣ ଯୁଦ୍ଧ ପାଇ,
ସୌଜନ୍ୟ ନମ୍ରେ ବନ୍ଧଇ ଶର
ରିପୁ ପଳାଏ ଧାଇଁ ।୧୩।

ପୂର୍ବ ଋଷି ତପେ ଜୟ ଶଙ୍କାରେ
ବନ୍ଧିଲେ ବହୁ ଶର,
ବାଣେ ଛେଦନ କଲେ ସକଳ
ସେ କାର୍ଷ୍ଣି ବୀରବର ।୧୪।

ଯେ ସୈନ୍ୟଗଣ କପଟ ଭାବେ
ସାରତା ଲଭିଥିଲେ,
ଧନୁ ଆକର୍ଷି ପ୍ରଦ୍ୟୁମ୍ନ ବୀର
ଶରେ ଶର ଛେଦିଲେ ।୧୫।

ପ୍ରଦ୍ୟୁମ୍ନ ବୀର ଉତ୍ତମୌଜାର[3]
ବଳ କ୍ଷଣକେ ଚୂର୍ଣ୍ଣ,
କଲେ, ଅମୁଖ୍ୟ, ରଣେ, ନିଜର
ନାମ ମୁଖ୍ୟତା ଚୂର୍ଣ୍ଣ ।୧୬।

---

୧ । ଅୟସ—ଲୌହ ନିର୍ମିତ ।  ୨ । ଶିଳୀମୁଖ—ଶର, ଭ୍ରମର ।
୩ । ଉତ୍ତମୌଜାର—ଉତ୍ତମୌଜା ନାମକ ରଜା ।

କୁମାର ଯୋଉଁ ସୈନ୍ୟଙ୍କୁ ବାଣେ
କରିଛନ୍ତି ପ୍ରହାର,
ରଣଭୂମିକି ସେ ବଦ୍ଧପ୍ରେ ନ
ଆସନ୍ତି ପୁନର୍ବାର । ୧୭ ।

ପ୍ରଦ୍ୟୁମ୍ନ ବଳେ ପୀଡ଼ା ଯାହାକୁ
ଅନାଦରେ ମୋଚନ—
କଲେ, ବିଲକ୍ଷ ଶତ୍ରୁକୁ, କଲୁ
ବାରଣ ବିଲକ୍ଷ୍ୟ ନ । ୧୮ ।

ଅତି ପ୍ରଚଣ୍ଡ କାର୍ଷ୍ଣି ସମର
ଦେଖି ଅମରଗଣ,
ବ୍ୟୋମେ ବିହରି କରନ୍ତି ଉଚ୍ଚେ
ପ୍ରଶଂସା ଉଚ୍ଚାରଣ । ୧୯ ।

ଦିଗ ସୁଗନ୍ଧ — କରି କୁସୁମ
ଦେବେ ପ୍ରଦ୍ୟୁମ୍ନ ଶିରେ—
ବର୍ଷଣ କଲେ, ପ୍ରଦ୍ୟୁମ୍ନ ଯଶ
ଗଗନରେ ବିସ୍ତାରେ । ୨୦ ।

କାର୍ଷ୍ଣିଙ୍କ ରଣ ସହି ନ ପାରି
କେ ଆଗେ ନ ରହିଲ,
ପ୍ରଦ୍ୟୁମ୍ନ ଯଶ ଜଳଦ ଭେଦି
ସ୍ୱର୍ଗରେ ପ୍ରକାଶିଲା । ୨୧ ।

କୁସୁମକେତୁ ତୀକ୍ଷ୍ଣ ମାର୍ଗଣେ
ସେ ଭୟଙ୍କର ରଣେ,
ଅପମସ୍ତକ ହେଲେ ଅଚିରେ
କେଶ ପ୍ରଚୁର ଜନେ । ୨୨ ।

ଚୈଦ୍ୟବାହିନୀ ପ୍ରଦ୍ୟୁମ୍ନ ଶରେ
ଭୟେ ହେଲେ କାତର,
ଯୁଦ୍ଧିଲେ ବୀରେ ଦର୍ପ ସହିତେ
ଶେଷେ ପାଇଲେ ଦର । ୨୩ ।

ଜୟଲକ୍ଷ୍ମୀରେ ସମାଲିଙ୍ଗିତ
ବୃଷଧ୍ୱଜକୁ ଚାହିଁ,
କୋପେ କୁପିତ ଚେଦିଭୂପତି
ନିକଟେ ହେଲା ଯାଇ । ୨୪ ।

ମାନୀ ଚେଦୀପ ଜଳଦ ସମ
ତୁରଙ୍ଗ ଘୋଷ ଗରେ,
ଶତ୍ରୁ ସମ୍ମୁଖେ ଦୃଢସ୍ଥ ହେଲା
ସେନା ଚତୁରଙ୍ଗରେ । ୨୫ ।

ଧନୁର ମୌର୍ବୀ ଆକର୍ଷଣରେ
ହେଲା ଭୀଷଣ ସ୍ୱନ,
ଯୁଗାନ୍ତେ କ୍ଷୁବ୍ଧ ଅର୍ଣ୍ଣବ ଶବ୍ଦ
କଲା ଅନୁକରଣ । ୨୬ ।

ଜିହ୍ୱାଗ୍ର ଶତ୍ରୁ— ଚଉ ଭେଦରେ
କାୟନାଶ ସାୟକ,
ସଂଗ୍ରାମେ ରାଗୀ ବାହଶ୍ରେଷ୍ଠଙ୍କ
ହ୍ରେଷାବାଦଦାୟକ । ୨୭ ।

ଚଞ୍ଚଳ ଅସି— ଜ୍ୱାଳାସଙ୍କୁଳ
ଶ୍ୟାମଳ ଲୌହବର୍ମ,
ଯମ ଭ୍ରାତାର ସାହାଯ୍ୟେ, ସ୍ୱସା
ଯମୁନା କରେ କର୍ମ । ୨୮ ।

ଚୈକ୍ଷବନାଦେ ମତ୍ତବାହିନୀ
ଅଦୁଷ୍ଟ ଗଜସଙ୍ଗେ,
ଅବ୍ୟର୍ଥଭାବେ ଗମନ କଲେ
ଭୀଷଣ ରଣରଙ୍ଗେ । ୨୯ ।

ନୃପତିଙ୍କର ଅଗ୍ରେ ଗମିଲେ
ଧୃତ କୃପାଣଧାରୀ,
ଅନୁଜୀବଙ୍କ ଶୌର୍ଯ୍ୟ ନିକଷ
ସ୍ଥାନେ ମଣିବେ ମାରି । ୩୦ ।

ଶୀତୋଷ୍ଣ ଦୋଷ ହୀନ ସ୍ୱର୍ଗକୁ
ଯିବାକୁ ଇଚ୍ଛାକର,
କାଏ କୃପାଣ ନ ଧରେ ସେତେ
ମରଣକୁ ନ ଡ଼ର । ୩୧ ।

ସେନାସମୂହ ଅହମିକାରେ
ବାହୁଦଣ୍ଡରେ ରଣ—
କର, ଶେଷରେ ଇତରେଇତରେ
ଲଭନ୍ତୁ ସୁମରଣ । ୩୨ ।

ଯୁଦ୍ଧକ୍ଷେତ୍ରରେ ଦର୍ପହାରକ
ଉତ୍ସାହୀ ସେନାଗଣ,
ଗର୍ଜନ୍ତି ରାଜ ଇଭ ସହିତେ
ମାଡ଼ ଉଠଇ ରଣ । ୩୩ ।

ଗର୍ଜନ୍ତି କରୀ— ସୈନ୍ୟକେ ମିଳି
ସଂଗ୍ରାମ ଭୂମିପରେ,
ଦର୍ପଦଳନ ମାନ ହୁଙ୍କାର
ଭୀଷଣାକାର ଧରେ । ୩୪ ।

ମୂର୍ତ୍ତିରେ ଗ୍ରାହୀ ସୁମଧ୍ୟ ଭାଗ
ଯୌବନ ଉଦ୍ଧତରେ,
ବଳେ ଅକୃଷ୍ଟ ହୋଇ ସେ ଧନୁ
ଉଚ୍ଚେ କନ୍ଦନ କରେ । ୩୫ ।

ସହସ୍ର ଘଣ୍ଟା ବାଜିଲା ଉଚ୍ଚେ
ପ୍ରସ୍ଥାନରେ କରେଣୁ,
କରେ ଶୀକର ଧେନୁ ସେଚନେ
ଶମିତ ହେଲା ରେଣୁ । ୩୬ ।

ନବ ସିନ୍ଦୂରେ ରଞ୍ଜିତ ହୋଇ
ଶମିଲେ ଦ୍ୱିପଗଣ,
ରଣକ୍ଷେତ୍ରରେ ରୌଦ୍ରରସକୁ
ସେତେ କଲେ ଧାରଣ । ୩୭ ।

ପ୍ରଭୁଙ୍କଠାରୁ ସହ୍ଲାଦ ଘେର
ଉତ୍ସାହେ ସେନାଗଣ,
ଯୁଦ୍ଧକ୍ଷେତ୍ରରେ ପ୍ରବେଶି ବେଗେ
କଲେ ଭୀଷଣ ରଣ । ୩୮ ।

ବାଣାହ୍ୱ ପୂର୍ଣ୍ଣ ତୂଣୀର ବଳ
ସେ ରଣ ଅଙ୍ଗଣରେ,
ଶୋଭିଲ ଗୋଧା— ଅଙ୍ଗୁଳିତ୍ର ଭୁଜ—
ଶାଖା ଧନ୍ୱିଶାଖୀରେ । ୩୯ ।

ଏ ଚନ୍ଦ୍ର ଯୁଦ୍ଧେ ଚୈଦ୍ୟର ସେନା
ଧୃଷ୍ଟତା ଅବଲମ୍ବି,
ନିର୍ଭୟେ ଶତ୍ରୁ— ସୈନ୍ୟେ ପ୍ରବେଶ-
କଲେ, ସକଳେ ଦମ୍ଭୀ । ୪୦ ।

ସର୍ବତୋଭଦ୍ର କ୍ଷେମଙ୍କର
ଗୋମୁତ୍ରିକାଛନ୍ଦରେ,
ମହାକାବ୍ୟର ଶ୍ଳୋକର ପର
ବ୍ୟୂହ ରଚନା କରେ । ୪୧ ।

ଅତୁଳ ତେଜେ ଯାଦବସୈନ୍ୟ
ଚୈଦ୍ୟସେନା ସମ୍ମୁଖେ,
ରଣ ଉଦ୍ଧତେ ପ୍ରବିଷ୍ଟ ହେଲେ
ହୁଙ୍କାର କରି ମୁଖେ । ୪୨ ।

ଜନସଙ୍କୁଳ ଅତ୍ୟନ୍ତ ଦୀର୍ଘ
ରଥ୍ୟା ପରାଯ୍ୟ ଦଣି,
ଶତ୍ରୁର ସୈନ୍ୟ ରାଜପଥରେ
ସଣଦ୍ଧେ ଗଲେ ମିଶି । ୪୩ ।

ଅଚଳାକାର ଅଶ୍ୱବାରଣ
ଶତ୍ରୁସୈନ୍ୟେ ସଙ୍ଗରେ,
ଶତ୍ରୁବିନାଶ— କରିବା ଇଚ୍ଛି
ପ୍ରତିଷେଧ ନ ଧରେ । ୪୪ ।

ବହିଁଣ କଲ୍ଲ ପ୍ରାଣହାରକ
ଶଲ୍ଲ ଆୟୁଧ ଶରେ,
ନାଗ ଉପରେ ପଡ଼ଲ୍ଲ ଯାଇ
ଅତ ତୀବ୍ରବେଗରେ । ୪୫ ।

ଗର୍ଜନ କର ଯୁଦ୍ଧେ ପ୍ରବୃତ୍ତ-
ହୋଇ ଅବଷାଦରେ,
ମାତଙ୍ଗଗଣ ବର୍ଷଣ କଲେ
ଦାନ ନୀଜର କରେ । ୪୬ ।

ଅଗ୍ରେ ପ୍ରଯୁକ୍ତ ହୋଇ ସୈନିକେ
କଲେ ଦ୍ରୁତଗମନ,
ଗାନ୍ଧର୍ବଲମ୍ବ ପ୍ରକ୍ରମ ପର
ଶୋଭା କଲେ ଧାରଣ । ୪୭ ।

କେ ବୀର ଖଡ୍ଗେ ସେନାମଣ୍ଡଳ
ବେଗେ କରେ ଖଣ୍ଡନ,
ମହୀମଣ୍ଡଳେ ବ୍ୟାପିଲ୍ଲ ଯଶ
ବୀର ଧର୍ମମଣ୍ଡନ । ୪୮ ।

କେବୀର ଖଡ୍ଗ ପରବାରରୁଂ
ପୃଥକ କଲ୍ଲ ନେଇ,
ସୈନ୍ୟ ମଧ୍ୟରେ ପଡ଼ ନୀଷ୍ଟୁରେ
ନୀଜ ଅସ୍ତ୍ରାକୁ ଦେଇ । ୪୯ ।

କେ ବୀର ବେଗେ ବଲାସ କ୍ରମେ
ଖଡ୍ଗ ଉଦ୍ୟତ କର,
ଅପରମିତ ସୈନ୍ୟ ବନାଶେ
ସୈନ୍ୟେ ପଲାନ୍ତ ଡର । ୫୦ ।

ସହସ୍ରସଂଖ୍ୟା ସୈନ୍ୟ ବନାଶେ
ନାଚେ ଏକ କବନ୍ଧ,
ଏ ରଣେ ସଦା ସହସ୍ରାଧିକ
ନାଚୁଛନ୍ତ କବନ୍ଧ ।୫୧।

୧ । ପରବାରଃ—ଖଡ୍ଗକୋଶଃ; ପଦ୍ମକନଃ ।

ଶସ୍ତ୍ର ଶ୍ରବଣେ ଅଲଙ୍କରଣେ୧
ହୋଇଅଛୁ ଭୂଷିତ୨,
ଶ୍ରବଣ ପର ଅଲଙ୍କ ରଣେ
ହୋଇଅଛୁ ଭୂଷିତ । ୫୨ ।

ଶତ୍ରୁର ଉରୁ ଛେଦନେ ଅନ୍ୟ-
ବୀର ରୁଧିର କାୟ,
ଅରୁଣବର୍ଣ୍ଣ ରକ୍ତବିଗ୍ରହେ
ଦଶେ ଅନୁରୁ ପ୍ରାୟ । ୫୩ ।

ସାଗର ସମ ସେ ମହାହବ
ଦକ୍ଷଯଜ୍ଞର ପର,
ଶିବଙ୍କ କୋପ • ସଦୃଶ ମାତେ
ଭୟଙ୍କରତା ଧରି । ୫୪ ।

ଶତ୍ରୁର ଖଡ୍ଗେ ଭଗ୍ନ କୃପାଣ
ରେଷେ ପଦାତଗଣ,
ମାତଙ୍ଗ ପରି ଶତ୍ରୁ ସୈନ୍ୟଙ୍କୁ
ଦନ୍ତେ କଲେ ଛେଦନ । ୫୫ ।

ମହାଯୁଦ୍ଧରେ ମତ୍ତମାତଙ୍ଗ
କଲେ ମଧ୍ୟ ଦଳନ,
ତଥାପି କେହ୍ନ ରଣକ୍ଷେତ୍ରରୁ
ନ କଲେ ପଳାୟନ । ୫୬ ।

ପ୍ରଭୁସତ୍କାର ପାଇ ଅନୃଣୀ-
ହେବାକୁ ଇଚ୍ଛାକରି,
ଜୀବନ ଯିବା ଯାଏ ଯୁଦ୍ଧନ୍ତି
ସୈନ୍ୟ ପଳାନ୍ତି ଡରି । ୫୭ ।

---

୧ । ଅଲଙ୍କରଣ—ଅଳଙ୍କାର, କଳଙ୍କ ରଣ ।
୨ । ଭୂଷିତ—ଅଳଂକୃତ; ଭୂ—ଭୂମି—ଉଷିତ—ସ୍ଥିତ ।

ଯଶର ପାଇଁ ରଣାର୍ଥୀ ହୋଇ
ଅଶସ୍ତ୍ର କଲେ ଦ୍ୱେଷ,
ଅପଯଶର ନିବାରଣରେ
ମରଣେ ହେଲେ ତୋଷ । ୫୮ ।

ଶାକ୍ତିକମାନେ ସୁତୀକ୍ଷ୍ଣଶକ୍ତି
ସମଗ୍ର ଫଳ ପାଇଁ,
ଶତ୍ରୁ ଉପରେ ନିକ୍ଷେପ କଲେ
ଶସ୍ତ୍ରରେ ବଳ ଥାଇ । ୫୯ ।

ନୃପତିଗଣ ଅପଦେ ମଧ୍ୟ
ନୀତିମାର୍ଗେ ଯୁଝିଲେ,
ଦେବତାଗଣ ଗଗନେ ଥାଇ
ବିସ୍ମୟ ପ୍ରକାଶିଲେ । ୬୦ ।

ଧନୁର୍ଗଣିକା— ଯର, କାମୁକ-
ପ୍ରାପ୍ତ, ସୁଧନ୍ୱୀଗଣ,
ସଫଳାବଧି ଗୁଣେ ଓଠାଇ
କରନ୍ତି ବିମୋଚନ । ୬୧ ।

ସତ୍ୱରଗାମୀ— ଅଶ୍ୱ, ସାଦ୍ୟକ
ସେ ଭୀଷଣ ଯୁଦ୍ଧରେ,
ଶତ୍ରୁସୈନ୍ୟର ମଧ୍ୟେ ପ୍ରବେଶ
କଲେ ପ୍ରବଳତରେ । ୬୨ ।

ଫଳକୁ ଅଗ୍ରେ ବିଧାନ କରି
ସପୁଙ୍ଖ ଅଶସ୍ତ୍ରରେ,
କୃତ ପୁଂଙ୍ଖରେ ମାର୍ଗଣଗଣ
ଗଲେ ଲକ୍ଷ ଲଭିରେ । ୬୩ ।

କେ ବୀର ଅଗ୍ରେ ସମର୍ପିଗତି
ଶତ୍ରୁକୁ ବିନ୍ଧେ ଶର,
ଜପାକୁସୁମ ବର୍ଣ୍ଣେ ରୁଧିର
ବହେ ପ୍ରବଳତର । ୬୪ ।

ସମରକାମୀ ଦୂରୁ ଆଗତ
ଯେ ବେନି ଇଭଙ୍କର,
ଅନ୍ତର୍ବେଦ ପର୍ଯ୍ୟୁ ଦଶେ
ରଣେ ହତ କୁଞ୍ଜର । ୬୫ ।

( ବ୍ୟଷର )

ଭୂର ଭାରରେ ଭୀରେ ଜଭାରେ
ଭୀର ଭେରରେ ଭର,
ଭାରାଭାଭରେ ଭୀର ଭରରେ
ଭୂଭାର ଭୀର ଭର । ୬୬ ।

ପ୍ରହାରପଟୁ ମାତଙ୍ଗକୁଳ
ଦନ୍ତ ଭଗ୍ନରେ ଯଥା,
ଅଧୈର୍ଯ୍ୟ ହେଲେ ଖଣ୍ଡରେ ଶୁଣ୍ଡ-
ଚ୍ଛେଦନେ ନୋହିଲେ ତଥା । ୬୭ ।

ମାତଙ୍ଗଗଣ ନିଷ୍ଠୁରଘାତେ
ଅଶ୍ରାନ୍ତ ମଦଜଳ—
ବହାଇ ଗଣ୍ଡୁ ଅନ୍ୟୋନ୍ୟେ ପୀଡ଼ି
ଯୁଦ୍ଧ କଲେ କେବଳ । ୬୮ ।

ମଦବାରିରେ ପ୍ଲାବିତ ରଣ-
ଅଙ୍ଗଣ ସର ପରି,
ଗଜ ପୃଥୁଳ— କରେ କେଳି
ଶତପତ୍ର ଧରି । ୬୯ ।

ଶର ଆଘାତେ ଯନ୍ତା ସହିତ
ଗଜ ଉପରତରେ,
ଅଶ୍ରୁନାଶେ ଭୃଙ୍ଗେ ଗୁଞ୍ଜନେ
କାନ୍ଦନ୍ତି ଲୁକାଇତରେ । ୭୦ ।

ଅନ୍ତକତଲ୍ପ— ପ୍ରାପ୍ତ ବିଶାଳ
ଭୀଷଣ ଆହବରେ,
ଦଶନହୀନ ମତ୍ତମାତଙ୍ଗ
ମଞ୍ଜୁଶ୍ରୀତାକୁ ଧରେ । ୭୧ ।

ନିର୍ଭୟ ଶତେ ପ୍ରଦୀପ୍ତସୈନ୍ୟ
ମନ୍ଦଭଗ୍ନାହ୍ୱ ନାଶି,
ରଣକ୍ଷେତ୍ରରେ ପ୍ରବେଶି ଦମ୍ଭେ
ଯୁଦ୍ଧନ୍ତ ଶତ୍ରୁ ନାଶି । ୭୨ ।

ରଣରେ ଭୀମ— ଅସୁରଭାବ
ବୀର ଧାରଣ କରେ,
ଶତ୍ରୁରେ ହତ ହୋଇ ସୁରତ୍ୱ
ଲଭି ସ୍ୱର୍ଗେ ବହରେ । ୭୩ ।

ଘର ତୋମରେ ଯେ ବୀର ଅଙ୍ଗ
ବ୍ରଣତାକୁ ଲଭିଲା,
ଖଡ୍ଗ, ଗୃପରେ ରତହୋଇ ସେ
ଅମରତ୍ୱ ଲଭିଲା । ୭୪ ।

ନିପାତ, ସୂତ୍ର ପାଣିନୀ ପରି
ସେ ସମର ଅଙ୍ଗଣ,
ସୁହୃଦସ୍ୱାମୀ ପିତୃବ୍ୟ ଭ୍ରାତା
ମାତୁଳ ନିପାତନ । ୭୫ ।

ସନ୍ଧ୍ୟାଭ୍ର ସମ ରୁଧିରନଦୀ
ନୟନରୋଧି ରଜ,
ସେଚନ କରି— ବାଲୁ ସୁବୀରେ
ଯୁଦ୍ଧକୁ ହେଲେ ସଜ । ୭୬ ।

ଭଲ୍ଲପୁଷ୍କର୧ ଶଙ୍ଖ୨ ସଙ୍କୁଳ
ପତ୍ର୩ରଥ୪ତ*ରଣେ,
ରକ୍ତବାରିଜେ୫ ଶୋଭିତ ନଦୀ
ବହେ କୂଳ ପ୍ଲାବନେ । ୭୭ ।

---

୧ । ଭଲ୍ଲପୁଷ୍କର—ଖଣ୍ଡିତଶୁଣ୍ଡାଗ୍ର, ଛେଦିତପଦ୍ମ । ୨ । ଶଙ୍ଖ—ଲଲାଟ—ଅସ୍ଥି, କମ୍ବୁ । ୩ । ପତ୍ର—ବାହନ । ୪ । ରଥ—ସ୍ୟନ୍ଦନ ।
* । ପତ୍ରରଥ—ପକ୍ଷୀ । ୫ । ରକ୍ତବାରିଜ—ରକ୍ତପଦ୍ମ, ରକ୍ତବାହକାଠ ।

ସୁଭଟଙ୍କର ଅସ୍ତ୍ରକ୍ଷେପଣେ
ରୁଧିର ହୁଏ ଜାତ,
ଭକ୍ଷଣ କରି ଆନନ୍ଦମନା
ରକ୍ଷ ପିଶାଚବ୍ରାତ । ୭୮ ।

କ୍ଷତରୁଧିର ଶତହ୍ରଦାର-
ପ୍ରାୟ କରେ ସ୍ଫୁରଣ,
ସମରଭୂମି ପଯୋଦକାଳ
ପରି ଦଶେ ଭୀଷଣ । ୭୯ ।

ସୈନ୍ୟ ମଧ୍ୟରେ ବନ୍ଧୁ ମୃତରେ
ଜନେ କରନ୍ତ ଶୋକ,
ବାରଣ ହତେ ଘଣ୍ଟିକା ଶବ୍ଦ
ନ କରେ ଦେଖେ ଲୋକ । ୮୦ ।

ଦନ୍ତିଙ୍କ ଦନ୍ତ— ଗୋଟି ବଚ୍ଛିନ-
ହୋଇ ମହୀରେ ପଡେ,
ଲୋକଙ୍କ ପ୍ରାଣ ପୋଷଣେ ମୃତ୍ୟୁ
ଉଲୁଖଳ କି ଗଡେ । ୮୧ ।

ବୈଦ୍ୟ ସମୀପେ ଛଦ୍ମଣ ଜନେ
ଯୁଦ୍ଧରେ ଅଭିଭୂତ—
ହେଲେ, ଅପର ସୈନ୍ୟେ ବେଦପ-
ସଜନ ପରାଭୂତ । ୮୨ ।

ବକ୍ଷର ମଣି ଘୃଷ୍ଟାଚ୍ଛୁରିତ
ଶୋଭେ ପୀତବସନ,
ମେଘର ମଧ୍ୟେ ଇନ୍ଦ୍ରଧନୁ କି
କରେ ମନମୋହନ । ୮୩ ।

( ବ୍ୟକ୍ଷର )

ନୀଳନନାଳ ନଳୀନ ଲୀନ
ନୀଳନୀଳ ଲୋଳାଳି, .
ଲୋଲ ଲଲନା ଲାଲନେ ଲୋଳ
ଲୀଲାଲୋଲଲାଲୀ । ୮୪ ।

ଅପୂର୍ବ ଯୁଦ୍ଧେ ସମାଗମିତ
ହୋଇ ଜୟକାମନା—
କଲେ, ବପୁର କାନ୍ତି ବଳେକ
ଶତ୍ରୁଙ୍କ ବୁଦ୍ଧି ବଣା । ୮୫ ।

ପକ୍ଷବାହନ ପ୍ରଭାବଶାଳୀ
ଷଡ଼ୈଶ୍ୱର୍ଯ୍ୟବାନ,
ପ୍ରାଣିରକ୍ଷକ ବିଶ୍ୱପାଳକ
ବନ୍ଧୁ, ମହିମାବାନ । ୮୬ ।

ଯେ ହରି ପାର ଗମନେ ଯୋଗି—
ଗଣ ହୁଅନ୍ତି ବଣା,
ତାଙ୍କୁ ଦେଖନ୍ତି ସକଳେ ଯୋଦ୍ଧା—
ଟରି ସେ ଗଲେ ଜଣା । ୮୭ ।

ଆନନ୍ଦପୂର୍ଣ୍ଣ ଅକ୍ଷୀଣକାନ୍ତି
ସର୍ବଗୁଣେ ଭୂଷିତ,
ଅର୍ଣ୍ଣବକନ୍ୟା ରମାଙ୍କଦ୍ୱାରା
ହୋଇଥିଲେ ସେ ଶ୍ରିତ । ୮୮ ।

ହରିଙ୍କି ଦ୍ୱେଷେ ବିଦ୍ୱେଷ କରି—
ମଧ୍ୟ ପାପରୁ ମୁକ୍ତ—
ହେଲେ, ଅଚ୍ୟୁତ ଦ୍ୱେଷକେ କିବା
ରୋଗ ନ ହୁଏ ମୁକ୍ତ । ୮୯ ।

ଅନେକ ଯୁଦ୍ଧ— ଜୟୀ ଅଚ୍ୟୁତ
ସ୍ୱର୍ଗଲୋକେ ବିଦିତ,
ତାଙ୍କୁ ଭୂତଳେ ସଂଗ୍ରାମେ କେବା
ରୋଧିପାରେ କହିଁତ । ୯୦ ।

ରଣକର୍ମରେ ସ୍ୱାମିଙ୍କ ଦ୍ୱାରା
ନିଯୁକ୍ତ ହୋଇ ବୀର,
ଧନୁ ଆରୋପି ଯୁଦ୍ଧକ୍ଷେତ୍ରରେ
ଭାସେ ନିମ୍ନ ର ଗିର । ୯୧ ।

ରୋଷେ କାର୍ମୁକେ ଗୃଧ୍ରସାୟକ
ବସାଇଲେ ଗୁଣରେ,
ଶତ୍ରୁଙ୍କ ପକ୍ଷେ ଅତି କଷ୍ଟରେ
ହେଲା ଆକର୍ଷଣରେ । ୯୨ ।

ପଶ୍ଚାତ ସ୍ଥିତ ନରଙ୍କ ପରି
ଯେ ଯେଉଁ ଗୁଣେ ଯୁକ୍ତ,
ହରଙ୍କ କଣ୍ଠ— ପର୍ଯ୍ୟନ୍ତ ଅସି
ସାୟକେ ହେଲେ ମୁକ୍ତ । ୯୩ ।

ଅନେକ ରୂପୀ ଭକ୍ତବରଦ
ପାପନାଶକ ହର,
ତାଙ୍କୁ ବିଦ୍ୱେଷେ ଶର ବିନ୍ଧିଲେ
ସରୋଷେ କ୍ରୋଧକର । ୯୪ ।

ଦଣ୍ଡମୁଖବ୍ୟାପୀ ସୁମର୍ମଭେଦୀ
ତୀକ୍ଷ୍ଣସାୟକ ହର,
ଅରି ଉପରେ ପ୍ରହାର କଲେ
ଅବହେଳ ନ କରି । ୯୫ ।

ଶରବର୍ଷଣେ ମହାନ ନାଦ
ସ୍ଫୁରେ ଧନୁକେତନ,
ସୁନୀଳଛବି ନୀରଦ ପରି
ହରିଙ୍କ ଅପଘନ । ୯୬ ।

ଲଘୁ ସନ୍ଧାନ ହରିଙ୍କ ଧନୁ
ମଣ୍ଡଳୀକୃତ ଜନେ,
ଦେଖିଲେ ଶତ୍ରୁ— ବଳ ମଣ୍ଡଳ
ସଙ୍ଗେ ଉଦ୍ୱିଗ୍ନ ମନେ । ୯୭ ।

ବିଲୋକଦର୍ଶୀ ମଧୁରଭାଷୀ
ଅଳିନୀଳକୁନ୍ତଳ,
ପ୍ରଳମ୍ବକାଳେ କୋଳ କେଳିରେ
କ୍ରୀଡ଼ା ଅମ୍ବିକାକଳ । ୯୮ ।

ଭଞ୍ଜୁଁ ଅଚ୍ୟୁତ ବର୍ମି ଶତ୍ରୁଙ୍କ
ଅକ୍ଷିତାରାରେ ଶର—
ବାନ୍ଧିଲେ, ଗୃପେ ସ୍ଥୂଳ ଲକ୍ଷଣ
ନାହିଁ କେବେ ତାଙ୍କର । ୯୯ ।

ବରଦ ହର ନୀରନ୍ଧ୍ର ଶତ୍ରୁ-
ଗଣଙ୍କୁ ବାନ୍ଧି ଶର,
ଉର୍ବର ଶସ୍ୟ ରବ ପରାୟୁ
ହେଲେ ଫଷଯୁକ୍ତର । ୧୦୦ ।

ହର ଶାରଙ୍ଗ ଅନେକ ଶର
ତେଜ ଅର ଜୀବନ—
ନେଲ, ଶତ୍ରୁର ସଜୀବତାକୁ
ନ କରଇ ସହନ । ୧୦୧ ।

ଅଇ ଅଜର ଅରଙ୍ଗ ହର
ରାଜଶ୍ରେଣୀର ଗର୍ବ,
ଅଙ୍କ ଅଙ୍କରେ ଅଜର୍ଜରରେ
କ୍ଷଣକେ କଲେ ଖର୍ବ । ୧୦୨ ।

ଉଦ୍ଧତ ଅରି ବିନାଶକାସ୍ତ୍ର
ହରଙ୍କ ତୀକ୍ଷ୍ଣଶର,
ପା' ଧାତୁ ଅର୍ଥେ, ରକ୍ତ, ଜଗତ,
ପାନ, ରକ୍ଷଣପର । ୧୦୩ ।

କ୍ରୂର ଅରିଙ୍କ ବିନାଶକାଙ୍କ୍ଷୀ
ଜଗତଏକସ୍ୱାମୀ,
କରେ କରିଙ୍କି ଶର ପ୍ରହାର
କରନ୍ତି ଅନ୍ତର୍ଯାମୀ । ୧୦୪ ।

ଭୂମିର ଭାର ଉଶ୍ୱାସ ପାଇଁ
ଅବତୀର୍ଣ୍ଣ ଶ୍ରୀହରି,
ଅନେକ ଅରି ଶରେ ସଂହାର
କରନ୍ତି ଧନୁ ଧରି । ୧୦୫ ।

ଉଦାର ହରି ଶତ୍ରୁଙ୍କୁ ଶରେ
କରନ୍ତି ବିଦାରଣ,
ବିଶ୍ୱକରତା ଶରେ ମୁକୁନ୍ଦ
ଲଭଇ ଯେ ମରଣ । ୧୦୬ ।

ଏକ ସାମ୍ୟକେ ହରି ଅରିବୃନ୍ଦ
କରନ୍ତି ବିଦାରଣ,
ଜନ୍ମାନ୍ତରରେ ସ୍ୱାମଙ୍କ କଥା
ଯତ୍ନେ କରି ସ୍ମରଣ । ୧୦୭ ।

ଦୁଷ୍ଟନାଶକ ରମାନାୟକ
ଶୌରିଙ୍କ ତୀକ୍ଷ୍ଣଶରେ,
ବିଚ୍ଛିନ୍ନ ହୋଇ ଅରିମସ୍ତକ
ଲୋଟେ ଅବନୀ ପରେ । ୧୦୮ ।

ସେହି କାଳରେ ଅରିଅବସ୍ଥା
ସ୍ପଷ୍ଟ ହେଲା ବିଦିତ,
ଯେ କାଳେ ହରି— ଶର ଅରିର
ହୃଦୟରେ ଶୋଭିତ । ୧୦୯ ।

ସ୍ୱାମିଙ୍କ ନାମ— ଅକ୍ଷର, ମନ୍ତ୍ର
ନ ହେଉ ଭାବି ମନେ,
ହରି ମାର୍ଗଣେ ଅରକ୍ତେ ଅରି-
ଅସୁ ନେଲେ ଯତନେ । ୧୧୦ ।

ଆଶୁଗଗଣ ବୀରବର୍ଗର
ପ୍ରାଣସର୍ବସ୍ୱ ନେଇ,
ଐକାଗାରିକ[1] ପରି ଗମିଲେ
ଅଦର୍ଶନତା ଦେଇ । ୧୧୧ ।

---

୧ । ଐକାଗାରିକ—ଚୋର ।

ଅଚ୍ୟୁତ ଭୀମ— ଅସ୍ତ୍ରରାଜରେ
ମହାସମର କରି,
କଲେ ସମର— ଭୂମି ଧୂଳିକି
ରୁଧିରେ ପଙ୍କ ପରି । ୧୧୨ ।

ହରିମାର୍ଗଣେ ଗଗନେ ବ୍ୟାପି
ଶତ୍ରୁ ବିନାଶ କଲେ,
ଗୃଧ୍ର କଙ୍କାଦ— ବହଗେ ଶବ-
ମାଂସ ଭକ୍ଷଣ କଲେ । ୧୧୩ ।

ସାଧୁଗଣଙ୍କ ଦୁଃଖଦଖଳ-
ଶାସକ ବନ୍ଧୁ ହରି,
ଶତ୍ରୁବିନାଶ— କଲେ ଅମୋଘ-
ଶସ୍ତ୍ର ପ୍ରୟୋଗ କରି । ୧୧୪ ।

ମତ୍ତେଭ କୁମ୍ଭ— ସ୍ଥୂଳତରଙ୍କା
ଶତ୍ରୁ ରମଣୀଙ୍କର,
ଶତ୍ରୁ ବିନାଶେ ବହିଲ ଅସ୍ର୧
ନଦୀ ପ୍ରବଳତର । ୧୧୫ ।

ନିତ୍ୟ ପ୍ରମତ୍ତ— ବଳ ସନ୍ତୋଷୀ
ଉଦ୍ଧୃତ ରସା ହରି,
ସିଦ୍ଧ ବିକ୍ରମ ରମାନାୟକ
ଶୋଭିଲେ ହରି୨ ପରି । ୧୧୬ ।

ଏକ ହରିଙ୍କି ନିଧା ଚତୁର୍ଦ୍ଧା
ଦ୍ୱିଧା କରି ଲୋକନ,
ବିଦ୍ୱିଷେ ରୋଷେ ମସ୍ତ୍ରରେ ନିଜେ
ସଦ୍ୟ ହେଲେ ନିଧନ । ୧୧୭ ।

---

୧ । ଅସ୍ର—ମେଦକ, ରକ୍ତ ।
୨ । ହରି—ଇନ୍ଦ୍ର ।

ସର୍ବସମ୍ପନ୍ନ ସର୍ବପୂରଣ
ମହୋଦଧିର ପାର—
ଗାମୀ, ଶତ୍ରୁଙ୍କ ବିନାଶକ୍ଷମ
ଅଟେ ମହିମା ଯାର । ୧୧୮ ।

ଶାର୍ଙ୍ଗପାଣିଙ୍କ ସାୟକଗଣ
ଶତ୍ରୁ ବିନାଶ କରି,
ଭୂମି ମଧ୍ୟରେ ପ୍ରବେଶ କଲେ
ପ୍ରଭୁ ଶାସନ ଧରି । ୧୧୯ ।

ଶ୍ରୀବତ୍ସେ ହୋଇ ଶୋଭିତ ଭୀଷଣ ରଣକ୍ଷେତ୍ରରେ
ଭୟଙ୍କର ସିଂହନାଦ କରି,
ଶତ୍ରୁଙ୍କ ବିନାଶ ଅର୍ଥେ ଏକ ଶର ପ୍ରହାରରେ
ଗଗନକୁ ଆଚ୍ଛାଦଲେ ହରି । ୧୨୦ ।





## ବିଂଶ ସର୍ଗ

ସମରେ ମୁରାରି ବିକ୍ରମ ନ ସହି
ଭୀମ ଭ୍ରୂଯୁଗ ମୁଖରେ,
ଚେଦିପ କ୍ରୋଧରେ ବିକମ୍ପିତ ହୋଇ
ହରିଙ୍କି ଅହ୍ୱାନ କରେ । ୧ ।

ନିଶିତଚକ୍ରର ପ୍ରହାର ବିଲୋକି
ମୃତ୍ୟୁକୁ ବୋହି ସ୍କନ୍ଧରେ,
ସାରଥି ଚୈଦ୍ୟର ନିଯୁକ୍ତ ସ୍ୱରୂପ
ହରିପାଶେ ରଥ କରେ । ୨ ।

ଅଚ୍ୟୁତଙ୍କ ରଥ— ନେମି ନିପୀଡ଼ନ
ଦୀର୍ଣ୍ଣ ଶବ ଶୋଣିତରେ,
ଭୂମି ସିକ୍ତ ସୂତ ରଥ ନେଇ କଲା
ଚୈଦ୍ୟନୃପ ସମ୍ମୁଖରେ । ୩ ।

ସୁଦୀର୍ଘ କେତନ କିଙ୍କିଣୀ କ୍ୱଣେ
କୃଷ୍ଣରଥ ଚଳେ ଖରେ,
ରିପୁକଣ୍ଠ ପାଇଁ ପ୍ରତିଜ୍ଞା ମୁଖର
ମୁକ୍ତ ଶିଖଭାଗ ଧରେ । ୪ ।

ଅମ୍ବୁଦ ଅରବ ଅନୁକାରୀ ଧ୍ୱନି-
ଦ୍ୱାରା ଦିଗମୁଖ ପୂର୍ଣ୍ଣ,
ଆକସ୍ମିକ ମେଘ ଭାବ ନୀଳକଣ୍ଠେ
ଉଲ୍ଲସେ ଶୁଣିଲେ ତୂର୍ଣ୍ଣ । ୫ ।

ବଦର୍ଭ ନୃପଙ୍କ— ପୁତ୍ରୀ କୁଚଚନ୍ଦ-
କୁଙ୍କୁମ ହରି ବକ୍ଷରେ,
ଦେଖି ଚେଦୀଶ୍ୱର କ୍ରୋଧାଗ୍ନି ଦଗୁଣ
ପ୍ରଜ୍ୱଳିତ ହେଲା ଖରେ । ୬ ।

ଯୁଗାନ୍ତ ମାରୁତେ କାଳାଗ୍ନି ଶିଖାର
ପରି ମୌର୍ବୀର ସ୍ଫୁରଣେ,
ଅଶନି ଶବ୍ଦେ ଧନୁ ଅସ୍ଫାଳନ
କଲା ଚେଦିରାଜ ରଣେ । ୭ ।

ବଳବାନ ଚୈଦ୍ୟ ସନ୍ଧାନ ନପୁଣ
ଆକର୍ଷଣ ବକର୍ଷଣେ,
ସାନୁଗ ହରିଙ୍କି ଆଚ୍ଛାଦିବା ପାଇଁ
ସର୍ବାସ୍ତ୍ର ଶର ମୋକ୍ଷଣେ । ୮ ।

ଅବକ୍ର ସୁତୀକ୍ଷ୍ଣ ଫଳ ଲୌହ ଯୋଗ
ପକ୍ଷ ସମାଶ୍ରୟି ଶର,
ଗୁଣୀ ଗୃପ ନତ— ହେବାରୁ ତାସଙ୍ଗେ
ସମ୍ବନ୍ଧ କଲା ତତ୍ପର । ୯ ।

ସ୍ୱତନ୍ତ୍ର ଚେଦିପ ଦୁଷ୍କର କର୍ମରେ
କରିବାରୁ ନିଯୋଜନ,
ଦୃଢ଼ କୋଟି ବଳେ ଆକୃଷ୍ଟ ହେବାରୁ
କମ୍ପି ତେଜ୍ୟା କରେ ସ୍ୱନ । ୧୦ ।

ଚୈଦ୍ୟ କ୍ଷିତିପର ଲୌହଯୁକ୍ତଫଳ
ପକ୍ଷଧାରୀ ଶରଗଣ,
କଥକ ମୁଖରୁ ଶବ୍ଦ ପରି କଲେ
ଧନୁରୁ ତୀବ୍ର ଗମନ । ୧୧ ।

ମହୀପ ଶୃଙ୍ଗର ପ୍ରାପ୍ତ କୃଷ୍ଣବର୍ଣ୍ଣ
ଦୀର୍ଘ ବାହୁ ନାସା ପ୍ରାୟ,
ବନ୍ଦେକନ୍ତ ଜନେ କାର୍ମ୍ମୁକ, କୁପିତ-
ଅନ୍ତକ ଭ୍ରୂଭଙ୍ଗ ପ୍ରାୟ । ୧୨ ।

ଚଣ୍ଡତ ଉଜ୍ଜ୍ୱଳ ଜାତରୂପ ପୁଂଙ୍ଖ
ଅୟୋମୁଖେ ଧ୍ୱନି କରେ,
ବେଗ ନିପତିତ ଶରୌଘ, ଅମ୍ବୁଦ-
ପରି ଗଗନେ ସଞ୍ଚରେ । ୧୩ ।

ସ୍ୱର୍ଣ୍ଣପୁଂଙ୍ଖଶୋଭ— ଶିତ ଶର ବାଜି
ମେଘରୁ ସଲିଳ ଝରେ,
ତୀକ୍ଷ୍ଣ ଶରଘାତ— ବେଦନାରେ କିବା
କକୁଭ ରୋଦନ କରେ । ୧୪ ।

ଚେଦିପ ବାଣରେ ଧରିତ୍ରୀ ଗଗନ
ସୂର୍ଯ୍ୟଙ୍କୁ ଛାଦନ କରେ,
ନଭଃସଦଗଣ ଚଳି ନ ପାରନ୍ତି
ସ୍ଥିତ ହେଲେ ଗଗନରେ । ୧୫ ।

ଚୈଦ୍ୟ ଶରଜାଲେ ସୂର୍ଯ୍ୟଙ୍କୁ ନିରୋଧି
ହରି ସୈନ୍ୟେ ଅନ୍ଧକାର—
ପକାଇଲା ଅଣି, ସାୟକ ଗୃହରେ
ରଖିଲା କି ସୈନ୍ୟବାର । ୧୬ ।

ବାୟସସଙ୍ଘଙ୍କୁ ପିଞ୍ଜରେ ରଖିଲା
ପରାୟେ ଚେଦି ଭୂପତି,
ହରିଙ୍କ ସୈନ୍ୟଙ୍କୁ ଶର ପିଞ୍ଜରରେ
ରୋଧିଲା ଯତନେ ଅତି । ୧୭ ।

ଚୈଦ୍ୟ ରୋଧ ପରେ ମହାଶୂର ହରି
ଅରିର ପ୍ରଯୁକ୍ତ ଶର,
ବାଦର ପ୍ରମାଣ[୧] ପ୍ରତିବାଦୀ ପରି
ବାଣରେ କଲେ ଅନ୍ତର । ୧୮ ।

କଫୋଣି କୁଞ୍ଚନ କରି ହରିକର୍ଣ୍ଣ-
ପର୍ଯ୍ୟନ୍ତ ଜ୍ୟା ଆକର୍ଷଣ,
କରନ୍ତି, ଶରଦେ କ୍ରୌଞ୍ଚରବ ପରି
ଶାର୍ଙ୍ଗ ଧ୍ୱନେ ଅନୁକ୍ଷଣ । ୧୯ ।

---

୧ । ପ୍ରମାଣ—ଅନୁମାନ, ଅନ୍ୟ ଅନୁମାନଖଣ୍ଡନ ପ୍ରମାଣ ଦ୍ୱାରା ଖଣ୍ଡନ ।

ବସ୍ତାରିତ ବକ୍ଷ ବନମିତ ସ୍କନ୍ଧ
ଊର୍ଦ୍ଧ୍ୱଶିର ମନୋହର,
ଅଗ୍ରିମ ଚରମ ଦୃଢ଼ମୁଷ୍ଟି ହରି
ଟେକନ୍ତ ଅନେକ ଶର । ୨୦ ।

ଚଳନେ ଚଢ଼ିତ ପଡ଼ି ଧଣେ କାନ୍ତ
ଧ୍ୱନି କରେ ଅନୁକ୍ଷଣ,
ମେଘୁ ଅମ୍ବୁଧାରା ପରାଏ ସଘନେ
ଚଳିଲେ ମାର୍ଗଣଗଣ । ୨୧ ।

ଶଖର କଠିଣ ଭଲ୍ଲତାଂସ ପୀଠ
ଏକଦଣ ଦୀର୍ଘ କରି,
ବାଟରେ ପ୍ରସାରିତ ହରି ବାମବାହୁ
ଦଶିଲା ଭୁଜଙ୍ଗପରି । ୨୨ ।

ସୁପର୍ଣ୍ଣକେତୁଙ୍କ ନିଶିତ ସାୟକେ
ଅରିଶରଙ୍କୁ ତତ୍‌କ୍ଷଣ,
ଭେଦଇ, ଅମାତ୍ୟ— ଗଣଙ୍କୁ ଯାଦୃଶ
ନେତା କପଟ ବଚନ । ୨୩ ।

ଊର୍ଦ୍ଧ୍ୱଲାଗ ଲେଖା ପ୍ରିୟ ପ୍ରାୟ ହର-
ଶରେ ଅଗ୍ରେ ବଖଣ୍ଡିତ,
ଶତ୍ରୁଶରବଳ ବପଳେ ଲଘୁତା-
ପ୍ରାପ୍ତେ ଭୂମିରେ ପତତ । ୨୪ ।

ଚେଦପତ ଶର ମାଧବଙ୍କ ଶରେ
ଅହତ ହୋଇ ସତ୍ୱର,
ଭୂମି ଅନ୍ତରାଳେ ପଡ଼େ ପ୍ରତ୍ୟାବୃତ୍ତ
ହୁଏ ପରାଏ କାତର । ୨୫ ।

ପରସ୍ପର ଶର— ଫଳ ସଂଘଟ୍ଟନେ
ଜାତ ହୁଅଇ ଅନଳ,
ବଳାହକମୁର୍ଣ୍ଣି ଶତ୍ରୁଙ୍କ ଉପରେ
ଜଳଇ ହୋଇ ପ୍ରବଳ । ୨୬ ।

ଶତ୍ରୁ ଶିଳୀମୁଖ          ଜଳଦ ବିଭ୍ରମ
ଖରରେ ଶରଦ ପରି,
ବିକାଶ ବଦନ          ତାରକ ଯାଦବ-
ଧ୍ୱଜଶ୍ରୀ ଆଶାର ପରି । ୨୭ ।

ଭାସ୍କରମଣ୍ଡଳ          ଆଚ୍ଛାଦନ କରି
ହରି ଶରରେ ଗଗନ,—
ଆଚ୍ଛାଦିଲେ, ଗୁପ୍ତ—          ମୁକ୍ତ ଏକଶର
ପ୍ରାପ୍ୟ ବିଲୋକିଲେ ଜନ । ୨୮ ।

ବିପକ୍ଷଙ୍କୁ ଅସ୍ତ୍ର          ସପକ୍ଷ ହେଲେହେଁ
ନୁହଇ ସେ ହିତକର,
ଶିଶୁପାଳ ବଳ          ଦହିଲା ସରୋଷେ
ଶ୍ରୀକୃଷ୍ଣ ମୁକ୍ତ-ତୋମର । ୨୯ ।

କାଞ୍ଚନବରଣ          ସନ୍ଧେ ହରିଙ୍କ-
ଶରେ ଶତ୍ରୁ ଶରଗଣ,
ବୈନତେୟ ଭ୍ରାନ୍ତ          ଭୁଜଙ୍ଗମ ପରି
କଲେ ଭୂତଳେ ଗମନ । ୩୦ ।

ରୋଷେ ଶିଶୁପାଳ          ପରମର୍ମଭେଦୀ
ଶତେଷୁ ପ୍ରହାର କଲେ,
ଶତ ଅପରାଧ          ପରି ଶ୍ରୀହରିଙ୍କି
ଭଲେହେଁ ବ୍ୟଥା ନ କଲେ । ୩୧ ।

ଯୋଗନିଦ୍ରାଧାତ୍ରୀ-          ହରିଙ୍କି ମାୟାରେ
ଜଣିବା ଇଚ୍ଛି ମନରେ,
ଶଠ ମାୟା ରତ          ଚୈଦ୍ୟ ସ୍ୱାପନାସ୍ତ୍ର
କୃଷ୍ଣଙ୍କୁ ପ୍ରୟୋଗ କରେ । ୩୨ ।

ସଲିଳରେ ଅର୍ଦ୍ଧ          ବୋଳ ଦେହ ମୀନ
ସୂର୍ଯ୍ୟ ଅଦୃଶ୍ୟ ଗଗନେ,
ସ୍ୱାପନାସ୍ତ୍ର ତମେ          ହରି ସୈନ୍ୟ ନିଦ୍ରା-
ଗଲେ ନେତ୍ରାବ୍ଜ ମୀଳନେ । ୩୩ ।

ବୀର ରାଜାମାନେ ଧନୁକୁ ଓଟାରି
ଶୋଇଲେ ଏ ନିଦ୍ରାକର୍ମ—
ନୋହେ, ଜାଗରଣେ ଥିଲେ ତାଙ୍କ ସଦା-
ଧନୁ ଓଟାରିବା ଧର୍ମ । ୩୪ ।

ବୀର ନୃପତିଙ୍କ ମଧ୍ୟେ କେତେ ନୃପେ
ଧନୁ ଓଟାରି ଶୋଇଲେ,
ନିଦ୍ରା ପରବଶ— ହେତୁ କେତେ ଧନୁ-
ତେଜ୍ଜା ଯାନରେ ଲେଟିଲେ । ୩୫ ।

ସାଗର ଶୟନ ଅଭ୍ୟାସ ଥିଲେହେଁ
ସ୍ୱସୈନ୍ୟ ଅବ୍ଧି ମଧ୍ୟରେ,
ଭୁବନସ୍ୱାମୀର କାର୍ଯ୍ୟେ ଜାଗରୂକ
ହରି ଥିଲେ ଉନିଦ୍ରରେ । ୩୬ ।

କୌସ୍ତୁଭର ତେଜେ ହରିଙ୍କର ନେତ୍ର
ଭାସ୍କରତେଜ ଧାରଣ—
କଲା, ନୋହେ ଶିବ ଅଟନ୍ତି ଶ୍ରୀହରି
ଯେଣୁ ଅର୍କେନ୍ଦୁଲୋଚନ । ୩୭ ।

ମଣି ଅଂଶୁଚୟ ସୈନ୍ୟଙ୍କର ନେତ୍ରେ
ଆଲୋକ ପ୍ରଦାନ କଲା,
ମହାନର କୃପା ଭକ୍ତେ ଯଥା ତଥା
ଦାଣ୍ଡୁଖେ ପ୍ରକାଶ କଲା । ୩୮ ।

ନିଜ ସ୍ୱଭାବରେ ଭାନୁମାନ ପୁଣି [୧]
କିରଣ କଲା ପ୍ରକାଶ,
ଅନ୍ଧକାର ନାଶେ ଜୀବଲୋକେ ମୂର୍ଚ୍ଛି-
ତେକି ଛାଡ଼ିଲେ ନିଶ୍ୱାସ । ୩୯ ।

ଅନ୍ଧକାର ନାଶେ ଯଦୁବୀରଗଣ
ପୁଣି ଶତ୍ରୁ ବନାଶିଲେ,
ମେଘାବୃତ ମୁକ୍ତ ସୂର୍ଯ୍ୟଙ୍କ ପ୍ରତାପ
ନ ଦାଅନ୍ତି ପ୍ରକାଶିଲେ । ୪୦ ।

---

୧ । ଭାନୁମାନ୍—ଅଂଶୁମାନ୍, କୌସ୍ତୁଭମଣି ।

ନ୍ୟାୟବାଦେ ମିଥ୍ୟା—   ପ୍ରଳପନ ପରି
କୌସ୍ତୁଭେ ତମିର ନାଶ,
ଦେଖି ଶତ୍ରୁ ସୈନ୍ୟ   ତୀବ୍ର ବିଷଧାରୀ
ମହାହି ମନ୍ତ୍ର ପ୍ରକାଶ । ୪୧ ।

ମହାଫଣାଧାରୀ   ବିଷ ଉଦ୍ଗୀରଣେ
ଜିହ୍ୱାଦ୍ୱୟକୁ ଚଞ୍ଚଳ—
କରି ମହାରୋଷେ   ଫୁତ୍କାର ଶବଦେ
ଘୋଟିଲେ ଗଗନ, ତଳ । ୪୨ ।

ବଡ଼ବାବଲ୍ଲଭଂ[1]   ପୁଚ୍ଛ ଅନୁକାରୀ
ପୁତ୍ର[2] କଦ୍ରୁ ପ୍ଲବଗଣ,
ଯଥା, ତଥା ଛଳେ   ବିଜୟ ଇଚ୍ଛାରେ
ଶ୍ୱେତେ ଢାଙ୍କିଲେ ଗଗନ । ୪୩ ।

ମୁଖର ସନ୍ଧିରେ   ବିଶାଳ, କ୍ରମରେ
ସୂକ୍ଷ୍ମଠାରୁ ସୂକ୍ଷ୍ମତର,
ପର୍ଯ୍ୟାକୃତ, ପ୍ରାୟ—   ଭରତଙ୍କ କବି-
ପ୍ରଣୀତାଙ୍କ ନାଟକର । ୪୪ ।

ପନ୍ନଗ ନିବିଷ—   ଶ୍ୱସନ ଧୂମରେ
ମ୍ଳାନ ହେବାରୁ କିରଣ,
ରାହୁଗ୍ରସ୍ତ ପରି   ଦିଶିଲେ ଭାସ୍କର
ତାମ୍ରପିଣ୍ଡର ବରଣ । ୪୫ ।

ଶିଖିପିଚ୍ଛଧ୍ୱଜା   ବିଲୋକି ଭୁଜଙ୍ଗେ
ମୟୂର ବିଗ୍ରହ ମନେ,
ଫେରି ଯାଦବଙ୍କୁ   ଯମପାଶ ପରି
ବାନ୍ଧିଲେ ଦୃଢ଼ ବନ୍ଧନେ । ୪୬ ।

ବାରିଧି କଲ୍ଲୋଳ—   ମଣ୍ଡଳ ବଳାର୍ଯ୍ୟୀ
ଫେନ ପରି ଶୁଭ୍ରବର୍ଣ୍ଣ,
ଭୁଜଙ୍ଗମ ମଧ୍ୟେ   ବିଦ୍ଧ ଧ୍ୱଜାଂଶୁକ
ନିର୍ମୋକ ଶୋଭା ଧାରଣ । ୪୭ ।

---

୧ । ବଡବାବଲ୍ଲଭ—ଉଚ୍ଚୈଃଶ୍ରବା । ୨ କଦ୍ରୁ ପୁତ୍ର—ସର୍ପ ।

ଜନତା, ମସ୍ତକେ    ମଣ୍ଡଳ ବନ୍ଧନ
ବକ୍ଷଦେଶେ ଲମ୍ବମାନ,
ସର୍ପଦେହ, ଶୋଭେ    ନୀଳ ଇନ୍ଦୀବର-
ମାଳାଧାରିଶ୍ରୀ ସମାନ । ୪୮ ।

ଆପାଦମସ୍ତକ    ଉରଗ ବେଷ୍ଟିତ
ମାନବେ ଦଶନ୍ତି ତଥା,
ଅପୃତବଲ୍କଳ    ବେଷ୍ଟିତ ପାଦପ
ଦଶେ ଭୂମି ପରେ ଯଥା । ୪୯ ।

ବତ୍ତୁଳ ଅଞ୍ଜନ    ବରଣ ଭୁଜଙ୍ଗ
ତୁରଙ୍ଗମର ଦେହରେ,
ଇତସ୍ତତ ଲଗ୍ନେ    ପଲ୍ୟାଣ ବନ୍ଧନ
ରଜ୍ଜୁର ଶୋଭାକୁ ଧରେ । ୫୦ ।

ଗଜ ପ୍ରତିପାଦେ    ଭୁଜଙ୍ଗମଗଣ
ସଦୃଢ଼େ ବେଷ୍ଟନ କରି,
ଚଞ୍ଚଳ ଗଜକୁ    ସୁ ନିଶ୍ଚଳ କଲେ
ବନ୍ଧନ ଶୃଙ୍ଖଳ ପରି । ୫୧ ।

ନାଗପାଶବନ୍ଧ    ବିଲୋକି ମାଧବ
ଏକନେତ୍ରର କୋଣରେ,
ନିଜରଥ କେତୁ    ସ୍ଥିତ ସୁପର୍ଣ୍ଣଙ୍କୁ
ବିଲୋକିଲେ ସହାସରେ । ୫୨ ।

ପ୍ରତପ୍ତକାଞ୍ଚନ    ପ୍ରଭାଧାରି ଖଗେ
ଉଚ୍ଚେ କରି ଘୋରନାଦ,
ଖଗେନ୍ଦ୍ରଙ୍କଠାରୁ    ଉଦ୍ଭବଲେ ତେଜେ
ଅଗ୍ନିରେ କରି ବିବାଦ । ୫୩ ।

ଗଗନ ଅର୍ଣ୍ଣବ    ମଧ୍ୟରେ ଚଞ୍ଚଳ-
ପକ୍ଷରେ ପକ୍ଷିପ୍ରମାନ,
ସୁମେରୁ କୁଳଜ    ଇଳାଧର ପରି
ସୁପର୍ଣ୍ଣେ ବେଗେ ଅପାନ । ୫୪ ।

ପକ୍ଷିଙ୍କ ମୟୂଖେ ; ପଣଙ୍କିତ ଦୃଗ
ତପନ ନିଜ କିରଣେ,
ଅସ୍ବଦର୍ଶ ପରି ସ୍ୱବିମ୍ବ ଦୁଷ୍ପ୍ରେକ୍ଷ୍ୟ
କଲେ ପିଶଙ୍ଗ ବରଣେ । ୫୫ ।

ଅମ୍ବୁଧି ମନ୍ଥନେ ମନ୍ଦର ଭୂଧରେ
ବାସୁକି ପିତ୍ତଳ ମଣି,
ପ୍ରାପ୍ତ ବୈନତେୟ— ଦ୍ୟୁତରେ ପନ୍ନଗେ
ହେଲେ ସେ ଶୋଭର ଖଣି ।୫୬।

କ୍ଷୁଭିତାମ୍ବୁରାଶି ଭୀମ ଧ୍ୱନି କରି
ପାଦପୌଘ ଉତ୍ପାଟନ,
ଯୁଗାନ୍ତ ଶଙ୍କାକୁ ଜନ୍ମାଇଲା ପକ୍ଷି-
ରାଜ ପକ୍ଷଜ ପବନ । ୫୭ ।

ଚଳପତଗେନ୍ଦ୍ର— ପକ୍ଷ ବାତଭରେ
ଉନ୍ମୂଳିତ ଶୈଳଗଣ—
ମାର୍ଗ ଦେଲେ ଭୟେ ପନ୍ନଗେ ସ୍ୱଧାମେ
ପ୍ରବେଶିଲେ ତତକ୍ଷଣ । ୫୮ ।

ପତଗେନ୍ଦ୍ର ତେଜେ ଅସଂଖ୍ୟ ପନ୍ନଗେ
ସୁକୃତ ଦୁଷ୍କୃତ ପରି,
କ୍ଷୟିଗଲେ, ଚୈଦ୍ୟ ଅଗ୍ନେୟାସ୍ତ୍ର ମନ୍ତ୍ର
ଜପେ ରୋଷେ ଜଳି କରି । ୫୯ ।

ଗର୍ଜନେ ତ୍ରାସିତ ସକଳ ପ୍ରାଣିଙ୍କି
ଉଦ୍ଧତ ଅଟ୍ଟହାସର,
ଭୁବନଦାହକ କାଳାଗ୍ନି ପରାୟେ
ଊର୍ଦ୍ଧ୍ୱେ ଉଠେ ତତପର । ୬୦ ।

ଜ୍ୱଳିତ ଉଦ୍ଧତ ଉଦ୍ଧୂମ କେତନ
ଖାରୋହ୍ନ ଅଶ୍ୱେ ଶୋଭିଲେ,
ମାରୁତ ସାରଥି କନକ ସ୍ୟନ୍ଦନ-
ସୁନ୍ଦର ଅଗ୍ନି ଚଳିଲେ । ୬୧ ।

ଅମ୍ବର କୋଟର— ଅନ୍ତରାଳେ ଅଗ୍ନି
ଆର୍ଦ୍ର ଅମ୍ବୁଦ ପଟଳରେ,
ବିଧୂମିତ ହୋଇ କାଷ୍ଠାଶ୍ରୟ ପାଇ
ବଶ୍ଚ କି ଦହିବେ ଖରେ । ୬୨ ।

ତାପେ ଶୁଷ୍କ ଅମ୍ବୁ, ଅମ୍ବୁବାହ ଶୁଭ୍ର
ଅଗ୍ନି ଲଗ୍ନେ ତାମ୍ରବର୍ଣ୍ଣ,
ଅସାରତା ହେତୁ ପୟୋବାହ ପୁଣି
ଧଇଲା ତା ମସୀବର୍ଣ୍ଣ । ୬୩ ।

ଅନଳ ଜ୍ୱାଳାରେ ଅଷ୍ଟାପଦ ପରି
ବୈଜୟନ୍ତୀ ପୀତବର୍ଣ୍ଣ,
ଅଧିକ ଦୀପିଲା ନାଶକାଳେ ଯଥା
କ୍ଷଣେ ହୁଏ ଦୀର୍ଘ ବର୍ଣ୍ଣ । ୬୪ ।

ଜାଳିଲା ଗଗନ ଗ୍ରୀଷ୍ମୀକର ଗୃହ
କରିବାରୁ ତୀବ୍ରାନଳ,
ମେଘଙ୍କୁ ସ୍ମରଣ କଲେ ହସି ହର
ଦେଖି ସୈନ୍ୟଙ୍କ ବିକଳ । ୬୫ ।

ଗୃହ ଅମ୍ବୁନିଧି ଗର୍ଭରେ ଯାହାର
ସନ୍ଧିରେ ଲୀନ ସରିତ,
ସେ ତ୍ରିଧାମହର କେଶପାଶୁ ମେଘ
ବାହାର କଲେ ତ୍ୱରିତ । ୬୬ ।

ଘୋରନାଦେ ଦିଗ କରି ଅନ୍ଧକାର
ଭାସ୍କରଙ୍କୁ ଆଚ୍ଛାଦନ,
ଶ୍ୟାମ କାଦମ୍ବିନୀ ପ୍ରବଳ ଭାବରେ
ଢାଙ୍କିଲା ନୀଳଗଗନ । ୬୭ ।

ନିକଷ ପାଷାଣେ ହେମରେଖା ପରି
ଅଚିରପ୍ରଭାର ଛଟା,
ଧ୍ୱନି ଆଡ଼ମ୍ବରେ ଗଗନାଟ୍ଟହାସ-
ଧରି ଦିଶେ ମେଘଘଟା । ୬୮ ।

ସୂର୍ଯ୍ୟ ମରିଚଙ୍କ    ତିରସ୍କାର କରି
ସଦ୍ୟସ୍ନାତ ଗଜଅଙ୍ଗ—
ପ୍ରାୟ ମେଘ ଊର୍ଦ୍ଧ୍ୱେ    ଧୂମକେତୁଙ୍କର
କେତନେ ହୁଅଇ ସଙ୍ଗ । ୬୯ ।

ଉଗ୍ରଚସଭାନୁ    ପ୍ରଶମନ ପାଇଁ
ପ୍ରଳୟକାଳ ପ୍ଲାବନ—
ପଶ୍ରୟ ଦେଖାଇ    ବୃଷନାଦୀ ମେଘେ
ବର୍ଷିଲେ କରି ଗର୍ଜନ । ୭୦ ।

ପବମାନସଖା    ମଧୁର ବବାଦେ
ପ୍ରଣୟ କୋପର ପରି,
ଅଦ୍ୟ ପ୍ରଜ୍ଜ୍ୱଳିତ    ହୋଇ, ପ୍ରଶମିତ
ହେଲେ ଶାନ୍ତଭାବ ଧରି । ୭୧ ।

ଶର ବର୍ଷଣରେ    ଅବସାଦ ପାଇ
ଆଶ୍ରୟାଶ ପଣ୍ଡୁତର,
ତଡ଼ିତ ଛଳରେ    ପ୍ରବଳ ମେଘରେ
ପ୍ରବେଶ କଲେ ସତ୍ୱର । ୭୨ ।

ଶମିତ ଅଗ୍ନିର    ତ୍ୟକ୍ତାଶ୍ରୟ ଅର୍ଚ୍ଚି
ରଣାଙ୍ଗଣେ ଶୋଭାପାଏ,
ଇନ୍ଦ୍ର ବଜ୍ରାଘାତେ    ଛିନ୍ନ, ଗରୁଡ଼ଙ୍କ
ରମ୍ୟ ଏକପକ୍ଷ ପ୍ରାୟେ । ୭୩ ।

ଘନାଘନ ଓଘ    ଅଗ୍ନି ପ୍ରଶମନ-
କରି ଦଣ୍ଡେ ଖେ ଗମନ,
କଲେ, ଯେ ମହାନ    ଉପକାର କରି
ପ୍ରତିବନ୍ଧକେ ନମନ । ୭୪ ।

ଜ୍ୱଳନ ଜ୍ୱାଳାରେ    ଦଗ୍ଧ ନବାମ୍ବୁଦେ
ପରିଷିକ୍ତ ହୋଇ ପରେ,
ଗତାମୁଦ ବ୍ରଣ    ତାପତ ପାଣ୍ଡୁର
ଗଗନ ଖଡ୍ଗ ଶ୍ରୀ ଧରେ । ୭୫ ।

ଏହାପର ଚୈଦ୍ୟ ରୋଷଭରେ ଯେତେ-
ଯେତେ ଅସ୍ତ୍ର ବଳେ ରୋଷେ,
କମଳେଶ ହରି ଲଘୁକ ପରାୟ
ପ୍ରତ୍ୟସ୍ତ୍ରେ ନାଶନ୍ତି ରୋଷେ । ୭୬ ।

ଚୈଦ୍ୟ, ଶୁଦ୍ଧଭକ୍ତ ବାଣରେ ହରିଙ୍କି
ଅଜୟ ହବ ମନରେ,
ମର୍ମଭେଦୀ ବଜ୍ର— ଅଶୁଦ୍ଧ ବାକ୍‌ବାଣ
ପୀଡନେ ପ୍ରହାର କରେ । ୭୭ ।

ରାହୁ ରମଣୀ କଠିଣ— ସ୍ତନ ଦୃଢ଼ ଆଲିଙ୍ଗନ-
ସୁଖ ଯେଉଁ ଚକ୍ରେ ବୃଥା କଲେ,
କାଳାନଳ ପରି ତେଜ ସେ ଚକ୍ରରେ ମୁରଜିତ
ଚୈଦ୍ୟ ବପୁ ବିମସ୍ତକ କଲେ । ୭୮ ।

ଦୁନ୍ଦୁଭି ରବେ ଅମ୍ବରେ ସ୍ୱର୍ଗୁ କଲେ ପୁଷ୍ପବୃଷ୍ଟି
ଋଷିଗଣ ସ୍ତୁତି ଆରମ୍ଭିଲେ,
ଚୈଦ୍ୟ ଦେହୁଁ ଦୀପ୍ତ ତେଜ ବାହାରି ହରି ଦେହରେ
ପ୍ରବେଶିବା ନରେନ୍ଦ୍ରେ ଦେଖିଲେ । ୭୯ ।

ମହାକାବ୍ୟ ଶିଶୁପାଳବଧ ସମାପ୍ତ ।

ଶୁଭମ୍ ।



## କବିବଂଶ ବର୍ଣ୍ଣନ ।

ଶ୍ରୀବର୍ମଲନୃପ[୧]— ଙ୍କର ସେନାପତି
ସୁପ୍ରଭଦେବ ନାମରେ,
ସୁକୃତାଧିକାର ସର୍ବଅଧିକାରୀ[୨]
ଥିଲେ ଏ ମର୍ତ୍ତ୍ୟଧାମରେ । ୧ ।

ବୁଦ୍ଧବାକ୍ୟେ ପ୍ରାଜ୍ଞ— ଜନ ପରି କାଳେ
ମିତ[୩] ଉଦର୍କ[୪] ସୁତଥ୍ୟ[୫]
ବିନା ଅନୁରୋଧେ ହିତେଚ୍ଛାରେ ନୃପ
କରନ୍ତି ସେ ବାଣୀ, ପଥ୍ୟ । ୨ ।

ସୁପ୍ରଭଦେବଙ୍କ ଦତ୍ତକ ନାମରେ
ସୁତ କ୍ଷମୀ ଧର୍ମପର,
ନ୍ୟାୟୋକ୍ତ ଅଜାତ— ଶତ୍ରୁ[୬]ବାଣି ପରି
ଯା' ବାଣୀ ଗ୍ରହିଲ ନର । ୩ ।

ଦତ୍ତକ ସ୍ୱଗୁଣେ ସର୍ବାଶ୍ରୟ ବୋଲି
ପାଇଲେ ଦ୍ୱିତୀୟ ନାମ,
ଜନାନନ୍ଦ ଦାନେ ଅଦ୍ୱିତୀୟ, ତେଣୁ
ପୂର୍ଣ୍ଣ ହୁଏ ମନସ୍କାମ । ୪ ।

ଦତ୍ତକ-ଆତ୍ମଜ ମାଘନାମ କବି
କାବ୍ୟ ଶିଶୁପାଳବଧ ନାମରେ,
ଶ୍ରୀ ଶବ୍ଦ ଆଦ୍ୟରେ ସର୍ଗାନ୍ତେ ଶ୍ରୀ ଶବ୍ଦେ
ରଚିଲେ ହରିବୃତ୍ତ[୭] ଅବାମରେ[୮] । ୫ ।

---

୧ । ଶ୍ରୀବର୍ମଲ ନୃପଙ୍କୁ କେହୁ କେହୁ ଶ୍ରୀଧର୍ମନାଭଦେବ କହନ୍ତି ।
୨ । ସର୍ବାଧିକାରୀ—ଅର୍ଥାତ୍ [illegible] ସକଳ କ୍ଷମତାଧାରୀ ।
୩ । ମିତ—ଅଳ୍ପାକ୍ଷର । ୪ । ତଥ୍ୟ—ସତ୍ୟ । ୫ । ଉଦର୍କ—ଉତ୍ତରଫଳ ।
୬ । ଅଜାତଶତ୍ରୁ—ଯୁଧିଷ୍ଠିର । ୭ । ହରିବୃତ୍ତ—[illegible]ଚରିତ ।
୮ । ଅବାମରେ—ସରଳଚିତ୍ତେ ଭକ୍ତିଭାବରେ ।

